ଓଡ଼ିଶା ଗଭର୍ଣ୍ଣମେଣ୍ଟଙ୍କ ଆନୁକୂଲ୍ୟରେ
ଉତ୍କଳ-ସାହିତ୍ୟ-ସମାଜଦ୍ୱାରା ପ୍ରକାଶିତ

---

# ହୁଏନ୍ ସାଂ
## ଓ
# ତାହାଙ୍କ ଭାରତ-ଭ୍ରମଣ




ପ୍ରଣେତା—ଶ୍ରୀ ଭାରତଚନ୍ଦ୍ର ନାୟକ, ବି. ଏ.

ମୁଦ୍ରାକର
ଶ୍ରୀ ବାଳକୃଷ୍ଣ କର୍, ବି. ଏ.
ସାରସ୍ୱତ ପ୍ରେସ
କଟକ



ପ୍ରଥମ ସଂସ୍କରଣ—୧୦୦୦
ମାର୍ଚ୍ଚ ୧୯୪୦

ଦୁଇଟଙ୍କା
ମୂଲ୍ୟ— ~~ଏକଟଙ୍କା ଦୁଇଅଣା~~ ମାତ୍ର

# ଉତ୍ସର୍ଗ

ମନୋରମା ଉତ୍ତୋଳିମା ଅନୁପମା ନିରୁପମା

ସୁଷମା ପ୍ରତିମା [illegible]

[illegible] ସୀମା

[illegible]

[illegible]

ମା ମାନେ !

ତୁମେମାନେ

ମୋତେ

ଶୈଶବର ସ୍ୱପ୍ନ

ଜାଗରଣର ପ୍ରେରଣା

ଅବକାଶର ଚିନ୍ତା

କର୍ମର ଉନ୍ମାଦନା

ଜୀବନର ଶାନ୍ତି

ତୁମମାନଙ୍କ ହାତରେ ଆଜି ଏ ବହିଖଣ୍ଡି ଦେଲି ।

ସମ୍ବଲପୁର
୧୮।୧।୧୯୯୦

ବାପା

# ସୂଚନା

ମୋର କଟକରେ ଅବସ୍ଥାନ ସମୟରେ ୧୯୩୭ ସାଲର ଜୁଲାଇ ମାସରେ ରେଭେନ୍‌ସା କଲେଜର ଇତିହାସ-ଅଧ୍ୟାପକ ଶ୍ରୀଯୁକ୍ତ ଘନଶ୍ୟାମ ଦାଶଙ୍କଠାରୁ ଏସ୍. ବିଲ୍‌ଙ୍କ ଲିଖିତ The life of Hiuen-Tsiang (ହୁଏନ୍-ସାଂଙ୍କ ଜୀବନଚରିତ) ବହିଖଣ୍ଡିକ ପଢ଼ିବାକୁ ଆଣିଥିଲି; କିନ୍ତୁ ସରକାରୀ କାର୍ଯ୍ୟରେ ସମୟାଭାବ ଓ ସ୍ୱାସ୍ଥ୍ୟହାନିଜନିତ ନାନା ଅସୁବିଧା ଯୋଗୁଁ ପୁସ୍ତକଖଣ୍ଡିକ ମନୋଯୋଗ ସହି ପାଠକରିବାର ଅବସର ପାଇ ନ ଥିଲି । ସେହି ବର୍ଷର ପୂଜା ଅବକାଶ ପୂର୍ବରୁ ନଷ୍ଟ-ସ୍ୱାସ୍ଥ୍ୟର ଉନ୍ନତିକଳ୍ପେ ଟିକିଏ ବାହାରକୁ ଯାଇ ବୁଲି ଆସିବାର ଉଦ୍ଦେଶ୍ୟ ବିପରୀ-ତରେ ପରିଣତ ହେଲା । ଫଳରେ ପ୍ରାୟ ଆଠଦିନର ସ୍ଥାନାନ୍ତରଦ୍ୱାରା ଦେହ ଅଧିକ ଅସୁସ୍ଥ ହୋଇପଡ଼ିଲା । କ୍ରମାଗତ ଆଠଦିନ କାଳ ଶଯ୍ୟା-ଗତ ରହି ଜ୍ୱରର ବିରାମ ସମୟ ମଧ୍ୟରେ ଏହି ଉପାଦେୟ ପୁସ୍ତକଖଣ୍ଡି ଆମୂଳଚୂଳ ପାଠକରି ଏତେ ଶାନ୍ତି ଅନୁଭବ କଲି ଯେ, ଏହାକୁ ମାତୃ-ଭାଷାରେ ଅନୁବାଦ କରିବାର ଲୋଭ ସମ୍ବରଣ କରି ପାରିଲି ନାହିଁ । ଅନୁବାଦ କାର୍ଯ୍ୟ ଚାଲିଥାଏ ଓ ମୋର କନ୍ୟାମାନେ ପ୍ରତ୍ୟହ ଅନୂଦିତାଂଶ ଲେଖି ମୋତେ ଶୁଣାଉଥାନ୍ତି । ଏହି ପ୍ରକାରେ ଡିସେମ୍ବର ମାସ ଶେଷ ଭାଗରେ ପୁସ୍ତକଟି ଅନୂଦିତ ହୋଇଗଲା ।

କିଛି ସମୟ ଉତ୍ତାରେ ମାନନୀୟ ଓଡ଼ିଶା ସରକାର ଓଡ଼ିଶା ସାହିତ୍ୟର ଉନ୍ନତି ସକାଶେ କେତେକ ଟଙ୍କା ମଞ୍ଜୁର କଲେ ଓ ଶିକ୍ଷା-ବିଭାଗୀୟ ଡିରେକ୍ଟର ମହୋଦୟ ବିଶେଷ ଜ୍ଞାପନଦ୍ୱାରା ଜଣାଇଲେ ଯେ, ଓଡ଼ିଆ ଭାଷାରେ ଲିଖିତ ପାଣ୍ଡୁଲିପିର ପରୀକ୍ଷାଭାର ସରକାର ଉତ୍କଳ-ସାହିତ୍ୟସମାଜ ହସ୍ତରେ ଅର୍ପଣ କରିଅଛନ୍ତି ଓ ସମାଜଦ୍ୱାରା ମନୋନୀତ

ପୁସ୍ତକର ମୁଦ୍ରଣ ନିମନ୍ତେ ଉଲ୍ଲିଖିତ ଠିକଣାରୁ ଲେଖକମାନଙ୍କୁ ସାହାଯ୍ୟ ଦିଆଯିବ । ମୁଁ ଉକ୍ତ ଆହ୍ବାନାନୁଯାୟୀ ଏହି ପାଣ୍ଡୁଲିପି ଉତ୍କଳସାହିତ୍ୟ ସମାଜକୁ ପ୍ରେରଣ କଲି । ସମାଜ ଅନ୍ୟାନ୍ୟ ପୁସ୍ତକ ସହିତ ଏହି ପୁସ୍ତକର ପାଣ୍ଡୁଲିପି ନିର୍ବାଚନ କରି ସରକାରଙ୍କୁ ଜଣାଇଲେ ଓ ଯଥାସମୟରେ ଡିରେକ୍ଟର ମହୋଦୟ ସରକାର ଏହି ପୁସ୍ତକର ବ୍ୟୟଭାର ବହନ କରିଥିବାର ଆଦେଶ ଜ୍ଞାପନ କଲେ । ଏଥି ସକାଶେ ମୁଁ ଓଡ଼ିଶାର ମନ୍ତ୍ରିମଣ୍ଡଳ, ଉତ୍କଳ ସାହିତ୍ୟ ସମାଜର କର୍ତ୍ତୃପକ୍ଷ ଓ ମାନନୀୟ ଶିକ୍ଷାବିଭାଗୀୟ ଡିରେକ୍ଟର ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ ମହୋଦୟଙ୍କ ନିକଟରେ ହୃଦୟର ଗଭୀର କୃତଜ୍ଞତା ଜଣାଉଛି ।

ପୁନଶ୍ଚ ଉତ୍କଳର ଲବ୍ଧପ୍ରତିଷ୍ଠ ଲେଖକ ପଣ୍ଡିତ ଶ୍ରୀ କୁଳମଣି ଦାଶ ଏହି ପୁସ୍ତକର ପାଣ୍ଡୁଲେଖ୍ୟଟି ଦେଖିଦେବାରେ ତାଙ୍କର ବହୁମୂଲ୍ୟ ସମୟ ଦାନ କରିଥିବାରୁ ତାଙ୍କ ପ୍ରତି ମୋର କୃତଜ୍ଞତା ଜଣାଉଅଛି । ଶେଷରେ, ଏହି ପୁସ୍ତକର ମୁଖବନ୍ଧ ଓ ପାଣ୍ଡୁଲେଖ୍ୟ ପ୍ରସ୍ତୁତ କରିବାରେ ମୋର ଜାମାତା ଶ୍ରୀମାନ୍ ଶିବନାରାୟଣ ପାତ୍ରୀ, ବି. ଏ, ବିଶେଷ ସାହାଯ୍ୟ କରିଥିବାରୁ ସେ ମୋର ଧନ୍ୟବାଦାର୍ହ ।

ସମ୍ବଲପୁର
ଭାଦ୍ର, ଶୁକ୍ଳ ଏକାଦଶୀ
୨୪ । ୯ । ୧୯୫୯

ଲେଖକ

# ମୁଖବନ୍ଧ

ଚୀନ-ପରିବ୍ରାଜକ ହୁଏନ୍ ସାଂ ଭାରତବର୍ଷରେ ଚଉଦ ବର୍ଷକାଳ ପରିକ୍ରମଣ କରି ତାହାଙ୍କ ଯେଉଁ ଭ୍ରମଣବୃତ୍ତାନ୍ତ ଲିପିବଦ୍ଧ କରିଥିଲେ, ତାହା ସେ ଏକ ଗୁମ୍ଫାରେ ଲୁଚାଇ ରଖିଥିଲେ। ହୁଇ-ଲି ଏବଂ ୟେନ୍-ସଂ ନାମକ ତାହାଙ୍କ ଦୁଇଜଣ ଶିଷ୍ୟ ତାହା ଉଦ୍ଧାର କରି ଜଗତକୁ ପ୍ରଦାନ କରି ନ ଥିଲେ ବିଶେଷତଃ ଭାରତବାସୀ ଏହି ଅମୂଲ୍ୟ ସମ୍ପଦରୁ ବଞ୍ଚିତ ହୋଇଥାଆନ୍ତେ !

ହୁଏନ୍ ସାଂ ଖ୍ରୀଷ୍ଟୀୟ ୬୨୯ ସାଲର ମଧ୍ୟଭାଗରେ ଭାରତବର୍ଷ ଅଭିମୁଖରେ ଯାତ୍ରା କରି ୬୪୫ ସାଲରେ ତାହାଙ୍କ ପର୍ଯ୍ୟଟନ ପରିସମାପ୍ତ କରିଥିଲେ। ସେ ଭାରତର ବିଭିନ୍ନ ସ୍ଥାନରେ ୬୩୦ ସାଲରୁ ୬୪୩ ପର୍ଯ୍ୟନ୍ତ ପରିଭ୍ରମଣ ଓ ଅବସ୍ଥାନ କରିଥିଲେ। ଏହି ସୁଦୀର୍ଘ ଚଉଦ ବର୍ଷ ଅବସ୍ଥାନ କାଳରେ ସେ ଭାରତର ବିଭିନ୍ନ ସ୍ଥାନ, ଲୋକମାନଙ୍କ ରୀତିନୀତି, ଆଚାର ବ୍ୟବହାର, ଦେଶସମୂହର ରାଜନୈତିକ ଅବସ୍ଥା ଇତ୍ୟାଦି ବିଷୟ ସୂକ୍ଷ୍ମାନୁସୂକ୍ଷ୍ମ ଭାବରେ ଆଲୋଚନା କରି ସେ ସମସ୍ତ ବିଷୟ ଲିପିବଦ୍ଧ କରିଯାଇଛନ୍ତି। ତାହାଙ୍କ ଭ୍ରମଣବୃତ୍ତାନ୍ତ ଭାରତବର୍ଷର ପ୍ରସିଦ୍ଧ ସ୍ଥାନମାନଙ୍କର ଶୁଷ୍କ ଭୌଗୋଳିକ ବା ରାଜ୍ୟମାନଙ୍କର ଐତିହାସିକ ବର୍ଣ୍ଣନା ନୁହେ। ଜ୍ଞାନପିପାସୁ ଚୈନିକ ଶ୍ରମଣଙ୍କର ପରିସ୍ଫୁଟ ବ୍ୟକ୍ତିତ୍ୱ, ପରିବ୍ରାଜକ ସୁଲଭ ଅନୁସନ୍ଧିତ୍ସା ଓ ତତ୍କାଳୀନ ବିଶ୍ୱାସପ୍ରବଣତାଦ୍ୱାରା ଭ୍ରମଣବୃତ୍ତାନ୍ତଟି ଉପନ୍ୟାସ ତୁଲ୍ୟ ଚିତ୍ତାକର୍ଷକ ହୋଇଅଛି।

ହୁଏନ୍ ସାଂ ଯେଉଁ ସମୟରେ ଭାରତବର୍ଷକୁ ଆସିଥିଲେ, ତାହା ଭାରତବର୍ଷର ଏକ ଗୌରବମୟ ଯୁଗ ଥିଲା। ବୌଦ୍ଧଧର୍ମର ପ୍ରଭାବ କେବଳ ଭାରତବାସୀଙ୍କ ଜୀବନରେ ଓତପ୍ରୋତ ଭାବରେ ପ୍ରବେଶ କରିଥିଲା, ତାହା ନୁହେ, ଭାରତବର୍ଷ ବାହାରେ ଚୀନ, ପାରସ୍ୟ, ଗାନ୍ଧାର, ଜାଭା, ସୁମାତ୍ରା,

ଶ୍ୟାମ ପ୍ରଭୃତି ଏସିଆ ମହାଦେଶର ପ୍ରାୟ ସର୍ବତ୍ର ବ୍ୟାପ୍ତ ହୋଇଥିଲା । ଏସିଆର ପ୍ରାୟ ସମସ୍ତ ଦେଶରୁ ବୌଦ୍ଧ ଶ୍ରମଣ ଓ ପରିବ୍ରାଜକମାନେ ଭଗବାନ୍ ତଥାଗତଙ୍କ ପବିତ୍ର ଜନ୍ମଭୂମି ଭାରତବର୍ଷକୁ ତୀର୍ଥଯାତ୍ରା ଓ ଜ୍ଞାନଲାଭ ଉଦ୍ଦେଶ୍ୟରେ ଆସୁଥିଲେ ।

ପ୍ରାଚୀନ ଭାରତବାସୀମାନେ ସ୍ୱଦେଶର ଧାରାବାହିକ ଇତିହାସ ରଚନା ସମ୍ବନ୍ଧରେ ଏକାନ୍ତ ଉଦାସୀନ ଥିଲେ । ଆମ୍ଭେମାନେ ଯାହାକିଛି ତଥ୍ୟ ପାଉଁ, ସେ ସମସ୍ତ ବିଦେଶୀୟମାନଙ୍କର ଲେଖନୀ-ପ୍ରସୂତ । ସାମରିକ ଅଭିଯାନ, ଦେଶଜିଗୀଷା, ବାଣିଜ୍ୟ ପ୍ରସାର, ଧର୍ମସମ୍ବନ୍ଧୀୟ ଆଲୋଚନା ଓ ପରବର୍ତ୍ତୀ କାଳରେ ବୈଜ୍ଞାନିକ ଗବେଷଣା ସଙ୍ଗେ ଇତିହାସ ଲେଖାର ଆବଶ୍ୟକତା ଉପଲବ୍ଧ ହେବାକୁ ଲାଗିଲା । ଯେଉଁ ବିଦେଶୀୟମାନେ ଭାରତବର୍ଷକୁ ଆସିଥିଲେ, ସେମାନଙ୍କ ମଧ୍ୟରେ ଗ୍ରୀକ୍ ଓ ଆରବୀୟମାନେ ପ୍ରଧାନ । ଗ୍ରୀକ୍‌ମାନେ ଆଲେକ୍‌ଜାଣ୍ଡରଙ୍କ ନେତୃତ୍ୱରେ ଭାରତବର୍ଷ ଆକ୍ରମଣ କରି କେତେକ ବର୍ଷକାଳ ଦେଶରେ ସ୍ୱାଧିକାର ବିସ୍ତାର କରି ରହିଲେ । ଆରବୀୟମାନେ ବାଣିଜ୍ୟ ଓ ବ୍ୟବସାୟ ଉଦ୍ଦେଶ୍ୟରେ ଆସିଥିଲେ ; ସୁତରାଂ ସେମାନଙ୍କ ରଚିତ ଇତିହାସ ନିରପେକ୍ଷ ହୋଇ ନ ପାରେ ; କିନ୍ତୁ ଚୈନିକ ପରିବ୍ରାଜକଗଣ ଭାରତୀୟ ଭାବରେ ଅନୁପ୍ରାଣିତ ହୋଇ ଭାରତର ପବିତ୍ର ସ୍ଥାନସମୂହ ପରିଦର୍ଶନ କରି ଉକ୍ତ ସ୍ଥାନସମୂହର ବିଶଦ୍ ବିବରଣ ଓ ଦେଶର ଧର୍ମଭାବ, ରୀତିନୀତି, ଆଚାର ବ୍ୟବହାର ସମ୍ବନ୍ଧରେ ଲେଖିଯାଇଛନ୍ତି ; ସୁତରାଂ ସେମାନଙ୍କ ଲିଖିତ ବିବରଣର ନିରପେକ୍ଷତା ଏହାର ବିଶେଷତ୍ୱ ।

ବୌଦ୍ଧଧର୍ମର ଅଭ୍ୟୁଦୟରେ ଚୀନ ପରିବ୍ରାଜକଗଣ ଭାରତବର୍ଷ ପ୍ରତି ଆକୃଷ୍ଟ ହୋଇ ବହୁ ସଂଖ୍ୟାରେ ଏହି ଦେଶ ଦର୍ଶନ ଓ ଶିକ୍ଷା ଲାଭ ଉଦ୍ଦେଶେ ଆସିବାକୁ ଲାଗିଲେ । ସେହି ସମୟରେ ଭାରତୀୟ ସଭ୍ୟତା ବହୁ ଦୂରକୁ ପ୍ରସାରିତ ହୋଇଥିଲା । ଭାରତୀୟ ଦ୍ୱୀପପୁଞ୍ଜ, ମାଳୟ, ସୁମାତ୍ରା, ଜାଭା, ବାଲି, ସିଲିବସ, କମ୍ବୋଡିଆ ଓ ଶ୍ୟାମ ପ୍ରଭୃତି ଦେଶସମୂହରୁ ପ୍ରାପ୍ତ ଫଳକ ଲିପିରୁ ପ୍ରାଚୀନ ଭାରତବାସୀଙ୍କ ଦେଶଜୟ ଏବଂ ଉପନିବେଶ

ସ୍ଥାପନର ଭୂରି ଭୂରି ବିବରଣ ମିଳେ । ମାଳୟ ଉପଦ୍ୱୀପର ଏକ ସ୍ଥାନରେ ରକ୍ତମୃତ୍ତିକା (ଆଧୁନିକ ରଙ୍ଗମାଟି) ନିବାସୀ ବୌଦ୍ଧ ମହା-ନାବିକ ବୁଦ୍ଧଗୁପ୍ତଙ୍କ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀର ଏକ ସ୍ତୂପ ଅଛି । ତହିଁରେ ଭାରତବର୍ଷ ସମ୍ବନ୍ଧରେ ନାନାବିଷୟକ ବିବରଣ ଖୋଦିତ ହୋଇଅଛି । ଅନୁରୂପ ବହୁସଂଖ୍ୟକ ସ୍ତୂପରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରୁ ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କ ବଂଶଧରମାନେ ଉକ୍ତ ଦେଶରେ ରାଜତ୍ୱ କରୁଥିଲେ । ସେମାନେ ସମସ୍ତେ ଶୈବ ଥିଲେ ଓ ଧର୍ମ ମହାରାଜ ନାମରେ ଅଭିହିତ ହୋଇଥିଲେ । ବୋର୍ଣ୍ଣିଓ ଦ୍ୱୀପ ଅନ୍ତଃପାତୀ କୋଟି ନାମକ ସ୍ଥାନରେ ସାତଗୋଟି ସ୍ତୂପ ଅଛି । ତହିଁରେ ପଲ୍ଲବ ଲିପିରେ ଖୋଦିତ ବିବରଣୀରୁ ଜଣାଯାଏ ଯେ, ଖ୍ରୀଷ୍ଟୀୟ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀରେ ସେଠାରେ ଏକ ଶକ୍ତିଶାଳୀ ହିନ୍ଦୁ ରାଜବଂଶ ରାଜତ୍ୱ କରୁଥିଲେ ଓ ଉକ୍ତ ବଂଶର ରାଜା ମୂଳବର୍ମା ଉକ୍ତ ସ୍ତୂପଗୁଡ଼ିକ ନିର୍ମାଣ କରିଥିଲେ । ଜାଭା ଓ ସୁମାତ୍ରା ଦ୍ୱୀପରେ ବ୍ରାହ୍ମଣ-ମାନଙ୍କ ଉପନିବେଶ ସମ୍ବନ୍ଧରେ ଫାହିଏନ୍ ଉଲ୍ଲେଖ କରିଯାଇଛନ୍ତି । ତାହାଙ୍କ ଭ୍ରମଣ ସମୟରେ ସେ ସେଠାରେ ଅସଂଖ୍ୟ ବୌଦ୍ଧ ମଠର ଭଗ୍ନାବଶେଷ ଦର୍ଶନ କରିଥିଲେ । ମଧ୍ୟଏସିଆରେ ଅଳ୍ପଦିବସ ପୂର୍ବେ ଆବିଷ୍କୃତ ବସ୍ତୁସମୂହରୁ ଜଣାଯାଏ ଯେ, ଏହି ଅଞ୍ଚଳର ରାଜ୍ୟସମୂହ ଭାରତବର୍ଷ ସହିତ ସମ୍ବନ୍ଧବନ୍ଧନରେ ଆବଦ୍ଧ ଥିଲେ । ଦାକ୍ଷିଣାତ୍ୟର ଦ୍ରାବିଡ଼ ବଣିକମାନେ ପାରସ୍ୟ ଉପସାଗର କୂଳସ୍ଥ ଭୂଖଣ୍ଡ ଓ ମିଶର ପର୍ଯ୍ୟନ୍ତ ବାଣିଜ୍ୟ ବିସ୍ତାର କରିଥିଲେ । ରୋମ୍ ସମ୍ରାଟ ଅଗଷ୍ଟସଙ୍କ ସମୟର ଏକ ଗ୍ରନ୍ଥରେ ଲିଖିତ ଅଛି ଯେ, ଭାରତବାସୀମାନେ ଜର୍ମାନୀରେ ସୁଦ୍ଧା ବାଣିଜ୍ୟ କରୁଥିଲେ । ଜାଭା, ସୁମାତ୍ରା ଓ ଚୀନ ଦେଶକୁ ଭାରତୀୟ ବାଣିଜ୍ୟପୋତ ଯାଉଥିବାର ଭୂରି ଭୂରି ପ୍ରମାଣ ଅଛି । ବୌଦ୍ଧସମ୍ରାଟ ଅଶୋକ ସିରିଆ, ମିଶର ଓ ଗ୍ରୀସ୍ ଦେଶସ୍ଥ ମେସିଡ଼ୋନିଆକୁ ଧର୍ମପ୍ରଚାର ଉଦ୍ଦେଶ୍ୟରେ ବୌଦ୍ଧଶ୍ରମଣ ପ୍ରେରଣ କରିଥିବା ବିଷୟ ଇତିହାସ-ପ୍ରସିଦ୍ଧ । ମଧ୍ୟ-ଏସିଆରେ ବୌଦ୍ଧଧର୍ମ ଅତ୍ୟନ୍ତ ପ୍ରଭାବ ବିସ୍ତାର କରିଥିଲା । ତିବ୍ବତ,

ଚୀନ, ଜାପାନ, ମାଞ୍ଚୁରିଆ ପ୍ରଭୃତି ଦେଶ ସହିତ ଭାରତବର୍ଷର ସମ୍ବନ୍ଧ ଅଭେଦ୍ୟ ଥିଲା ।

ପ୍ରାୟ ୬୭ ଖ୍ରୀଷ୍ଟାବ୍ଦରେ ଚୀନ ଦେଶରେ ବୌଦ୍ଧ ଧର୍ମର ପ୍ରଚାର ଆରମ୍ଭ ହୋଇଥିଲା । ସେହି ଦିନଠାରୁ ଚୀନଦେଶରୁ ଅସଂଖ୍ୟ ପରିବ୍ରାଜକ ସନ୍ୟାସୀ ଭାରତବର୍ଷକୁ ଆଗମନ କରିଥିଲେ । ପୂର୍ବରେ କୁହାଯାଇଅଛି ଯେ, ସେମାନେ ସମସ୍ତେ ଧର୍ମଭାବରେ ଅନୁପ୍ରାଣିତ ହୋଇ ଭାରତର ତୀର୍ଥ-ସ୍ଥଳୀମାନ ଦେଖିବା ପାଇଁ ଆସିଥିଲେ । ସେମାନେ ଭାରତବର୍ଷର ଇତିହାସ-ପ୍ରସିଦ୍ଧ ଓ ପବିତ୍ର ତୀର୍ଥସ୍ଥାନମାନଙ୍କର ବିବରଣ ଲେଖିଯାଇ-ଅଛନ୍ତି । ସେମାନଙ୍କ ମଧ୍ୟରେ ଫାହିଏନ୍ ଓ ହୁଏନ୍-ସାଂ ପ୍ରଧାନ । ଫାହିଏନ ବୌଦ୍ଧ-ସନ୍ୟାସୀ ଥିଲେ ଓ ସେ ଖ୍ରୀଷ୍ଟୀୟ ୩୯୯ ସାଲରୁ ୪୧୩ ସାଲ ପର୍ଯ୍ୟନ୍ତ ଭାରତବର୍ଷରେ ସିନ୍ଧୁନଦୀର ଉତ୍ତରାଞ୍ଚଳରୁ ଗଙ୍ଗାନଦୀର ମୁହାଣ ପର୍ଯ୍ୟନ୍ତ ପରିଭ୍ରମଣ କରିଥିଲେ । ସେ ସଂକ୍ଷେପରେ ତାହାଙ୍କ ଭ୍ରମଣ-ବୃତ୍ତାନ୍ତ ଲିପିବଦ୍ଧ କରିଥିଲେ ହେଁ ତହିଁରେ ତତ୍କାଳୀନ ତୀର୍ଥସ୍ଥଳୀ ଓ ପବିତ୍ର ସ୍ଥାନମାନଙ୍କର ସବିଶେଷ ବିବରଣ ସନ୍ନିବିଷ୍ଟ ହୋଇଅଛି । ବିଶେଷତଃ ତାହାଙ୍କ ବର୍ଣ୍ଣିତ ସ୍ଥାନସମୂହର ପରସ୍ପର ଭୌଗୋଳିକ ସମ୍ବନ୍ଧ ଓ ସେମାନଙ୍କ ଦୂରତାବିଷୟକ ବର୍ଣ୍ଣନା ଅତ୍ୟନ୍ତ ଉପାଦେୟ ।

ହୁଏନ୍ ସାଂଙ୍କ ଭ୍ରମଣ-ବୃତ୍ତାନ୍ତରୁ ସ୍ପଷ୍ଟ ଜଣାପଡ଼େ ଯେ, ସେ ସଂସ୍କୃତ, ପାଲିଭାଷା ଓ ସାହିତ୍ୟ ଆୟତ୍ତ କରିଥିଲେ । ସେଥିପାଇଁ ସେ ଭାରତୀୟ ସଂସ୍କୃତି ଓ ମନୋବୃତ୍ତିକୁ ସମ୍ୟକ୍‌ରୂପେ ବୁଝିପାରିଥିଲେ । ସେ ବିଦେଶୀୟ ହେଲେହେଁ ଭାରତୀୟ ଚିନ୍ତାଧାରାରେ ପରିପ୍ଳାବିତ ହୋଇ ତାଙ୍କର ଭ୍ରମଣ-ବୃତ୍ତାନ୍ତ ଲେଖିଅଛନ୍ତି । ସେଥିପାଇଁ ତାଙ୍କ ଭ୍ରମଣବୃତ୍ତାନ୍ତ ପୂର୍ବକଥିତ ଅନ୍ୟାନ୍ୟ ବିଦେଶୀୟ ଲେଖକଙ୍କର ଭ୍ରମଣଲିପି ପରି ଅଜ୍ଞାତନାମା ରାଜ୍ୟ ଓ ରାଜାମାନଙ୍କର ବର୍ଣ୍ଣନାରେ ବା ଶୁଷ୍କ ଭୌଗୋଳିକ ବିନଲିପିରେ ପର୍ଯ୍ୟବସିତ ହୋଇ ନାହିଁ । ତାଙ୍କର ଭ୍ରମଣବୃତ୍ତାନ୍ତରେ ତତ୍କାଳୀନ ଭାରତବର୍ଷର ଧର୍ମନୈତିକ, ସାମାଜିକ ଓ ରାଜନୈତିକ ଅବସ୍ଥାର ବୈଚିତ୍ର୍ୟପୂର୍ଣ୍ଣ ଓ ଚିତ୍ତାକର୍ଷକ ଚିତ୍ର ଦେଖାଯାଏ ଓ ଗଭୀର ଧର୍ମପ୍ରାଣତା,

ବିଦ୍ୱାନ୍‌ସମାଜର ସମାଦର ଓ ଦେଶରେ ବ୍ରାହ୍ମଣ୍ୟଧର୍ମ ଓ ବୌଦ୍ଧଧର୍ମର ପ୍ରଭାବ ଇତ୍ୟାଦି ବିଷୟ ତାହାଙ୍କ ଭ୍ରମଣ-ବୃତ୍ତାନ୍ତରୁ ଜଣାପଡ଼େ ।

ହୁଏନ୍ ସାଂ ଖ୍ରୀଷ୍ଟୀୟ ୬୨୯ ସାଲର ବର୍ଷା ଋତୁରେ ତାଙ୍କର ଜନ୍ମପ୍ରଦେଶ କ୍ୟାଂ-ଚୁରୁ ବହିର୍ଗତ ହୋଇଥିଲେ ଓ ସେ ଭାରତବର୍ଷରେ ୬୪୩ ସାଲ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ । ଏହି ଦୀର୍ଘ ଚଉଦ ବର୍ଷ ମଧ୍ୟରେ ସେ ଉତ୍ତରରେ କାବୁଲ, କାଶ୍ମୀର ଓ ନେପାଳରୁ ଦକ୍ଷିଣରେ ମାନ୍ଦ୍ରାଜ ନିକଟବର୍ତ୍ତୀ କାଞ୍ଚିପୁର ପର୍ଯ୍ୟନ୍ତ ସମସ୍ତ ପ୍ରଧାନ ପ୍ରଧାନ ନଗର ଦର୍ଶନ କରିଥିଲେ । ତାହାଙ୍କ ଭ୍ରମଣମାର୍ଗରେ ବହିର୍ଗତ ହେଲା ଉତ୍ତାରେ ପଶ୍ଚିମ ମାର୍ଗରେ ପ୍ରାୟ ୧୬୦୦ ମାଇଲ ଅତିକ୍ରମ କରି ସେ ସେହି ବର୍ଷର ଶୀତ ଋତୁରେ ଅ-କି-ନି ନାମକ ପ୍ରଦେଶରେ ପହଞ୍ଚିଲେ । ସେହିଠାରୁ ଆହୁରି ୧୮୦୯ ମାଇଲ ଅତିକ୍ରମ କଲା ଉତ୍ତାରେ ବସନ୍ତ କାଳରେ ସମରଖଣ୍ଡ ରାଜ୍ୟରେ ଉପନୀତ ହେଲେ । ସେହିଠାରୁ ବଲଖ ଓ ଭାରତବର୍ଷର ବାମିୟାନ ଦେଇ ୬୩୦ ସାଲର ଗ୍ରୀଷ୍ମଋତୁରେ କପିଶା ରାଜ୍ୟକୁ ଆସିଲେ । ସେହିଠାରୁ ବଙ୍ଗାନାଞ୍ଚଳରେ ଭ୍ରମଣ ଓ ଅବସ୍ଥାନ କରି ସିନ୍ଧୁନଦ ଅତିକ୍ରମ କଲେ । ପଥରେ ନଗରହାର ନାମକ ସ୍ଥାନରେ ତୀର୍ଥସ୍ଥାନମାନ ଦର୍ଶନ କରିବା ନିମିତ୍ତ ଦୁଇମାସ ରହି ସେହି ବର୍ଷର ଶୀତକାଳରେ ଗାନ୍ଧାର ବା ଆଧୁନିକ କାନ୍ଦାହାରରେ ଉପନୀତ ହେଲେ । ୬୩୧ ସାଲର ବସନ୍ତ ଋତୁରେ ଭାରତବର୍ଷରେ ଉପନୀତ ହୋଇ ସେ ତକ୍ଷଶିଳାରେ ପଦାର୍ପଣ କରିଥିଲେ ଓ ସେହି ସ୍ଥାନରେ ତୀର୍ଥସ୍ଥଳୀମାନ ପରିଦର୍ଶନ କରିବା ନିମିତ୍ତ କେତେକ ମାସ ଅବସ୍ଥାନ କରି,ବର୍ଷାକାଳରେ କାଶ୍ମୀର ଦେଶରେ ପହଞ୍ଚିଲେ । କାଶ୍ମୀରରେ ସେ ପୂର୍ଣ୍ଣ ଦୁଇବର୍ଷକାଳ ସୂତ୍ର ଓ ଶାସ୍ତ୍ରାଧ୍ୟୟନ ଓ ପୁଣ୍ୟକ୍ଷେତ୍ର ପରିଦର୍ଶନରେ ଜୟେନ୍ଦ୍ରମଠ ଓ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଅତିବାହିତ କଲେ । ୬୩୩ ସାଲର ଶୀତ ଋତୁରେ ସେ କାଶ୍ମୀରଦେଶ ପରିତ୍ୟାଗ କରି ପୂର୍ବାଭିମୁଖରେ ଯାତ୍ରା କଲେ ଓ ଗ୍ରୀକ୍ ଇତିହାସ ବର୍ଣ୍ଣିତ ସାଙ୍ଗଲ ଦୁର୍ଗର ଭଗ୍ନାବଶେଷ ପରିଦର୍ଶନ କରି ଆଧୁନିକ ଜଳନ୍ଧର ନିକଟବର୍ତ୍ତୀ ଚିନାପତିରେ ଉପନୀତ

ହେଲେ । ସେ ତନାପଣରେ ଚଉଦ ମାସ ଓ ଜଳନ୍ଧରରେ ଚାରିମାସ ବୌଦ୍ଧଶାସ୍ତ୍ରାଧ୍ୟୟନରେ ଅତିବାହିତ କଲେ । ଜଳନ୍ଧରରୁ ବହିର୍ଗତ ହୋଇ ୬୩୫ ସାଲର ଶରତ୍ ଋତୁରେ ସେ ସତ୍ଲେଜ ନଦୀ ଅତିକ୍ରମ କଲେ । ସେହିଠାରୁ ତାହାଙ୍କ ମାର୍ଗ ଅତ୍ୟନ୍ତ ଦୁର୍ଗମ ଓ ଭୟସଙ୍କୁଳ ହୋଇଥିଲା । ଯେଉଁ ତୀର୍ଥସ୍ଥାନମାନ ସେ ପରିଦର୍ଶନ କରିପାରି ନ ଥିଲେ, ଗନ୍ତବ୍ୟ ପଥରୁ ବହୁବାର ପ୍ରତ୍ୟାବର୍ତ୍ତନ କରି ସେ ସେସମସ୍ତ ପରିଦର୍ଶନ କରିଥିଲେ । ଏହିପ୍ରକାରେ ସେ ମଥୁରାରୁ ୨୦୦ ମାଇଲ ପଛକୁ ଫେରି ସେହି ବର୍ଷର ହେମନ୍ତ ଋତୁରେ ଥାନେଶ୍ୱରରେ ଆସି ଉପନୀତ ହେଲେ । ଥାନେଶ୍ୱରରୁ ପୂର୍ବ ଦିଗରେ ଯାତ୍ରା କରି ଯମୁନାକୂଳବର୍ତ୍ତୀ ସ୍ରୁଘ୍ନଦେଶ ଓ ଗଙ୍ଗାକୂଳବର୍ତ୍ତୀ ଗଙ୍ଗାଦ୍ୱାର ଅତିକ୍ରମ କଲେ ଓ ସେହି ବର୍ଷର ବସନ୍ତ ଋତୁରେ ଉତ୍ତର ପାଞ୍ଚାଳର ରାଜଧାନୀ ଅହିଛତ୍ରଠାରେ ଉପନୀତ ହେଲେ । ତତ୍ପରେ ସେ ଗଙ୍ଗାନଦୀ ଅତିକ୍ରମ କଲେ ଓ ଦୋଆବ୍ ମଧ୍ୟବର୍ତ୍ତୀ ସୁପ୍ରସିଦ୍ଧ କାନ୍ୟକୁବ୍ଜ ଓ କୌଶାମ୍ବୀ ରାଜ୍ୟମାନ ପରିଦର୍ଶନ କରି ଉତ୍ତର ଦିଗସ୍ଥ ଅଯୋଧ୍ୟା ଓ ଶ୍ରାବସ୍ତୀରେ ପବିତ୍ର ସ୍ଥାନସମୂହ ପରିଦର୍ଶନ କଲେ । ତତ୍ପରେ ସେ ବୁଦ୍ଧଙ୍କ ଜନ୍ମସ୍ଥାନ କପିଳବାସ୍ତୁ ଓ ନିର୍ବାଣ ସ୍ଥାନ କୁଶୀ ନଗର ଦର୍ଶନ କରିବା ଉଦ୍ଦେଶ୍ୟରେ ପୂର୍ବାଭିମୁଖରେ ଯାତ୍ରା କଲେ । ସେହି-ଠାରୁ ପଶ୍ଚିମ ଦିଗରେ ପ୍ରତ୍ୟାବୃତ୍ତ ହୋଇ ଯେଉଁଠାରେ ବୁଦ୍ଧ ସର୍ବ ପ୍ରଥମରେ ତାହାଙ୍କ ଧର୍ମଚକ୍ର ପ୍ରବର୍ତ୍ତନ କରିଥିଲେ, ସେହି ପୁଣ୍ୟଭୂମି ବାରାଣସୀରେ ପଦାର୍ପଣ କଲେ । ତହିଁ ଉତ୍ତାରେ ପୁନର୍ବାର ପୂର୍ବାଭି-ମୁଖରେ ଯାତ୍ରା କରି ଇତିହାସ-ବିଶ୍ରୁତ ବୈଶାଳୀ ନଗରରେ ଉପନୀତ ହେଲେ ଓ ସେହିଠାରୁ ନେପାଳ ଦର୍ଶନ କରି ପୁଣି ପୂର୍ବାଭିମୁଖରେ ପ୍ରତ୍ୟାବୃତ୍ତ ହେଲେ ଏବଂ ଗଙ୍ଗା ନଦୀ ଅତିକ୍ରମ କରି ୬୩୭ ସାଲର ବସନ୍ତ ଋତୁରେ ମଗଧ ଦେଶର ରାଜଧାନୀ ପାଟଳୀପୁତ୍ରରେ ଉପନୀତ ହେଲେ । ପାଟଳୀପୁତ୍ର ପରିତ୍ୟାଗ କରି ଗୟାସ୍ଥିତ ଯେଉଁ ବୋଧିଦ୍ରୁମ ମୂଳରେ ଭଗବାନ ବୁଦ୍ଧ ପାଞ୍ଚବର୍ଷ କାଳ ଧ୍ୟାନମଗ୍ନ ହୋଇ ରହିଥିଲେ, ସେ ସେହି ସ୍ଥାନକୁ ଗମନ କରି ପୂଜା ଅର୍ପଣ କଲେ ଓ ସେହିଠାରୁ ଗୃଧ୍ରକୂଟ ପର୍ବତ ପରିଦର୍ଶନ କଲେ । ଏହି ପର୍ବତରେ ବୁଦ୍ଧ ଇନ୍ଦ୍ରଙ୍କୁ ସ୍ୱଧର୍ମତତ୍ତ୍ୱ ଶିକ୍ଷା

ପ୍ରଦାନ କରିଥିବା ପ୍ରବାଦ ଅଛି । ତତ୍ପରେ ସେ ମଗଧର ପ୍ରାଚୀନ ରାଜଧାନୀ ସୁପ୍ରସିଦ୍ଧ କୁଶାଗାରପୁର ଓ ରାଜଗୃହ ପରିଦର୍ଶନ କରି ସୁବିଖ୍ୟାତ ନାଳନ୍ଦ ମଠରେ ପ୍ରବିଷ୍ଟ ହୋଇଲେ । ନାଳନ୍ଦ ମଠରେ ପନ୍ଦର ମାସ କାଳ ସଂସ୍କୃତ ଭାଷା ଶିକ୍ଷା ଓ ବିଭିନ୍ନ ଶାସ୍ତ୍ରାଧ୍ୟୟନରେ ଅତିବାହିତ କଲେ । ସେହି ସମୟରେ ନାଳନ୍ଦ ମଠ ଭାରତବର୍ଷ ମଧ୍ୟରେ ବିଦ୍ୟା ଓ ଧର୍ମାଲୋଚନାର ପ୍ରଧାନ କେନ୍ଦ୍ର ଥିଲା ଏବଂ ଭାରତବର୍ଷ ବାହାରେ ଚୀନ ପ୍ରଭୃତି ଦେଶମାନଙ୍କରୁ ମଧ୍ୟ ଛାତ୍ରମାନେ ଆସି ଏହି ସ୍ଥାନରେ ବିବିଧ ଶାସ୍ତ୍ରାଧ୍ୟୟନ କରୁଥିଲେ । ଏହି ସ୍ଥାନ ଦିନେ ଏସିଆ ମହାଦେଶରେ ଓ ବାହାରେ ମଧ୍ୟ ଜ୍ଞାନାଲୋକ ବିତରଣ କରି ପ୍ରସିଦ୍ଧି ଲାଭ କରିଥିଲା ଏବଂ ହୁଏନ୍-ସାଂଙ୍କ ପରି ଶତ ଶତ ଜ୍ଞାନଲିପ୍ସୁ ବିଦେଶୀୟ ଛାତ୍ର ଓ ସନ୍ନ୍ୟାସୀ ଏହାର ନାମରେ ମୁଗ୍ଧ ହୋଇ ଶତ ବାଧାବିଘ୍ନ ଅତିକ୍ରମ କରି ଏଠାକୁ ଶାସ୍ତ୍ରାଧ୍ୟୟନ କରିବାକୁ ଆସୁଥିଲେ, "ଯଦୁପତେଃ କ୍ୱ ଗତା ମଥୁରା ପୁରୀ, ରଘୁପତେଃ କ୍ୱ ଗତୋତ୍ତର-କୋଶଳଃ ?" ପୂର୍ବରେ ଯେଉଁ ସ୍ଥାନ ଦଶ ସହସ୍ର ସନ୍ନ୍ୟାସୀ ଓ ଶ୍ରମଣଙ୍କର ଶାସ୍ତ୍ରାଧ୍ୟୟନ ଓ ଧର୍ମଚର୍ଚ୍ଚାରେ ମୁଖରିତ ହେଉଥିଲା, ସେହି ସ୍ଥାନ ଆଜ ନିର୍ଜ୍ଜନ ବନସ୍ଥଳୀ ଓ ପ୍ରତ୍ନତତ୍ତ୍ୱବେତ୍ତାମାନଙ୍କର କୌତୂହଳକ୍ଷେତ୍ର ହୋଇଅଛି । ହୁଏନ୍-ସାଂ ତାହାଙ୍କ ଭ୍ରମଣ-ବୃତ୍ତାନ୍ତରେ ନାଳନ୍ଦ ମଠର ଏକ ଗୌରବମୟ ଚିତ୍ର ଦେଇଅଛନ୍ତି ।

ନାଳନ୍ଦ ମଠରେ ବିଦ୍ୟାର ପରିସମାପ୍ତି ଓ ଧର୍ମବିଷୟକ ସମସ୍ତ ସନ୍ଦେହ ମୋଚନ କଲା ପରେ ହୁଏନ୍-ସାଂ ୬୩୯ ସାଲର ଶୀତକାଳରେ ହିରଣ୍ୟ ପର୍ବତ ଚମ୍ପା ପ୍ରଭୃତି ମଗଧର ପୂର୍ବବର୍ତ୍ତୀ ରାଜ୍ୟମାନ ପର୍ଯ୍ୟଟନ କରି ପୌଣ୍ଡ୍ରବର୍ଦ୍ଧନ ଓ କାମରୂପ ଯାତ୍ରା କଲେ । କାମରୂପରୁ ଦକ୍ଷିଣ ଦିଗରେ ଯାତ୍ରାକରି ସମତଟ ଓ ତାମ୍ରଲିପ୍ତି ଦେଇ ଗ୍ରୀଷ୍ମକାଳରେ ଉଡ୍ରଦେଶ ବା ଓଡ଼ିଶାରେ ଆସି ଉପନୀତ ହେଲେ । ହୁଏନ୍-ସାଂ ଓଡ଼ିଶାକୁ ଏକ ପ୍ରଧାନ ବାଣିଜ୍ୟ ସ୍ଥାନ ବୋଲି ବର୍ଣ୍ଣନା କରିଛନ୍ତି ଏବଂ ଏଠାରେ ବଣିକମାନେ ସମୁଦ୍ର ଯାତ୍ରାରେ ପ୍ରବୀଣ ଥିବାର ଉଲ୍ଲେଖ କରିଅଛନ୍ତି ।

ଓଡ଼ିଶାରୁ ପୁଣି ଦକ୍ଷିଣକୁ ଯାତ୍ରା କରି ହୁଏନ୍-ସାଂ ଗଞ୍ଜାମ, କଳିଙ୍ଗ, ଦକ୍ଷିଣ କୋଶଳ ଓ ଅନ୍ଧ୍ରଦେଶ ପର୍ଯ୍ୟଟନ କଲେ ଏବଂ ଅନ୍ଧ୍ରଦେଶସ୍ଥ ଧନ-କଟକରେ ବୌଦ୍ଧଶାସ୍ତ୍ରାଧ୍ୟୟନରେ କେତେକ ମାସ ଅତିବାହିତ କରି ୬୪୦ ସାଲର ଆରମ୍ଭରେ ଦ୍ରାବିଡ଼ର ରାଜଧାନୀ କାଞ୍ଚିପୁରରେ ପ୍ରବେଶ କଲେ । ଏହିଠାରେ ହୁଏନ୍-ସାଂ ସିଂହଳ ନରପତିଙ୍କ ମୃତ୍ୟୁଯୋଗୁଁ ଦେଶ ଅରାଜକତାରେ ପୂର୍ଣ୍ଣ ହୋଇଥିବା ସମ୍ବାଦ ପାଇ ସିଂହଳ ଯାତ୍ରାରୁ ବିରତ ହେଲେ । ହୁଏନ୍-ସାଂ ଦ୍ରାବିଡ଼ରୁ ଉତ୍ତରପଶ୍ଚିମାଭି-ମୁଖରେ ଯାତ୍ରାକରି କଙ୍କଣ ଓ ମହାରାଷ୍ଟ୍ର ପର୍ଯ୍ୟଟନପୂର୍ବକ ନର୍ମଦାନଦୀ-କୂଳସ୍ଥ ବ୍ରୋଚ ନଗରରେ ଉପନୀତ ହେଲେ ଓ ସେଠାରୁ ଉଜ୍ଜୟିନୀ, ବଲ୍ଲଭୀ ଓ ଅନ୍ୟାନ୍ୟ କ୍ଷୁଦ୍ର ରାଜ୍ୟ ମଧ୍ୟଦେଇ ୬୪୧ ସାଲର ଶେଷ-ଭାଗରେ ସିନ୍ଧୁ ଓ ମୁଲ୍ତାନରେ ପ୍ରବେଶ କଲେ । ସେଠାରେ ଅଳ୍ପକାଳ ଅବସ୍ଥାନ କରି ଦ୍ୱିତୀୟବାର ମଗଧରେ ଉପନୀତ ହେଲେ ଓ ସୁପ୍ରସିଦ୍ଧ ନାଳନ୍ଦ ଏବଂ ତିଲଡକ ମଠରେ ବିଖ୍ୟାତ ବୌଦ୍ଧଗୁରୁ ପ୍ରାଜ୍ଞଭଦ୍ରଙ୍କ ନିକଟରେ ଧର୍ମସମ୍ବନ୍ଧୀୟ କେତେକ ବିଷୟରେ ସନ୍ଦେହ ମୋଚନାର୍ଥ ଦୁଇମାସକାଳ ଅବସ୍ଥାନ କଲେ । ତତ୍ପରେ ସେ ଦ୍ୱିତୀୟବାର କାମରୂପ ଗମନ କରି ସେଠାରେ ଏକମାସ ଅବସ୍ଥାନ କଲେ । ପୁଣି ୬୪୩ ସାଲର ଆରମ୍ଭରେ ପାଟଳୀପୁତ୍ରକୁ ପ୍ରତ୍ୟାବର୍ତ୍ତନ କରି ସେଠାରେ ଅଧୀନ ଅଷ୍ଟାଦଶ ନରପତିପରିବେଷ୍ଟିତ ରାଜାଧିରାଜ ଶୀଲାଦିତ୍ୟଙ୍କ ଅନୁଷ୍ଠିତ ପଞ୍ଚବାର୍ଷିକ ଧର୍ମସଭାରେ ଯୋଗଦାନ କଲେ ଓ ସେହିଠାରୁ ତାହାଙ୍କ ସମଭିବ୍ୟା-ହାରରେ ପ୍ରୟାଗ ଓ କୌଶାମ୍ବୀ ମଧ୍ୟଦେଇ କାନ୍ୟକୁବ୍ଜକୁ ଗମନ କଲେ । ସେ ଏ ସମସ୍ତ ସ୍ଥାନରେ ଅନୁଷ୍ଠିତ ଧର୍ମସଭାସମୂହର ବିଶଦ ବିବରଣ ଲେଖିଯାଇଅଛନ୍ତି । ସେହି ସମୟରେ ବୌଦ୍ଧ ପର୍ବାଦି କିପରି ଆଡ଼ମ୍ବରସହକାରେ ପାଳିତ ହେଉଥିଲା, ଉକ୍ତ ବିବରଣରୁ ସ୍ପଷ୍ଟ ଜଣା ପଡ଼େ । କାନ୍ୟକୁବ୍ଜରୁ ରାଜା ଶୀଳାଦିତ୍ୟଙ୍କଠାରୁ ବିଦାୟ ଗ୍ରହଣ କରି ହୁଏନ୍-ସାଂ ଉତ୍ତରପଶ୍ଚିମାଭିମୁଖରେ ଜଳନ୍ଧର ରାଜା ଉଦ୍ଧିତଙ୍କ ସହିତ ପ୍ରସ୍ଥାନ କଲେ ଓ ତାହାଙ୍କ ରାଜଧାନୀରେ ଏକମାସ ଅତିବାହିତ କଲେ । ଏହି ଯାତ୍ରାରେ ସେ ବହୁସଂଖ୍ୟକ ମୂର୍ତ୍ତି ଓ ଧର୍ମଗ୍ରନ୍ଥ ସଂଗ୍ରହ କଲେ ଏବଂ

ହସ୍ତିପୃଷ୍ଠରେ ସେ ସମସ୍ତ ଘେନିଗଲେ । ତହିଁରୁ ୫୦ ଖଣ୍ଡ ଗ୍ରନ୍ଥ ସିନ୍ଧୁନଦ ପାରହେବା ସମୟରେ ଜଳସ୍ରୋତରେ ଭାସିଗଲା । ସେହି ସମୟରେ ହୁଏନ୍‌ସାଂ ଗଳିତତୁଷାରରେ ସ୍ଫୀତ ନଦୀ ଅତ୍ୟନ୍ତ ସାହସସହକାରେ ହସ୍ତିପୃଷ୍ଠରେ ପାରହୋଇଥିଲେ । ସିନ୍ଧୁନଦ ପାରହୋଇ କାଳେବ ବିନଷ୍ଟ ଗ୍ରନ୍ଥସମୂହର ପ୍ରତିଲିପି ସଂଗ୍ରହ ସକାଶେ ଉତଖଣ୍ଡରେ ପ୍ରାୟ ଦୁଇ ମାସ ଅବସ୍ଥାନ କଲେ । ତତ୍ପରେ ସେ ୬୪୪ ସାଲର ପ୍ରାରମ୍ଭରେ ଭାରତ-ବର୍ଷ ତ୍ୟାଗ କରି କପିଶା ନରପତିଙ୍କ ସମଭିବ୍ୟାହାରରେ ଲଂଘାନ ଯାତ୍ରା କଲେ ଓ ହିନ୍ଦୁକୁଶ ପର୍ବତାଭ୍ୟନ୍ତରସ୍ଥ ତୁଷାରାବୃତ ଦୁର୍ଗମ ଗିରିବର୍ତ୍ମ ସମୂହ ମଧ୍ୟରେ ଗମନ କରି କାବୁଲ ଓ ଗଜନୀ ଦେଇ ବର୍ଷାଋତୁର ଆରମ୍ଭରେ କପିଶାରେ ଉପନୀତ ହେଲେ । ଏହିଠାରେ ଏକ ଧର୍ମସଭାରେ ଯୋଗଦେବା ସକାଶେ ତାଙ୍କୁ ପନ୍ଦରଦିନ ଅବସ୍ଥାନ କରିବାକୁ ହୋଇ-ଥିଲା । ଏଠାରୁ ପ୍ରସ୍ଥାନ କରି ହୁଏନ୍-ସାଂ କେତେ ତୁଷାର ନଦୀ, ଉପତ୍ୟକା, ଗିରିବର୍ତ୍ମ ଅତିବାହନପୂର୍ବକ କାଶଗଡ଼, ୟାରଖଣ୍ଡ ଓ ଖୋଟାନ ପର୍ଯ୍ୟଟନ କରି ୬୪୫ ସାଲର ବସନ୍ତ ଋତୁରେ ଚୀନ ଦେଶସ୍ଥ ପଶ୍ଚିମ ସୀମାନ୍ତର ରାଜଧାନୀରେ ଉପନୀତ ହେଲେ ।

ସୁଦୀର୍ଘ ଚଉଦ ବର୍ଷକାଳ ଅବସ୍ଥାନ କରି ହୁଏନ୍‌ସାଂ ଯେଉଁ ଅଭିଜ୍ଞତା ଲାଭ କରିଥିଲେ, ତହିଁର ବୃତ୍ତାନ୍ତ ସେ ତାହାଙ୍କ ସି-ୟୁ-କି ନାମକ ଗ୍ରନ୍ଥରେ ଲିପିବଦ୍ଧ କରିଯାଇଅଛନ୍ତି । ତାଙ୍କ ପର୍ଯ୍ୟଟନ ପରି-ସମାପ୍ତିର ଊନବିଂଶ ବର୍ଷ ପରେ ଅର୍ଥାତ୍ ୬୬୪ ସାଲରେ ସେ ନିର୍ବାଣ ପ୍ରାପ୍ତ ହେଲେ ।

ହୁଏନ୍‌ସାଂ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲା ଉତ୍ତାରେ ବହୁସଂଖ୍ୟକ ଚୀନ ଅଧିବାସୀ ସନ୍ନ୍ୟାସୀ ହୋଇ ଭାରତବର୍ଷକୁ ଆଗମନ କଲେ ଓ ଭାରତର ବିଭିନ୍ନ ଧର୍ମପୀଠମାନ ଦର୍ଶନ କରି ପରିଶେଷରେ ପ୍ରାୟ ସମସ୍ତେ ନାଳନ୍ଦ ମଠରେ ପ୍ରବିଷ୍ଟ ହୋଇ ଧର୍ମଶିକ୍ଷା ଗ୍ରହଣ କରୁଥିଲେ ଓ ସେମାନଙ୍କ ମଧ୍ୟରୁ ଅନେକେ ଅନ୍ତିମକାଳ ପର୍ଯ୍ୟନ୍ତ ଜୀବନ ଯାପନ

କରୁଥିଲେ । ଧର୍ମଗ୍ରନ୍ଥସମୂହ ସଂସ୍କୃତ ଭାଷାରେ ରଚିତ ହୋଇଥିବାରୁ ପ୍ରଥମରେ ସମସ୍ତେ ଉକ୍ତ ଭାଷା ଶିକ୍ଷା କରୁଥିଲେ । ଅନେକ ଚୀନ ସନ୍ନ୍ୟାସୀ ସଂସ୍କୃତରେ ଏତେ ପ୍ରବୀଣ ହୋଇଥିଲେ ଯେ, ସେମାନେ କେତେକ ମୂଳଗ୍ରନ୍ଥର ଭାଷ୍ୟରଚନା କରି ସେ ସମସ୍ତ ସ୍ୱଦେଶକୁ ଘେନି ଯାଇଥିଲେ । ଭାରତବର୍ଷର ସଂସ୍କୃତି ପ୍ରତି ଆକୃଷ୍ଟ ହୋଇ ଅନେକେ ପ୍ରାଜ୍ଞବର୍ମ, ଚନ୍ଦ୍ରଦେବ, ଚିନ୍ତାଦେବ, ଚିତ୍ତବର୍ମା ପ୍ରଭୃତି ସଂସ୍କୃତ ନାମ ଗ୍ରହଣ କରିଥିଲେ । ଭାରତବର୍ଷର ସର୍ବତ୍ର ବୌଦ୍ଧ ମଠରେ ସୃଷ୍ଟି ହୋଇଥିଲା ଏବଂ ସେଠାରେ ପ୍ରବୀଣ ଧର୍ମାଧ୍ୟକ୍ଷଗଣଙ୍କ ପଦତଳରେ ସ୍ୱଦେଶୀୟ ଓ ବିଦେଶୀୟ ଶିଷ୍ୟଗଣ ଶିକ୍ଷାଗ୍ରହଣ କରୁଥିଲେ । କେତେକେ ସିଂହଳକୁ ଯାଇ ସେଠାରେ ରକ୍ଷିତ ବୁଦ୍ଧଙ୍କ ଦନ୍ତ ପୂଜା କରୁଥିଲେ । ପୁଣି କେତେକେ ବୋଧିଦ୍ରୁମତଳରେ ନିର୍ବାଣପ୍ରାପ୍ତି ଆଶାରେ ଗୟାସ୍ଥ ବୋଧି ମନ୍ଦିରକୁ ଆସୁଥିଲେ ।

ଏହି ସନ୍ନ୍ୟାସୀମାନଙ୍କ ମଧ୍ୟରୁ ୪୬ ଜଣଙ୍କ ନାମ ହୁଏନ୍‌ସାଂଙ୍କ ଶିଷ୍ୟ ଇ-ତ୍ସିଂ ଉଲ୍ଲେଖ କରିଯାଇଅଛନ୍ତି । ସେମାନଙ୍କ ମଧ୍ୟରୁ ନିମ୍ନରେ ବର୍ଣ୍ଣିତ ବ୍ୟକ୍ତିମାନଙ୍କ ନାମ ଉଲ୍ଲେଖଯୋଗ୍ୟ—

୧—ଶ୍ରମଣ ହୁଏନ୍-ତ୍ସୁ ଧର୍ମବୃକ୍ଷ । ସେ ଟା-ଙ୍ଗ୍ ପ୍ରଦେଶ ଅନ୍ତର୍ଗତ ସିନ୍-ଚୁଂର ଅଧିବାସୀ ଥିଲେ । ତାହାଙ୍କ ଭାରତୀୟ ନାମ 'ପ୍ରକାଶମତି' ଥିଲା । ଅଳ୍ପ ବୟସରେ ସେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ଏବଂ ଯୌବନ ଆଗମରେ ସେ ବୌଦ୍ଧଧର୍ମପ୍ରସିଦ୍ଧ ତୀର୍ଥସ୍ଥାନମାନ ପରିଦର୍ଶନ କରିବାକୁ ସଂକଳ୍ପ କଲେ । ସେଥିପାଇଁ ସେ ସଂସ୍କୃତ ଭାଷା ଶିକ୍ଷାରେ ମନୋନିବେଶ କଲେ । ତତ୍ପରେ ସେ ସନ୍ନ୍ୟାସ ଦଣ୍ଡ ଧାରଣପୂର୍ବକ କାନ୍-ଫୁ ଦେଶ ଅତିକ୍ରମ କରି ବାଲୁକାବହୁଳ ମରୁଭୂମିରେ ପ୍ରବିଷ୍ଟ ହେଲେ ଓ ସେଠାରୁ ତିବ୍ବତର ତୁଷାରବୃତ ଶୃଙ୍ଗ ଲୌହଦ୍ୱାର ଅତିକ୍ରମ କରି ଉତ୍ତରଭାଗରେ ଜଳନ୍ଧରରେ ଉପନୀତ ହେଲେ । ମାର୍ଗରେ ବହୁ-କଷ୍ଟରେ ଦସ୍ୟୁମାନଙ୍କ ହସ୍ତରୁ ତାହାଙ୍କ ପ୍ରାଣରକ୍ଷା ହୋଇଥିଲା । ଜଳନ୍ଧରରେ ଚାରିବର୍ଷ ରହି ସଂସ୍କୃତ ଭାଷାରେ ପାରଦର୍ଶିତା ଲାଭକରି

ଦକ୍ଷିଣାଞ୍ଚଳସ୍ଥ ମହାବୋଧି ମଠରେ ଉପନୀତ ହେଲେ । ସେଠାରେ ଦ୍ଵିବର୍ଷ ରହି ନାଳନ୍ଦ ମଠରେ ଛଅବର୍ଷ ଅତିବାହିତ କରିଥିଲେ । ମଗଧ-ନରପତି ସସମ୍ମାନରେ ତାହାଙ୍କୁ ବହୁ ଉପହାର ପ୍ରଦାନ କରି-ଥିଲେ । ଏହି ପ୍ରକାରେ ସେ ଷୋଡ଼ଶବର୍ଷ ଅତିବାହିତ କରି ଦଶ ସହସ୍ର 'ଲି' ପଥ ଗ୍ରହ ନେପାଳ ଓ ତିବ୍ବତ ପଥରେ ଲ-ୟାଂକୁ ପ୍ରତ୍ୟାବର୍ତ୍ତନ କଲେ ।

ଖ୍ରୀଷ୍ଟୀୟ ୬୪୪ ସାଲରେ ହୁଏନ୍-ତ୍ସ୍ୟୁ ପୁନର୍ବାର କାଶ୍ମୀରକୁ ଗମନ କଲେ ଏବଂ ଲୋକାନ୍ତ ନାମଧେୟ ଏକ ବୃଦ୍ଧ ବ୍ରାହ୍ମଣଙ୍କ ସହିତ ସ୍ଵଦେଶକୁ ପ୍ରତ୍ୟାବର୍ତ୍ତନ କଲେ । କିଛିକାଳ ପରେ ଦେଶବାସୀଙ୍କ ସନିର୍ବନ୍ଧ ଅନୁରୋଧରେ ପୁଣି ଭାରତବର୍ଷକୁ ଯାତ୍ରାକଲେ ଓ ବହୁ ଶିଳାସ୍ତୂପ ଓ ଅତ୍ୟୁଚ୍ଚ ପର୍ବତ ଅତିକ୍ରମ କରି ବନ୍ଧୁର ପ୍ରସ୍ତରମୟ ପଥରେ ତିବ୍ବତ ଦେଇ ଭାରତବର୍ଷର ସୀମାନ୍ତରେ ଉପନୀତ ହେଲେ । ପଥରେ ଦସ୍ୟୁମାନଙ୍କ ହସ୍ତରେ ତାଙ୍କର ପ୍ରାଣନାଶର ଆଶଙ୍କା ହୋଇଥିଲା । ଭାରତବର୍ଷରେ ଏକ ଚୈନିକ ଦୂତଙ୍କ ସହିତ ତାହାଙ୍କ ସାକ୍ଷାତ ହୋଇଥିଲା ଓ ତାଙ୍କ ସହିତ ସେ ମହାରାଷ୍ଟ୍ର ଦେଶରେ ଭ୍ରମଣ କରିଥିଲେ । ସେଠାରେ ସେ ୪ ବର୍ଷ କାଳ ଅତିବାହିତ କରି ନାଳନ୍ଦକୁ ଆଗମନ କଲେ ଓ ଏହିଠାରେ ପରିବ୍ରାଜକ ଇତ୍-ସିଂକୁ ଭେଟିଥିଲେ । ଜୀବନର ଉଦ୍ଦେଶ୍ୟ ସାଧନ କରି ସେ ସ୍ଵଦେଶକୁ ପ୍ରତ୍ୟାଗମନ କରିବା ସମୟରେ ଦେଖିଲେ ଯେ, ନେପାଳ, ତିବ୍ବତ ଓ କପିଶାର ସମସ୍ତ ପଥ ଆରବୀୟ-ମାନଙ୍କଦ୍ଵାରା ଅବରୁଦ୍ଧ ହୋଇଅଛି । ତେଣୁ ସେ ସେଠାରୁ ପ୍ରତ୍ୟାବୃତ୍ତ ହୋଇଗୃଧ୍ରକୂଟ ଓ ବଂଶୋଦ୍ୟାନକୁ ଆସିଲେ ଏବଂ ସେଠାରେ ଶାସ୍ତ୍ରାଲୋଚ-ନାରେ ମନୋନିବେଶ କଲେ ; କିନ୍ତୁ ସେଠାରେ ତାଙ୍କର ସଂଶୟ ମୋଚନ ନ ହେବାରୁ ମଧ୍ୟଭାରତସ୍ଥ ଅମାବତ ନାମକ ସ୍ଥାନକୁ ଯାଇ ଆଶ୍ରୟ ଗ୍ରହଣ କଲେ ଓ ଏଠାରେ ୬୨ ବର୍ଷ ବୟଃକ୍ରମ କାଳରେ ସେ ନିର୍ବାଣ ଲାଭକଲେ ।

୨ —ପାଞ୍ଚ-ହୁ:— ଲି-ସିଂ ନଗରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସଂସ୍କୃତ ନାମ ଶ୍ରୀଦେବ । ସେ ଉତ୍ତର ପଥରେ ତିବ୍ବତ ଦେଇ ଭାରତ-

ବର୍ଷକୁ ଆସିଥିଲେ ଏବଂ ମହା-ବୋଧି ଓ ଅନ୍ୟାନ୍ୟ ତୀର୍ଥମାନଙ୍କରେ ପୂଜା ପ୍ରଦାନ କରି ନାଳନ୍ଦମଠ ଓ କୁଶୀଖଣ୍ଡ୍ୟରେ କେତେକ ବର୍ଷ ଅବସ୍ଥାନ କରିଥିଲେ । ଅମ୍ରାବତର ରଜା ତାଙ୍କୁ ସମ୍ମାନିତ କରିଥିଲେ । ନାଳନ୍ଦ ମଠରେ ସେ ମହାଯାନ ଗ୍ରନ୍ଥମାନ ଏବଂ ଦାବବନ ମନ୍ଦିରରେ ବନଯୁପିଠକ ଏବଂ ଶବ୍ଦବିଦ୍ୟା ଅଧ୍ୟୟନ କରିଥିଲେ । ମହାବୋଧି ମନ୍ଦିରରେ ଅବସ୍ଥାନ କାଳରେ ସେ ଚୀନ ଦେଶର ନୂତନ ଓ ପୁରାତନ ତୀର୍ଥମାନଙ୍କର ପ୍ରତିକୃତି ଏକ ପ୍ରସ୍ତରରେ ଅଙ୍କନ କରିଥିଲେ । ନାଳନ୍ଦ ମଠରେ ଅବସ୍ଥାନ କାଳରେ ସେ ପ୍ରାୟ ଚତୁଃଶତ ଅଧ୍ୟାୟ ସୂତ୍ର ଓ ଶାସ୍ତ୍ର ଲେଖିଥିଲେ । ଅମ୍ରାବତରେ ସେ ବ୍ୟାଧିଗ୍ରସ୍ତ ହୋଇ ପଞ୍ଚଶବର୍ଷ ବୟସରେ ନିର୍ବାଣପ୍ରାପ୍ତ ହେଲେ ।

ଜ—ଶ୍ରାଂ-ଛ:—ସର୍ବଦା ଧ୍ୟାନମଗ୍ନାବସ୍ଥାରେ ରହୁଥିଲେ । ସେ ବୁଦ୍ଧଙ୍କ ଜନ୍ମସ୍ଥାନ ଭାରତବର୍ଷରେ ଜନ୍ମଲାଭ କାମନା କରି ଅଳ୍ପବୟସରେ ସନ୍ନ୍ୟାସଧର୍ମ ଗ୍ରହଣ କରିଥିଲେ । ସର୍ବଦା ବୁଦ୍ଧଙ୍କ ପବିତ୍ର ନାମ ତାହାଙ୍କ ମୁଖରେ ଉଚ୍ଚାରିତ ହେଉଥିଲା । ସେ ଦଶ ସହସ୍ର ଅଧ୍ୟାୟଯୁକ୍ତ 'ପ୍ରାଜ୍ଞିସୂତ୍ର' ନାମକ ଗ୍ରନ୍ଥ ଲେଖିଥିଲେ । ସେ ପବିତ୍ର ଶୁଚିମୟ ଜୀବନଯାପନ କରୁଥିଲେ ଓ ଚୀନ ଦେଶରେ ସର୍ବତ୍ର ଭ୍ରମଣ କରି ଲୋକଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିବା ଓ ଧର୍ମଗ୍ରନ୍ଥ ରଚନା କରିବାରେ ସମୟ ଅତିବାହିତ କରୁଥିଲେ । ସେ ସମୁଦ୍ର ପଥରେ କଳିଙ୍ଗକୁ ଆସିଥିଲେ ଓ ସେଠାରେ କେତେକ ବର୍ଷ ଅବସ୍ଥାନ କରି ମାଳୟକୁ ଗମନ କରିଥିଲେ । ପୁଣି ମଧ୍ୟ-ଭାରତକୁ ଯିବା ଇଚ୍ଛା କରି ଗୋଟିଏ ବାଣିଜ୍ୟପୋତ ଆରୋହଣ କଲେ । ପୋତ ଝଟିକାକ୍ରାନ୍ତ ହୋଇ ଜଳମଗ୍ନ ହେବାକୁ ଲାଗିଲା । ନାବିକ ଓ ଆରୋହୀଗଣ ଜଳରେ ପତିତ ହୋଇ ନିକଟସ୍ଥ ଏକ କ୍ଷୁଦ୍ର ନୌକା ଗ୍ରହଣ କରିବା ସକାଶେ ଚେଷ୍ଟା କରି ତଦଭିମୁଖରେ ସନ୍ତରଣ କରିବାକୁ ଲାଗିଲେ । ପୋତାଧ୍ୟକ୍ଷ ବୌଦ୍ଧ ଧର୍ମାବଲମ୍ବୀ ଥିଲେ । ସେ ସନ୍ନ୍ୟାସୀଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ତାଙ୍କୁ ନୌକା ଆଡ଼କୁ ଆସିବା ସକାଶେ ଉଚ୍ଚସ୍ୱରରେ ଡାକଲେ । ସନ୍ନ୍ୟାସୀ ଉତ୍ତର କଲେ, "ମୁଁ ଯିବି ନାହିଁ ,

ଅନ୍ୟ ଲୋକଙ୍କୁ ବଞ୍ଚାଅ ।" ବଦ୍ଧକରପୃଷ୍ଠରେ ସେ ଆକାଶକୁ ନିରୀକ୍ଷଣ କରି ଧ୍ୟାନମଗ୍ନ ହୃଦୟରେ ଭ୍ରମମାନ ହେବାକୁ ଲାଗିଲେ ଓ କସ୍ଥିତକାଳ ପରେ ଅମିତ ବୁଦ୍ଧଙ୍କ ନାମ ଉଚ୍ଚାରଣ କରି କରି ଜଳରେ ନିମଗ୍ନ ହେଲେ । ତାହାଙ୍କର ଜଣେ ସହଯାତ୍ରୀ ଶିଷ୍ୟ ମଧ୍ୟ ତାହାଙ୍କ ସହିତ ଅନନ୍ତ ମାର୍ଗରେ ମହାପ୍ରସ୍ଥାଣ କଲେ ।

୪—ସଂଘବର୍ମ୍ମ, ସମରଖଣ୍ଡ ଅଧିବାସୀ । ଅଳ୍ପ ବୟସରେ ସେ ପିତାମାତାଙ୍କ ସହିତ ଚୀନ ଦେଶକୁ ଯାଇଥିଲେ । ସେ ସେଠାରୁ ବୋଧି ମନ୍ଦିରକୁ ଆସି ବଜ୍ରାସନ ସମ୍ମୁଖରେ ସାତଦିନ ପର୍ଯ୍ୟନ୍ତ ଅହୋରାତ୍ର ଦୀପ ଜାଳି ପୂଜା କଲେ ଓ ବୋଧିଦ୍ରୁମ ମୂଳରେ ଏକ ମୂର୍ତ୍ତି ସ୍ଥାପନ କଲେ । କେତେକ ବର୍ଷ ଉତ୍ତାରେ ସେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ତତ୍ପରେ ସେ କୋଚିନ୍-ଚୀନ୍ ଦେଶକୁ ପ୍ରେରିତ ହେଲେ । ସେହି ସମୟରେ ଉକ୍ତ ଦେଶ ଭୀଷଣ ଦୁର୍ଭିକ୍ଷରେ ପ୍ରପୀଡ଼ିତ ହୋଇଥିଲା । ସଂଘବର୍ମ୍ମ ପ୍ରତ୍ୟହ କ୍ଷୁଧାର୍ତ୍ତ ଲୋକଙ୍କୁ ଆହାର ପ୍ରଦାନ କରୁଥିଲେ । ଦରିଦ୍ର ଓ ଅନାଥଙ୍କ ଦୁର୍ଦ୍ଦଶା ଦର୍ଶନରେ ତାଙ୍କ ହୃଦୟ ବଗଳିତ ଓ ଚକ୍ଷୁରୁ ଅବିଶ୍ରାନ୍ତ ଅଶ୍ରୁଧାରା ନିର୍ଗତ ହେଉଥିଲା । ତେଣୁ ତାଙ୍କୁ ସମସ୍ତେ 'କନ୍ଦନନିରତ ବୋଧିସତ୍ତ୍ୱ' ନାମ ପ୍ରଦାନ କରିଥିଲେ । ସେ ସେଠାରେ ୬୦ ବର୍ଷ ବୟସରେ ନିର୍ବାଣ ପ୍ରାପ୍ତ ହେଲେ ।

୫—ହ୍ୟୁ-ଲୁନ୍, କୋରିଆ ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ଭାରତୀୟ ନାମ ପ୍ରାଜ୍ଞବର୍ମ୍ମ । ସେ ସମୁଦ୍ର ପଥରେ ତାହାଙ୍କ ଜନ୍ମସ୍ଥାନରୁ ଚୀନ୍‌କୁ ଆସିଥିଲେ ଏବଂ ହୁଏନ୍-ସାଂଙ୍କ ପରି ପଶ୍ଚିମ ପଥରେ ଭାରତବର୍ଷରେ ପ୍ରବିଷ୍ଟ ହୋଇଥିଲେ । ସେ ଅମ୍ରାବତରେ ଓ ଗଙ୍ଗାନଦୀର ଉତ୍ତରବର୍ତ୍ତୀ ଏକ ମନ୍ଦିରରେ ଦଶବର୍ଷକାଳ ଅତିବାହିତ କରିଥିଲେ । ତତ୍ପରେ ସେ ଭାରତବର୍ଷର ପୂର୍ବ ସୀମାନ୍ତ ଦେଇ ଉତ୍ତରାଞ୍ଚଳକୁ ଯାଇ ତୁଖାର ଅଧିବାସୀମାନଙ୍କଦ୍ୱାରା ପ୍ରତିଷ୍ଠିତ ଗାନ୍ଧାରସଣ୍ଡ ମନ୍ଦିରକୁ ଆସିଲେ । ଏଠାରେ କିଛିକାଳ ଅବସ୍ଥାନ କରି ଏହାର ପଶ୍ଚିମରେ ଅବସ୍ଥିତ କପିଶାର ଗୁଣଚରିତ ମନ୍ଦିରକୁ ଗମନ କଲେ । ଏହିଠାରୁ ପୂର୍ବଦିଗରେ

କୁରୁକ ନାମକ ଏକ ମନ୍ଦିର ଥିଲା । ଏହା କୌରବ ବଂଶୀୟ କୌଣସି ନରପତିଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହାର ସନ୍ନିକଟସ୍ଥ ଆଦିତ୍ୟସେନ ରାଜାଙ୍କ ନିର୍ମିତ ମନ୍ଦିରରେ ହ୍ୟୁ-ଲୁନ୍ କେତେକ ଦିବସ ଅବସ୍ଥାନ କରି ମନ୍ଦିରର ଭଗ୍ନାବଶେଷ ଦେଖିଲେ । ପ୍ରବାଦ ଅଛି ଯେ, ମହାରାଜା ଶ୍ରୀଗୁପ୍ତ ଏ ମନ୍ଦିରଟି ଚୀନଦେଶାଗତ ସନ୍ନ୍ୟାସୀମାନଙ୍କ ସକାଶେ ନିର୍ମାଣ କରିଥିଲେ । ହ୍ୟୁ-ଲୁନ୍ ଭାରତବର୍ଷକୁ ଆସିବାର ପ୍ରାୟ ପାଞ୍ଚଶତ ବର୍ଷ ପୂର୍ବେ ପ୍ରାୟ କୋଡ଼ିଏ ଜଣ ଚୀନ ଦେଶୀୟ ସନ୍ନ୍ୟାସୀ ମହାବୋଧି ମନ୍ଦିର ପରିଦର୍ଶନ ସକାଶେ ଭାରତବର୍ଷକୁ ଆସିଥିଲେ । ମହାରାଜା ଶ୍ରୀଗୁପ୍ତ ସନ୍ନ୍ୟାସୀମାନଙ୍କର ଧର୍ମପ୍ରାଣତାରେ ମୁଗ୍ଧ ହୋଇ ସେମାନଙ୍କ ସକାଶେ ଉକ୍ତ ମନ୍ଦିର ନିର୍ମାଣ କଲେ ଏବଂ ସେମାନଙ୍କୁ କୋଡ଼ିଏ ଖଣ୍ଡ ଗ୍ରାମ ଦାନକଲେ । ଗୟାର ବଜ୍ରାସନ ସମୀପସ୍ଥ ମହାବୋଧି ମନ୍ଦିର ସିଂହଳ ନରପତିଙ୍କ-ଦ୍ୱାରା ଚୀନ ଦେଶାଗତ ସନ୍ନ୍ୟାସୀମାନଙ୍କ ସକାଶେ ନିର୍ମିତ ହୋଇଥିଲା । ମହାବୋଧି ମନ୍ଦିରର ଉତ୍ତର ପୂର୍ବରେ ନାଳନ୍ଦ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ରାଜସ୍ୱଛ ନାମଧେୟ ଭାରତବର୍ଷର ଉତ୍ତରାଞ୍ଚଳରୁ ଆଗତ ଏକ ଭିକ୍ଷୁଙ୍କ ସକାଶେ ରାଜା ଶକାଦିତ୍ୟଙ୍କଦ୍ୱାରା ନିର୍ମିତ ହୋଇଥିଲା । ପ୍ରଥମରେ ତାଙ୍କୁ ଏହି ମନ୍ଦିର ନିର୍ମାଣରେ ବହୁବିଘ୍ନ ଅତିକ୍ରମ କରିବାକୁ ପଡ଼ିଲା; ମାତ୍ର ତାଙ୍କର ଉତ୍ତରାଧିକାରୀମାନେ ଏହାକୁ ସମ୍ପନ୍ନ କରି ଜମ୍ବୁ-ଦ୍ୱୀପରେ ସର୍ବଶ୍ରେଷ୍ଠ ଅନୁଷ୍ଠାନରେ ପରିଣତ କଲେ । ନାଳନ୍ଦ ମଠ ଅଯୁତାଧାର କ୍ଷେତ୍ର ମଧ୍ୟରେ ଏକ ନଗରର ସୀମାତୁଲ୍ୟ ଅବସ୍ଥିତ ଥିଲା ଏବଂ ଉପର୍ଯ୍ୟୁପରି ଚିହ୍ନିତ ପ୍ରାନ୍ତଭାଗବିଶିଷ୍ଟ ତୋରଣଦ୍ୱାରସମୂହ ଦଗ୍ଧ ମୃତ୍ତଫଳକ (ଖପରା) ଦ୍ୱାରା ଅଚ୍ଛାଦିତ ହୋଇଥିଲା । ମଠ ତ୍ରିତଳ-ବିଶିଷ୍ଟ ଓ ଚତୁର୍ବିଂଶ ହସ୍ତ ଉଚ୍ଚ ଥିଲା । ମଠସ୍ଥ ପଶ୍ଚିମ ଦିଗର ପଶ୍ଚିମଦ୍ୱାର ବହିର୍ଦ୍ଦେଶରେ ମଣିମୁକ୍ତାବମଣ୍ଡିତ ଏକ ପ୍ରକାଣ୍ଡ ସ୍ତୂପ ଓ ଅନେକ ଚୈତ୍ୟ ଥିଲା । ମଠାଧିପ ବୃଦ୍ଧ, ତାହାଙ୍କ ତଳେ କର୍ମଦାନ (ଭଣ୍ଡାରପାଳ); ସେ ସର୍ବାପେକ୍ଷା ସମ୍ମାନାର୍ହ । ସମ୍ରାଟଙ୍କ ଆଦେଶରେ ଏହି ମଠରେ ସମୟ ନିର୍ଦ୍ଦେଶାର୍ଥେ ଏକ ଜଳଘଟିକା ଥିଲା । ରାତିକୁ ତିନ ଭାଗରେ ବିଭକ୍ତ କରି, ପ୍ରଥମ ଓ ତୃତୀୟଭାଗ ଉପାସନାରେ ଅତିବାହିତ ହେଉଥିଲା ଏବଂ

ମଧ୍ୟଯୁଗରେ ସନ୍ନ୍ୟାସୀମାନେ ଇଚ୍ଛାକ୍ରମେ କେହି ବା ନିଦ୍ରାରେ, କେହି ବା ଅନିଦ୍ରାରେ ଅତିବାହିତ କରୁଥିଲେ । ନଳ ନାମଧେୟ ନାଗଙ୍କ ନାମାନୁସାରେ ଏହି ମଠ ଶ୍ରୀ ନାଳନ୍ଦବିହାର ନାମରେ ଅଭିହିତ ହୋଇଥିଲା ।

ବିହାରର ପ୍ରଧାନଦ୍ୱାର ପଶ୍ଚିମ ପାର୍ଶ୍ୱରେ ଥିଲା । ଦ୍ୱାରରୁ ବଂଶପାଦ ଦୂରରେ ଷଷ୍ଠିହସ୍ତ ଉଚ୍ଚ ଏକ ସ୍ତୂପ ଥିଲା । ଏହି ସ୍ଥାନ ମୂଳଗନ୍ଧକୋଷ୍ଠି ନାମରେ ପ୍ରସିଦ୍ଧ ଥିଲା ଓ ଏହି ସ୍ଥାନରେ ଭଗବାନ ଲୋକନାଥଙ୍କ ମୂର୍ତ୍ତି ଥିଲା । କଥିତ ଅଛି ଯେ, ଏହାଙ୍କ ପ୍ରଭାବରେ ବର୍ଷା ଋତୁ ତିନିମାସ କାଳ ବ୍ୟାପ୍ତ ହୋଇଥିଲା । ଏହାର ଉତ୍ତରକୁ ପଞ୍ଚାଶ ପାଦ ଦୂରରେ ଅନ୍ୟ ଏକ ଉଚ୍ଚତର ସ୍ତୂପ ଥିଲା । ସ୍ଥାନାସ୍ପଦ ରାଜା ବାଲାଦିତ୍ୟ ଏହାକୁ ନିର୍ମାଣ କରାଇଥିଲେ । ତନ୍ମଧ୍ୟରେ ଧର୍ମଚକ୍ରାବର୍ତ୍ତିନକାରୀ ଭଗବାନ ବୁଦ୍ଧଙ୍କ ଏକ ମୂର୍ତ୍ତି ପ୍ରତିଷ୍ଠିତ ଥିଲା । ଦକ୍ଷିଣପଶ୍ଚିମ ପାର୍ଶ୍ୱରେ ସପ୍ତହସ୍ତ ଉଚ୍ଚ ଏକ କ୍ଷୁଦ୍ର ଚୈତ୍ୟ ଥିଲା । ମୂଳଗନ୍ଧ ବିହାରର ପଶ୍ଚିମ ପାର୍ଶ୍ୱରେ ବୁଦ୍ଧଙ୍କ ଦନ୍ତସମ୍ମାର୍ଜ୍ଜନୀ ବୃକ୍ଷ ଅବସ୍ଥିତ ଥିଲା । ଏକ ଉଚ୍ଚ ସ୍ଥାନରେ ବୁଦ୍ଧଙ୍କ ପ୍ରସ୍ତର-ନିର୍ମ୍ମିତ ପାଦଚାରଣ ସ୍ଥାନ ଥିଲା । ଏହାର ଦୈର୍ଘ୍ୟ ଚଉଦ-ପନ୍ଦର ହାତ, ପ୍ରସ୍ଥ ଦୁଇହାତ ଏବଂ ଉଚ୍ଚତା ଦୁଇହାତ । ଏହି ପ୍ରସ୍ତର ଉପରେ ବୁଦ୍ଧଙ୍କ ପଦଚିହ୍ନ ନିର୍ଦ୍ଦେଶକ ଚଉଦ-ପନ୍ଦର ଗୋଟି ପଦ୍ମପୁଷ୍ପ ଅଙ୍କିତ ହୋଇଥିଲା ।

ଏହି ବିହାରର ଛଅକୋଶ ଲି ଦକ୍ଷିଣରେ ରାଜଗୃହ ଅବସ୍ଥିତ ଥିଲା । ଗୃଧ୍ରକୂଟ ପର୍ବତ ଓ ବଂଶୋଦ୍ୟାନ ଏହାର ସନ୍ନିକଟବର୍ତ୍ତୀ । ଏହିଠାରୁ ଦକ୍ଷିଣ-ପଶ୍ଚିମକୁ ସାତ ଯୋଜନ ଦୂରରେ ମହାବୋଧି ମନ୍ଦିର, ଉତ୍ତରକୁ ୨୫ ଯୋଜନ ଦୂରରେ ବୈଶାଳୀ, ପଶ୍ଚିମକୁ ୨୦ ଯୋଜନରେ ମୃଗଦାବ, ପୂର୍ବକୁ ୬୦ ବା ୭୦ ଯୋଜନ ଦୂରରେ ସମୁଦ୍ରକୂଳବର୍ତ୍ତୀ ତାମ୍ରଲିପ୍ତି, ଚୀନ ଦେଶ ଯାତ୍ରୀଗଣ ଏହି ସ୍ଥାନରୁ ଜଳପଥରେ ଯାତ୍ରା କରୁଥିଲେ । ନାଳନ୍ଦା ମଠରେ ୩୫୦୦ ସନ୍ନ୍ୟାସୀ ବାସ କରୁଥିଲେ ଏବଂ ମଠର ବ୍ୟୟ ନିର୍ବାହାର୍ଥେ ରାଜାମାନେ ପରମ୍ପରାକ୍ରମେ ଭୂମିଦାନ କରିଥିଲେ ।

୬ । ଉ-ହୁଂ:—ତାହାଙ୍କ ସଂସ୍କୃତନାମ ପ୍ରାଜ୍ଞଦେବ । ସ୍ୱଦେଶ ତ୍ୟାଗ କରି ପ୍ରଥମରେ ସେ ଶ୍ରୀଭୋଜ (ସୁମାତ୍ରା) ରେ ଉପନୀତ ହେଲେ । ସେଠାରୁ ଏକ ରାଜପୋତରେ ମାଳୟ ଦେଶକୁ ଯାତ୍ରା କଲେ ଓ ପନ୍ଦର ଦିନ ଉତ୍ତାରେ ସେଠାରୁ ଯାତ୍ରା କରି କ୍ଲେଦା ଦେଶରେ ଶୀତକାଳ ଅତିବାହିତ କଲେ । ତତ୍ପରେ ଏକମାସ ଉତ୍ତାରେ ନାଗବଦନ ଯାଇ (ନାଗାପଟ୍ଟମ୍) ସେଠାରୁ ସିଂହଳକୁ ପ୍ରସ୍ଥାନ କଲେ ଓ ସେଠାରେ ଭଗବାନ ବୁଦ୍ଧଙ୍କ ଦନ୍ତସମ୍ମୁଖରେ ଉପାସନା କରି, ଓଡ଼ିଶା ଦେଇ ବୋଧିମନ୍ଦିରକୁ ଗମନ କଲେ । ସେଠାରେ ଅଳ୍ପଦିନ ଅବସ୍ଥାନ କରି ନାଳନ୍ଦ ମଠକୁ ଗଲେ ଓ ଯୋଗ, କୋଷ ପ୍ରଭୃତି ଶାସ୍ତ୍ର ଅଧ୍ୟୟନ କଲେ । ନାଳନ୍ଦରେ ଅବସ୍ଥାନ କାଳରେ ବିନୟ ଶାସ୍ତ୍ର ପ୍ରାପ୍ତି ଆଶାରେ ସେ ତିଳଡକ ମନ୍ଦିରକୁ ଯାଇଥିଲେ । ନାଳନ୍ଦ ମଠରେ ତାହାଙ୍କ ମହାସମାଧି ହୋଇଥିଲା ।

୭ । ହୁଏନ୍-ତା:—କ୍ୟାଂ-ଚିଂ ପ୍ରଦେଶର ଏକ କୁଳୀନ ବଂଶରେ ଜନ୍ମଗ୍ରହଣ କରିଥିଲେ । ସେ ଏକ ରାଜଦୂତଙ୍କ ସହିତ ଏକ ପାରସ୍ୟ ପୋତରେ ଦକ୍ଷିଣ ସମୁଦ୍ରପଥରେ ଯାତ୍ରା କରିଥିଲେ । ଶ୍ରୀଭୋଜରେ ଉପନୀତ ହୋଇ ଛଅମାସ କାଳ ଶବ୍ଦବିଦ୍ୟା ଅଧ୍ୟୟନରେ ସେଠାରେ ଅତିବାହିତ କରିଥିଲେ । ସେହି ସମୟରେ ଶ୍ରୀଭୋଜ ନରପତି ମଳୟ ନରପତିଙ୍କ ନିକଟକୁ ଉପଢୌକନ ସହ ଏକ ଦୂତ ପ୍ରେରଣ କଲେ । ଉକ୍ତ ଦୂତ ସହ ହୁଏନ୍-ତା ସେଠାରୁ ଯାଇ ଦୁଇମାସକାଳ ଅବସ୍ଥାନ କଲେ ଓ ସେଠାରୁ ପୂର୍ବଭାରତ ଅଭିମୁଖେ ଯାତ୍ରା କରି ଉତ୍ତର ଦିଗକୁ ଯାଇ ଦଶଦିନ ଉତ୍ତାରେ ଏକ ଉଲଗ୍ନ ଲୋକଙ୍କ ଦେଶକୁ ଆସିଲେ । ଏହି ଦେଶର ସମୁଦ୍ର ଉପକୂଳ ଅନେକ ଦୂର ପର୍ଯ୍ୟନ୍ତ କେବଳ ନାରିକେଳ ବନ ଓ ତାମ୍ବୁଳବଲ୍ଲୀଦ୍ୱାରା ପରିଶୋଭିତ । ସେହି ସ୍ଥାନର ଅଧିବାସୀମାନେ ବାଣିଜ୍ୟପୋତ ଦର୍ଶନମାତ୍ରେ କ୍ଷୁଦ୍ର କ୍ଷୁଦ୍ର ନୌକାମାନଙ୍କରେ ପୋତ ସମୀପକୁ ଦ୍ରବ୍ୟ ବିନିମୟ ସକାଶେ ଆଗମନ କଲେ । ସେମାନଙ୍କର ଶତାଧିକ ନୌକା, ନାରିକେଳ ଓ କଦଳୀ ଫଳରେ ଏବଂ ବେତସ-ନିର୍ମିତ ବିବିଧ ଉପକରଣରେ ପୂର୍ଣ୍ଣ ହୋଇଥିଲା । ଏ ସମସ୍ତ ଦ୍ରବ୍ୟ

ବାଣିଜ୍ୟସୂତ୍ରରେ ସେମାନେ ପୋତରୁ ନିଜର ଅଭିପ୍ରେତ ଦ୍ରବ୍ୟ, ବିଶେଷତଃ କ୍ଷୁଦ୍ର ଲୌହଖଣ୍ଡମାନ ନେଇଯାଉଥିଲେ । ଏହି ସ୍ଥାନର ପୁରୁଷମାନେ ସମ୍ପୂର୍ଣ୍ଣ ଉଲଗ୍ନ ଓ ନାରୀମାନେ ପତ୍ରରଚିତ ମେଖଳାରେ ଲଜ୍ଜାବୃତ ଅବୃତ କରୁଥିଲେ । ନାବିକମାନେ ସେମାନଙ୍କୁ ବସ୍ତ୍ର ଯାଚିଲେ; କିନ୍ତୁ ସେମାନେ ତାହା ଗ୍ରହଣ କଲେ ନାହିଁ । ଏହି ସ୍ଥାନରେ ଲୌହ, ରୌପ୍ୟ ଓ ସୁବର୍ଣ୍ଣ ପ୍ରଭୃତି ଧାତୁ ଉତ୍ପନ୍ନ ହେଉ ନ ଥିଲା । ଲୋକେ ଧାନ୍ୟାଦିର ବ୍ୟବହାର ଜାଣି ନ ଥିଲେ ଏବଂ ନାରିକେଳାଦି ଫଳମୂଳ ଭକ୍ଷଣ କରି ଜୀବନ ଧାରଣ କରୁଥିଲେ । ଲୋକମାନେ ଈଷତ୍ କୃଷ୍ଣକାୟ ଓ ଖର୍ବାକାର ଥିଲେ ଏବଂ ବିଷଦଗ୍ଧ ଶର ବ୍ୟବହାର କରୁଥିଲେ । ଏଠାରୁ ଉତ୍ତର-ପଶ୍ଚିମ ଦିଗରେ ପଞ୍ଚଦଶ ଦିବସର ପଥ ଅତିକ୍ରମ କଲା ଉତ୍ତାରେ ହୁଏନ୍-ଚୀ ତାମ୍ରଲିପ୍ତିରେ ଉପନୀତ ହେଲେ । ଏଠାରେ ସେ ମହା-ଯାନ ଦୀପ ନାମକ ସନ୍ନ୍ୟାସୀଙ୍କୁ ଭେଟିଲେ ଓ ସଂସ୍କୃତ ଶିକ୍ଷା ଏବଂ ଶବ୍ଦ ଶାସ୍ତ୍ର ଅଧ୍ୟୟନରେ ଏକବର୍ଷ କାଳ ଅତିବାହିତ କରିଥିଲେ । ସେଠାରୁ ଏକଶତ ବଣିକଙ୍କ ସଙ୍ଗରେ ମଧ୍ୟ-ଭାରତକୁ ଗମନ କଲେ । ଦଶଦିନ ଉତ୍ତାରେ ତାହାଙ୍କ ସହଯାତ୍ରିଗଣ ତାଙ୍କୁ ଏକ ଦୁର୍ଗମ ଗିରିସଙ୍କଟରେ ତ୍ୟାଗ କରି ଗଲେ । ସେଠାରେ ଦସ୍ୟୁମାନେ ତାହାଙ୍କ ସର୍ବସ୍ୱ ଅପହରଣ କରି ଅର୍ଦ୍ଧମୃତାବସ୍ଥାରେ ତାହାଙ୍କୁ ଛାଡିଦେଲେ । ସୂର୍ଯ୍ୟୋଦୟ ସମୟରେ ନିକଟସ୍ଥ ଗ୍ରାମବାସୀମାନେ ତାହାଙ୍କୁ ଦେଖି ତାହାଙ୍କ ଶୁଶ୍ରୂଷା କରିଥିଲେ । ତପରେ ସେ ନାନା ବିପଦ ଅତିକ୍ରମ କରି ନାଳନ୍ଦରେ ପ୍ରବେଶ କଲେ । ନାଳନ୍ଦରେ ସେ ଦଶବର୍ଷ କାଳ ଅଧ୍ୟୟନ କଲେ ଓ ଏହି ସମୟ ମଧ୍ୟରେ ପୂର୍ଣ୍ଣ ଏକ ସହସ୍ର ଖଣ୍ଡ ଗ୍ରନ୍ଥ ରଚନା ଓ ଅନୁବାଦ କରିଥିଲେ । ସେସମସ୍ତ ସେ ପାଞ୍ଚଲକ୍ଷ ଶ୍ଳୋକରଚନା ନେଇ ସେ ତାମ୍ରଲିପ୍ତି ଦେଇ ସମୁଦ୍ର ପଥରେ ଶ୍ରୀକ୍ଷେତ୍ରକୁ ପ୍ରତ୍ୟାବୃତ୍ତ ହେଲେ ଏବଂ ସେହି ସ୍ଥାନରେ ଜୀବନର ଅବଶିଷ୍ଟ ସମୟ ଅତିବାହିତ କଲେ ।

୮— ଇ-ସିଂ—ହୁଏନ୍‌ସାଂଙ୍କ ଉତ୍ତାରେ ଯେଉଁ ଯେଉଁ ଚୈନିକ ପରିବ୍ରାଜକମାନେ ବୌଦ୍ଧତୀର୍ଥସ୍ଥାନମାନ ପରିଦର୍ଶନ କରିବା ଉଦ୍ଦେ-

ଷ୍ୟରେ ଭାରତବର୍ଷକୁ ଆସିଥିଲେ, ସେମାନଙ୍କ ମଧ୍ୟରେ ଇ-ସ୍ତିଂ ସର୍ବ-ପ୍ରଧାନ । ସେ ସମସ୍ତ ପରିବ୍ରାଜକଙ୍କ ବିଷୟ ଲିପିବଦ୍ଧ କରିଯାଇଅଛନ୍ତି । ଏହିଠାରେ ପୁନର୍ବାର ସ୍ମରଣ କରିବାକୁ ହେବ ଯେ, ହୁଏନ୍-ସାଂ ୬୪୫ ସାଲରେ ଚୀନ ଦେଶକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ୬୬୪ ସାଲରେ ନିର୍ବାଣପ୍ରାପ୍ତ ହେଲେ । ଏହି ଘଟନାର ଅଳ୍ପଦିନ ଉତ୍ତାରେ ଅର୍ଥାତ୍ ୬୭୧ ବା ୬୭୨ ସାଲରେ ଇ-ସ୍ତିଂ ଅଳ୍ପ ବୟସରେ ୩୭ ଜଣ ସନ୍ନ୍ୟାସୀଙ୍କ ସହିତ ପଶ୍ଚିମ ଭୂଖଣ୍ଡସ୍ଥ ପୁଣ୍ୟତୀର୍ଥମାନ ପରିଦର୍ଶନ ନିମିତ୍ତ ସଂକଳ୍ପ କଲେ ଓ କେଣ୍ଟନ ବନ୍ଦରରେ ପୋତାରୋହଣ କରି ଭାରତବର୍ଷ ଅଭିମୁଖରେ ଯାତ୍ରାକଲେ । ମାର୍ଗରେ ତାହାଙ୍କ ସହଯାତ୍ରୀମାନେ ତାଙ୍କୁ ପରିତ୍ୟାଗ କଲେ; କିନ୍ତୁ ସେ ହତୋତ୍ସାହ ନ ହୋଇ ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ଏହି ପଥରେ ସେ ଶ୍ରୀଭୋଜ ଅତିକ୍ରମ କରି ନାଗା-ପଟ୍ଟମ ଓ ସିଂହଳ ଦେଇ ତାମ୍ରଲିପ୍ତିରେ ଉପନୀତ ହେଲେ । ତାମ୍ରଲିପ୍ତିରେ ବରାହଦେବଙ୍କ ପ୍ରସିଦ୍ଧ ମନ୍ଦିର ଥିଲା ଏବଂ ସେଠାରେ ସନ୍ନ୍ୟାସୀମାନେ ସଂସ୍କୃତ ଶିକ୍ଷା କରୁଥିଲେ । ଇ-ସ୍ତିଂ ଏହି ମନ୍ଦିରରେ ସଂସ୍କୃତ ଭାଷା ଶିକ୍ଷା କରି ଚିକିତ୍ସାଶାସ୍ତ୍ର ଅଧ୍ୟୟନ କଲେ ଏବଂ ନାଗାର୍ଜୁନଙ୍କ ପ୍ରଣୀତ ଓ ତାହାଙ୍କ ପୃଷ୍ଠପୋଷକ ରାଜା ସଦ୍‌ବାହନଙ୍କ ନିକଟକୁ ପ୍ରେରିତ 'ମିତ୍ରପତ୍ର' ସ୍ୱ-ଭାଷାରେ ଅନୁବାଦ କରିଥିଲେ । ସେ ତିରିଶ ଗୋଟି ରାଜ୍ୟ ପର୍ଯ୍ୟଟନ କରି ଶ୍ରୀଭୋଜକୁ ପ୍ରତ୍ୟାବର୍ତ୍ତନ କଲେ । ଏହିଠାରେ ସେ ଚୀନଦେଶଗାମୀ ଏକ ପୋତରେ ଆରୋହଣ କରି ସ୍ୱଗୃହାଭିମୁଖରେ ଯାତ୍ରାକଲେ; କିନ୍ତୁ ପୋତ ପଥଭ୍ରଷ୍ଟ ହୋଇ ପୁଣି ଶ୍ରୀଭୋଜକୁ ଫେରିଆସିଲା । ଏହିଠାରୁ ସେ "ଦକ୍ଷିଣ ସମୁଦ୍ର ଧର୍ମପ୍ରକ୍ରିୟା" ନାମକ ଚାରି ଅଧ୍ୟାୟରେ ରଚିତ ଗ୍ରନ୍ଥ ସ୍ୱଦେଶକୁ ପ୍ରେରଣ କଲେ । ଶ୍ରୀଭୋଜରେ ଆଉ କେତେକ ଦିବସ ଅବସ୍ଥାନ କରି ୬୯୩—୬୯୪ ସାଲରେ ହୋନାନ୍ ପ୍ରଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ସେ ୪୦୦ଖଣ୍ଡ ମୂଳସୂତ୍ର ଗ୍ରନ୍ଥ ଓ ବିନୟ ଅଭିଧର୍ମଶାସ୍ତ୍ର ଗ୍ରନ୍ଥ ସଙ୍ଗରେ ନେଇଥିଲେ । ୭୦୦ରୁ ୭୦୩ସାଲ ମଧ୍ୟରେ ୨୦ ଖଣ୍ଡ,୭୦୫ ସାଲରେ ଆଉ ୪ଖଣ୍ଡ ଓ ୭୦୦ରୁ ୭୧୨ ସାଲ ମଧ୍ୟରେ ସର୍ବସୁଦ୍ଧା ୨୫୦ ଅଧ୍ୟାୟବିଶିଷ୍ଟ ୫୬ ଖଣ୍ଡ ଭିନ୍ନ ଭିନ୍ନ ବିଷୟକ ଗ୍ରନ୍ଥ ଅନୁବାଦ କରିଥିଲେ । ଏଥିମଧ୍ୟରୁ ସେ କାଉ-

ଫା-ଚାଓ-ସ୍ୱାଂ-ଚ୍ୟୁନ୍ ନାମକ ଗ୍ରନ୍ଥରେ ସପ୍ତମ ଶତାବ୍ଦୀରେ ୫୭ ଜଣ ଚୀନଦେଶୀୟ ସନ୍ନ୍ୟାସୀଙ୍କର ଭାରତ-ଭ୍ରମଣ-ବୃତ୍ତାନ୍ତ ଲିପିବଦ୍ଧ ହୋଇଥିଲେ। ଏହି ସନ୍ନ୍ୟାସୀମାନଙ୍କ ମଧ୍ୟରୁ କେତେ ଜଣ ଦକ୍ଷିଣ ସମୁଦ୍ର ପଥରେ, ଆଉ କେତେକେ ମରୁଭୂମି ଓ ଉତ୍ତର ଭାରତସ୍ଥ ଦୁର୍ଗମ ପର୍ବତ-ଶ୍ରେଣୀ ମଧ୍ୟରେ ଭାରତବର୍ଷକୁ ଆସିଥିଲେ । ଏହି ସମୟରେ କାମରୂପ ନରପତି ଭାସ୍କରବର୍ମା ଓ ସମ୍ଭବତଃ ତାହାଙ୍କ ପୂର୍ବତନ ନରପତିଗଣ ଏହି ସମୁଦ୍ରପଥ ସ୍ୱତନ୍ତ୍ରାବଧାନରେ ରକ୍ଷିଥିଲେ। ଏହି ପଥରେ ଫା-ହିଏନ୍ ସିଂହଳରୁ ଚୀନ ଦେଶକୁ ଫେରିଯାଇଥିଲେ । ଇ-ତ୍ସିଙ୍ଗଙ୍କ ଲିଖିତ ଗ୍ରନ୍ଥରୁ ଜଣାଯାଏ ଯେ, ସେହି ସମୟରେ ସୁମାତ୍ରା ଉପକୂଳ ଏକ ସମୃଦ୍ଧିଶାଳୀ ବାଣିଜ୍ୟସ୍ଥଳ ଓ ବୌଦ୍ଧଧର୍ମର ପ୍ରଧାନ ପୀଠ ଥିଲା । ଏହି ସ୍ଥାନରେ ବଣିକମାନେ ପଣ୍ୟଦ୍ରବ୍ୟ ଜାହାଜ ଯୋଗେ ଚୀନସାଗର କୂଳସ୍ଥ କେଣ୍ଟନ ନଗରକୁ ପ୍ରେରଣ କରୁଥିଲେ ।

ଚୀନଦେଶର ଲୋକେ ଭାରତବର୍ଷକୁ ପଶ୍ଚିମଭୂଖଣ୍ଡ କହୁଥିଲେ; ଯେହେତୁ ପ୍ରଧାନତଃ ଚୀନର ପଶ୍ଚିମ ଦିଗରେ ଅବସ୍ଥିତ ଗାନ୍ଧାର, କାଶ୍ମୀର ପ୍ରଭୃତି ଦେଶ ଦେଇ ସେମାନେ ଭାରତବର୍ଷକୁ ସ୍ଥଳପଥରେ ଆସୁଥିଲେ । ପରିବ୍ରାଜକ ହୁଏନ୍‌ସାଂ ଏହି ପଥରେ ଆସିଥିଲେ । ଚୀନଦେଶସ୍ଥ ପଶ୍ଚିମ ପ୍ରାନ୍ତର ପରିବ୍ରାଜକମାନଙ୍କ ପକ୍ଷରେ ଏହି ପଥ ସର୍ବାପେକ୍ଷା ସୁଗମ ଓ ସୁବିଧାଜନକ ଥିଲା । ଅନ୍ୟ ପଥରେ ଅନେକେ ତିବ୍ବତ ଅତିକ୍ରମ କରି ନେପାଳ କିମ୍ବା ବ୍ରହ୍ମପୁତ୍ରର ଉପତ୍ୟକା ଦେଇ ଆସାମ ମଧ୍ୟରେ ଭାରତ-ବର୍ଷକୁ ପ୍ରବେଶ କରୁଥିଲେ । ହୁଏନ୍-ଚ୍ୟୁ (ପ୍ରକାଶମତି) ଏହି ମାର୍ଗରେ ଆସିଥିଲେ । ତୃତୀୟତଃ ଚୀନର ପୂର୍ବ ଉପକୂଳସ୍ଥ ବିଭିନ୍ନ ନଗରରୁ ବାହାରି ସୁମାତ୍ରା ପ୍ରଭୃତି ଦ୍ୱୀପ ଅତିକ୍ରମ କରି ପଶ୍ଚିମ ପଥରେ ସିଂହଳରେ କିମ୍ବା ବ୍ରହ୍ମଦେଶରେ ସମୁଦ୍ର ଉପକୂଳକୁ ଆସି ଜଳପଥରେ ତାମ୍ରଲିପ୍ତିରେ ଉପନୀତ ହେଉଥିଲେ । ହୁଏନ୍-ତା ପ୍ରଭୃତି ପରିବ୍ରାଜକମାନେ ଏହି ପଥରେ ଆସିଥିଲେ । ଏହି ପଥରେ ହିଁ ଅଧିକାଂଶ ଲୋକ ଭାରତବର୍ଷରୁ ଚୀନ ଦେଶକୁ ଓ ଚୀନ ଦେଶରୁ ଭାରତବର୍ଷକୁ ଯାତାୟାତ କରୁଥିଲେ ଏବଂ ଏହା ଉଭୟ ଦେଶ ମଧ୍ୟରେ ପ୍ରଧାନ ବାଣିଜ୍ୟପଥ ଥିଲା ।

ଖ୍ରୀଷ୍ଟୀୟ ୬୨ ସାଲରେ ଚୀନ ଦେଶରେ ବୌଦ୍ଧଧର୍ମ ପ୍ରଚାର ଆରମ୍ଭରୁ ଭାରତବର୍ଷ ଓ ଚୀନ ମଧ୍ୟରେ ଧର୍ମପ୍ରଚାର ଓ ବିଦ୍ୟାଶିକ୍ଷା ପାଇଁ ଉଭୟ ଦେଶବାସୀଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଚାଲିଆସିଥିଲା । ଏହି ସମ୍ପର୍କ ଅଷ୍ଟମ ବା ନବମ ଶତାବ୍ଦୀ ପର୍ଯ୍ୟନ୍ତ ବିଦ୍ୟମାନ ଥିବାର ପ୍ରମାଣ ଚୀନ ପରିବ୍ରାଜକମାନଙ୍କ ଭ୍ରମଣବୃତ୍ତାନ୍ତରୁ ଜଣାପଡେ । ବୋଧହୁଏ ଯେଉଁ ସମୟରେ ବୌଦ୍ଧଧର୍ମର ପତନ ହୋଇ ମହାପୁରୁଷ ଶଙ୍କରସ୍ୱାମୀ ପ୍ରଭୃତିଙ୍କ ପ୍ରଚାରରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ହେଲା, ସେହି ସମୟରେ କପିଳବାସ୍ତୁ, ନାଳନ୍ଦ ଓ ବୋଧିଗୟା ପ୍ରଭୃତି ବୌଦ୍ଧତୀର୍ଥମାନଙ୍କ ମହତ୍ତ୍ୱ ଊଣା ପଡିଗଲା ଏବଂ ସେହି ସମୟରୁ ଉଭୟ ଦେଶ ମଧ୍ୟରେ ଧର୍ମର ଅସାମଞ୍ଜସ୍ୟ ହେତୁରୁ ଲୋକମାନଙ୍କର ଗମନାଗମନ ଓ ଭାବର ଆଦାନ ପ୍ରଦାନ ଊଣା ହୋଇପଡିଲା । ଏହି କେତେ ଶତାବ୍ଦୀ ମଧ୍ୟରେ ଭାରତବର୍ଷରୁ ମଧ୍ୟ ଅନେକ ବୌଦ୍ଧ ସନ୍ନ୍ୟାସୀ ଓ ଧର୍ମପ୍ରଚାରକ ନିଶ୍ଚୟ ଚୀନ ଦେଶକୁ ଯାଇଥିବେ; କିନ୍ତୁ ଦୁଃଖର କଥା, ହୁଏନ୍‌ସାଂଙ୍କ ଭାରତଭ୍ରମଣ ବୃତ୍ତାନ୍ତ ପରି କୌଣସି ଭାରତୀୟ ପରିବ୍ରାଜକଙ୍କର ଚୀନ ଭ୍ରମଣବୃତ୍ତାନ୍ତ ଦୃଷ୍ଟିଗୋଚର ହୋଇ ନାହିଁ ।

ହୁଏନ୍‌ସାଂଙ୍କ ଭ୍ରମଣ-ବୃତ୍ତାନ୍ତରୁ ଭାରତବର୍ଷରେ ତତ୍କାଳୀନ ବୌଦ୍ଧଧର୍ମର ପ୍ରଭାବ ବିଷୟରେ ଅନେକ ତଥ୍ୟ ଜଣାପଡେ । ଅବଶ୍ୟ ହୁଏନ୍‌ସାଂ ବୌଦ୍ଧ ସନ୍ନ୍ୟାସୀ ବୋଲି ଏହି ପ୍ରଭାବକୁ ସ୍ଥାନେ ସ୍ଥାନେ ଅତିରଞ୍ଜିତ କରିପକାଇ ଥାଇ ପାରନ୍ତି ; କିନ୍ତୁ ତଥାପି ସେ କାଳରେ ସମଗ୍ର ଭାରତବ୍ୟାପୀ ବୌଦ୍ଧଧର୍ମର ପ୍ରବଳ ପ୍ରଭାବ ସ୍ପଷ୍ଟ ପ୍ରତୀୟମାନ ହୁଏ । ବୌଦ୍ଧ ସମ୍ପ୍ରଦାୟ ମଧ୍ୟରେ ମହାଯାନ ଓ ହୀନଯାନ ମତାବଲମ୍ବୀମାନଙ୍କ ମଧ୍ୟରେ ମତଦ୍ୱୈଧ ଅତି ପ୍ରବଳ ଥିଲା ବୋଲି ଅନୁମିତ ହୁଏ । ସେଥିପାଇଁ ମହାଯାନମତାବଲମ୍ବୀ ଶ୍ରମଣ ହୁଏନ୍‌ସାଂ ସର୍ବତ୍ର ମହାଯାନ ପନ୍ଥାର ଗୌରବ ଓ ହୀନଯାନ ମତର ଲାଘବ ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି ।

ସେ ସମୟରେ ବ୍ରାହ୍ମଣ୍ୟ ଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତାର କଥା ମଧ୍ୟ ହୁଏନ୍‌ସାଂଙ୍କ ଭ୍ରମଣ-ବୃତ୍ତାନ୍ତରୁ ସ୍ପଷ୍ଟ ଜଣାପଡେ

ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରୁ ହୁଏନ୍‌ସାଂ ସର୍ବତ୍ର ସମସ୍ତଙ୍କୁ ବିଧର୍ମୀ ଆଖ୍ୟାରେ ଅଭିହିତ କରିଅଛନ୍ତି । ବ୍ରାହ୍ମଣଶାସ୍ତ୍ରମାନଙ୍କରେ ସୁଦ୍ଧା ବୌଦ୍ଧମାନଙ୍କୁ ନାସ୍ତିକ ବୋଲି ବର୍ଣ୍ଣନା କରାଯାଇଅଛି ।

ଉଭୟ ଧର୍ମର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତାସତ୍ତ୍ୱେ ଉଭୟ ଧର୍ମ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାର ଚେଷ୍ଟା ଉଭୟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ବଳବତୀ ଥିବାର ମଧ୍ୟ ହୁଏନ୍‌ସାଂଙ୍କ ଭ୍ରମଣ-ବୃତ୍ତାନ୍ତରୁ ସ୍ପଷ୍ଟ ଅନୁମିତ ହୁଏ । ହିନ୍ଦୁଧର୍ମାବଲମ୍ବୀମାନେ ଅନ୍ୟାନ୍ୟ ସମସ୍ତ ଧର୍ମକୁ ନିଜ ଧର୍ମରେ ସମନ୍ୱିତ କରିବାକୁ ଚେଷ୍ଟା କରି ଆସିଅଛନ୍ତି । ହୁଏନସାଂଙ୍କ ଭାରତ ଆଗମନର ବହୁ ପୂର୍ବରୁ ବୋଧହୁଏ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀମାନେ ଭଗବାନ୍ ବୁଦ୍ଧଙ୍କୁ ଅବତାରବିଶେଷ ବୋଲି ମାନି ନେଇଥିଲେ ।

ଏହି ଭ୍ରମଣ-ବୃତ୍ତାନ୍ତରେ ହୁଏନ୍‌ସାଂଙ୍କ ବ୍ୟକ୍ତିତ୍ୱ ସର୍ବାପେକ୍ଷା ଅଧିକ ଚିତ୍ତାକର୍ଷକ ବୋଲି ମନେହୁଏ । ଶତସହସ୍ର ବିପଦସତ୍ତ୍ୱେ ଅବିଚଳିତ ସଙ୍କଳ୍ପସହକାରେ ସମସ୍ତ ବାଧାବିଘ୍ନ ଲଙ୍ଘନ କରି ଲକ୍ଷ୍ୟପଥରେ ଅଗ୍ରସର ହେବା ଓ ନିଜ ଆତ୍ମାର ଉନ୍ନତି ଓ ଦେଶବାସୀଙ୍କ ମନରେ ଜାଗ୍ରତ ହୋଇଥିବା ଧର୍ମବିଷୟକ ସମସ୍ୟାସମୂହର ସମାଧାନ ନିମିତ୍ତ ଉଦ୍‌ବେଗମୟୀ ଜ୍ଞାନପିପାସା ତାଙ୍କ ଚରିତ୍ରର ପ୍ରଶଂସନୀୟ ଉପାଦାନ ଥିଲା । ତାଙ୍କର ନିର୍ମଳ ଚରିତ୍ର, କୋମଳ ସ୍ୱଭାବ ଓ ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ସେ ସର୍ବତ୍ର ପୂଜିତ ହେଉଥିଲେ । ବିଦ୍ୱନ୍ମଣ୍ଡଳୀ, ସମ୍ଭ୍ରାନ୍ତ ସମ୍ପ୍ରଦାୟ ଓ ବିଭିନ୍ନ ଦେଶର ନରପତିବୃନ୍ଦ ତାଙ୍କୁ ସମ୍ମାନ କରିବାରେ ପରସ୍ପର ମଧ୍ୟରେ ଜିଗୀଷାଭାବ ପୋଷଣ କରୁଥିଲେ । ଜଣେ ବିଦେଶୀୟ ସନ୍ନ୍ୟାସୀ ପକ୍ଷରେ ଏହା ଅତ୍ୟନ୍ତ ଗୌରବର ବିଷୟ ।

ହୁଏନ୍‌ସାଂଙ୍କ ଭ୍ରମଣ-ବୃତ୍ତାନ୍ତରୁ ତତ୍କାଳୀନ ଭାରତବର୍ଷର ରାଜନୈତିକ ଅବସ୍ଥା ବିଷୟରେ ମଧ୍ୟ ଅନେକ କଥା ଜଣାପଡ଼େ । ରାଜା ହର୍ଷବର୍ଦ୍ଧନ (ଶୀଳାଦିତ୍ୟ)ଙ୍କ ସମ୍ବନ୍ଧରେ ସେ ଅନେକ ବିଷୟ ଲିପିବଦ୍ଧ କରିଯାଇଅଛନ୍ତି । ରାଜା ହର୍ଷବର୍ଦ୍ଧନଙ୍କ ପ୍ରୟାଗରେ ପଞ୍ଚବାର୍ଷିକ ମହାଦାନ

ତାଙ୍କ ସ୍ୱଜତ୍ୱ ଓ ଚରିତ୍ରର ବିଶେଷତ୍ୱ । ଏହା ଛଡ଼ା ଅନେକ ସ୍ୱଜ୍ୟରେ ଅସ୍ୱଜକତା, ଦୁର୍ଭିକ୍ଷ ଓ ଦସ୍ୟୁଭୟ ପ୍ରଭୃତି ବିପଦସମୂହ ବିଦ୍ୟମାନ ଥିବାର ମଧ୍ୟ ସେ ଲେଖିଯାଇଛନ୍ତି ।

ଏହି ଗ୍ରନ୍ଥରେ ଅଧିକାଂଶ ସ୍ଥାନରେ 'ଲି' ଦ୍ୱାସ୍ୱ ଦୂରତା ନିର୍ଣ୍ଣୟ କସ୍ୱହୋଇଅଛି । ଅଳ୍ପ କେତେକ ସ୍ଥାନରେ ଯୋଜନ ବ୍ୟବହୃତ ହୋଇଅଛି । ଏକ ଯୋଜନ ଦୂରତ୍ୱ ସମ୍ବନ୍ଧରେ ପଣ୍ଡିତମାନେ ଭିନ୍ନ ମତ ପ୍ରକାଶ କରିଅଛନ୍ତି । କାହାରି କାହାରି ମତରେ ସ୍ୱଜସେନା ଦିନକ ମଧ୍ୟରେ ଯେତେ ଦୂର ଯାଇ ପାରିବେ ତହିଁର ଦୂରତ୍ୱ ଏକ ଯୋଜନ । କେହି କେହି କହନ୍ତି, ଯୋଜନକୁ ଆଠ କୋଶ, କେହି କେହି କହନ୍ତି ଚାରି କୋଶ । କୋଶର ମୌଳିକ ଅର୍ଥ ଯେତେ ଦୂରରୁ ଗୋରୁର କୋଶ ଅର୍ଥାତ୍ ଶବ୍ଦ ଶୁଣାଯିବ ସେତେ ଦୂର । ହୁଏନ୍ ସାଂଙ୍କ ଯୋଜନର ଦୂରତ୍ୱ ସମ୍ବନ୍ଧରେ ମତଦ୍ୱୈଧ ଥିଲେ ସୁଦ୍ଧା ଏହାକୁ ହାରାହାରି ସାଢେ ଛଅ ମାଇଲ ବୋଲି ଧରାଯାଇ ପାରେ । ଭାରତବର୍ଷରେ ଯୋଜନ ଓ କୋଶ ଶବ୍ଦର ପ୍ରଚଳନ ଥିବାର ସଂସ୍କୃତ ଗ୍ରନ୍ଥମାନଙ୍କରୁ ଜଣାପଡେ; କିନ୍ତୁ କୌଣସି ସଂସ୍କୃତ ଗ୍ରନ୍ଥରେ 'ଲି' ଶବ୍ଦର ପ୍ରଚଳନ ନାହିଁ । 'ଲି' ଚୀନ ଦେଶୀୟ ଶବ୍ଦ ଓ ଏହାକୁ ⅙ ମାଇଲ ବୋଲି ଧରାଯାଇ ପାରେ * ।

ହୁଏନ୍‌ସାଂ ତାଙ୍କ ଭ୍ରମଣଲିପିରେ ବିଭିନ୍ନ ଦେଶ ଓ ନଗରମାନଙ୍କ ନାମକୁ ଚୀନ ଦେଶୀୟ ଉଚ୍ଚାରଣ ଅନୁସାରେ ଲେଖିଥିବାରୁ ଅନେକ ସ୍ଥଳରେ ସଂସ୍କୃତ ନାମଗୁଡ଼ିକ ବିକୃତ ହୋଇଯାଇଅଛି । ଉକ୍ତ ନାମ-ମାନଙ୍କର ଯୁକ୍ତାକ୍ଷର ମଧ୍ୟରେ ସ୍ୱରବର୍ଣ୍ଣ ପ୍ରୟୋଗ କରି ଏବଂ ବର୍ଗର ଯେ କୌଣସି ବର୍ଣ୍ଣ ପାଇଁ ବର୍ଗର ପ୍ରଥମ ବର୍ଣ୍ଣ ବ୍ୟବହାର କରି ଲେଖକ ନାମଗୁଡ଼ିକୁ ବିକୃତ କରିଅଛନ୍ତି । ଏଥିପାଇଁ ଅନେକ ସ୍ଥାନରେ ସେ-ଗୁଡ଼ିକ ଦୁର୍ବୋଧ ହୋଇଅଛି । ବ୍ରହ୍ମପୁରକୁ ପୁ-ଲୋ-ହି-ମୋ-ପୁ-ଲୋ,

---

* ଅଳ୍ପ କେତେକ ସ୍ଥାନରେ 'ଷ୍ଟଂ' ଶବ୍ଦ ଦ୍ୱାସ୍ୱ ଉଚ୍ଚତା ନିର୍ଣ୍ଣୟ କସ୍ୱ ହୋଇଅଛି । ୧ଷ୍ଟଂ = ୧୦ ଫୁଟ୍

କାନ୍ୟକୁବ୍ଜକୁ କି-ଯୋ-କଓ-ଶି-ଲୋ, ସ୍ଥାନେଶ୍ୱରକୁ ସ-ଟ-ନ-ଶି-ଫୋ-ଲୋ ଇତ୍ୟାଦି ନାମ ଦେଇଅଛନ୍ତି । ହୁଏନ୍‌ସାଂ ଯେଉଁ ରାଜ୍ୟ ଓ ନଗରମାନଙ୍କ ବର୍ଣ୍ଣନା କରିଅଛନ୍ତି, ତନ୍ମଧ୍ୟରୁ ସାମାନ୍ୟ କେତେକ ରାଜ୍ୟ ବା ନଗର ଅଦ୍ୟାବଧି ପ୍ରସିଦ୍ଧ । ଅନ୍ୟ କେତେକ ନାମ ସଂସ୍କୃତ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଥିବା ଯୋଗୁଁ ସେହି ନାମ ପରିଚିତ ବୋଲି ବୋଧହୁଏ । ଅନ୍ୟାନ୍ୟ କେତେକ ନାମ ଅପ୍ରସିଦ୍ଧ ଓ ବର୍ତ୍ତମାନ ତହିଁର ପ୍ରକୃତ ପରିବର୍ତ୍ତିତ ବା ଆଧୁନିକ ନାମ ନିର୍ଦ୍ଦେଶ କରିବା କଷ୍ଟସାଧ୍ୟ । ଏହି ପୁସ୍ତକରେ ହୁଏନ୍‌ସାଂଙ୍କ ବର୍ଣ୍ଣିତ ସ୍ଥାନ ଓ ରାଜ୍ୟମାନଙ୍କର ଆଧୁନିକ ନାମ ଓ ଅବସ୍ଥିତି ନିର୍ଦ୍ଦେଶ କରିବା ପାଇଁ ଯଥାସାଧ୍ୟ ଯତ୍ନ କରାଯାଇଅଛି; ତଥାପି ଏପରି ଅନେକ ସ୍ଥାନ ଅଛି, ଯାହାର ସଂସ୍କୃତ ବା ଆଧୁନିକ ନାମ ନିର୍ଣ୍ଣୟ କରାଯାଇ ପାରି ନାହିଁ । ହୁଏନ୍‌ସାଂ ତାହାଙ୍କ ଭାରତ-ଭ୍ରମଣ କାଳରେ ଯେଉଁ ସ୍ଥାନରେ ଜନବସତିପୂର୍ଣ୍ଣ ରାଜ୍ୟ ବା ସମୃଦ୍ଧଶାଳୀ ନଗର ଦେଖିଥିଲେ, ବର୍ତ୍ତମାନ ହୁଏତ ସେହି ସ୍ଥାନ ନିବିଡ଼ ଅରଣ୍ୟରେ ବା କ୍ଷୁଦ୍ର ଗ୍ରାମରେ ପରିଣତ ହୋଇଅଛି । ଅତଏବ ବର୍ତ୍ତମାନ ସେହି ଅରଣ୍ୟ ବା କ୍ଷୁଦ୍ର ଗ୍ରାମ ଓ ପୂର୍ବର ସେହି ସମୃଦ୍ଧ ରାଜ୍ୟ ମଧ୍ୟରେ ସମ୍ବନ୍ଧ ନିର୍ଣ୍ଣୟ କରିବା ଦୁଃସାଧ୍ୟ । ହୁଏନ୍-ସାଂଙ୍କ ବର୍ଣ୍ଣିତ ସ୍ଥାନସମୂହର ନାମମାନଙ୍କ ମଧ୍ୟରୁ କେତେକର ଆଧୁନିକ ନାମ ନ ମିଳିବାର ଅନ୍ୟ କାରଣ ଏହି ଯେ, ତାହାଙ୍କ ବର୍ଣ୍ଣିତ ନାମମାନ ସଂସ୍କୃତ ବା ତଦ୍ଭବ ନାମ; କିନ୍ତୁ ଗତ କେତେ ଶତାବ୍ଦୀ ମଧ୍ୟରେ ସେହି ରାଜ୍ୟ ବା ନଗରର ନାମ ପରିବର୍ତ୍ତିତ ହୋଇ ବର୍ତ୍ତମାନ ସମ୍ପୂର୍ଣ୍ଣ ଭିନ୍ନ ନାମରେ ପରିଚିତ । ଏପରି ସ୍ଥଳରେ ମଧ୍ୟ ଉଭୟ ମଧ୍ୟରେ ସମ୍ବନ୍ଧ ନିର୍ଣ୍ଣୟ ଏକପ୍ରକାର ଅସମ୍ଭବ । ଉଦାହରଣସ୍ୱରୂପ ହୁଏନ୍‌ସାଂଙ୍କ ମୋ-ଲୁ-ଲୋ ଆଧୁନିକ ମଥୁରା । ଏହା ସହଜରେ ଜଣାପଡ଼ୁଅଛି; କିନ୍ତୁ ପୂର୍ବକାଳୀନ ସମୃଦ୍ଧ ରାଜ୍ୟ ଶ୍ରୁଘ୍ନଠାରେ ବର୍ତ୍ତମାନ ଅଖ୍ୟାତନାମା ଗ୍ରାମ ଶୁଘ ବା ତତ୍କାଳୀନ ଧନକଟକ ନଗର ବର୍ତ୍ତମାନ ଯେ ବେଜଓ୍ୱାଡ଼ା, ଏହା ସହଜରେ କଳ୍ପନା କରାଯାଇ ନ ପାରେ । ପରିବର୍ତ୍ତନଶୀଳ କାଳର ଗତିକ୍ରମରେ ସ୍ଥାନର ପ୍ରାଧାନ୍ୟ ଓ ନାମର ମଧ୍ୟ ପରିବର୍ତ୍ତନ ସ୍ୱାଭାବିକ ।

ହୁଏନ୍ ସାଂଙ୍କ ଭାରତ-ପର୍ଯ୍ୟଟନ ସମୟରେ ଭାରତବର୍ଷ ଅଶୀତି-ସଂଖ୍ୟକ ରାଜ୍ୟରେ ବିଭକ୍ତ ଥିଲା; କିନ୍ତୁ ତନ୍ମଧ୍ୟରୁ ଅଧିକାଂଶ ରାଜ୍ୟ କ୍ଷୁଦ୍ର ଓ ବଡ ରାଜ୍ୟର ଅଧୀନ ଥିଲା । ଭାରତବର୍ଷର ଉତ୍ତର-ପଶ୍ଚିମରେ କାବୁଲ, ଜଲାଲବାଦ (ନଗରହାର),ପେଶାଓ୍ୱାର (ପୁରୁଷପୁର), ଗଜନୀ ଓ ବାନୁ (ଫାଲୁଗା) କପିଶା ନରପତିଙ୍କ ଅଧୀନ ଥିଲେ । ପଶ୍ଚିମ ଭାରତର ବିଭିନ୍ନ ରାଜ୍ୟମାନ ସିନ୍ଧୁ, ବଲ୍ଲଭୀ ଓ ଗୁର୍ଜ୍ଜର ରାଜାମାନଙ୍କର ବଶବର୍ତ୍ତୀ ଥିଲେ । ଭାରତବର୍ଷର ମଧ୍ୟଭାଗ ଓ ପୂର୍ବଭାଗରେ ଥିବା ସମସ୍ତ ରାଜ୍ୟ * କାନ୍ୟ-କୁବ୍ଜାଧୀଶ୍ୱର ହର୍ଷବର୍ଦ୍ଧନଙ୍କ ଅଧୀନ ଥିଲା । ଏହାଙ୍କ ସାମ୍ରାଜ୍ୟ ପଶ୍ଚିମରେ ଥାନେଶ୍ୱରଠାରୁ ପୂର୍ବରେ ଗଙ୍ଗାନଦୀର ମୁହାଣ ପର୍ଯ୍ୟନ୍ତ ଓ ଉତ୍ତରରେ ହିମାଚଳଠାରୁ ଦକ୍ଷିଣରେ ନର୍ମଦା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସମ୍ଭବତଃ ପଞ୍ଜାବର ଜଳନ୍ଧର ରାଜ୍ୟ ଓ ଟାକୀ ରାଜ୍ୟ ମଧ୍ୟ ତାହାଙ୍କ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ହର୍ଷବର୍ଦ୍ଧନ ପ୍ରାୟ ୩୭ ଗୋଟି ରାଜ୍ୟର ଅଧୀଶ୍ୱର ଥିଲେ ଏବଂ ତାହାଙ୍କ ସାମ୍ରାଜ୍ୟ ଭାରତବର୍ଷର ଅର୍ଦ୍ଧେକରୁ ଅଧିକ ଥିଲା । ଦାକ୍ଷିଣାତ୍ୟରେ ମହାରାଷ୍ଟ୍ରର ରାଜପୁତ ନରପତି ସ୍ୱାଧୀନ ଥିଲେ ଏବଂ ଏହାଙ୍କୁ ହର୍ଷବର୍ଦ୍ଧନଙ୍କ ପ୍ରବଳ ପରାକ୍ରାନ୍ତ ସୈନ୍ୟମାନେ ପରାସ୍ତ କରିପାରି ନ ଥିଲେ । ଦାକ୍ଷିଣାତ୍ୟର ରାଜ୍ୟମାନ ୯ଟି ପ୍ରଧାନ ରାଜ୍ୟରେ ବିଭକ୍ତ ଥିଲା । ଉତ୍ତରରେ ମହାରାଷ୍ଟ୍ର ଓ କୋଶଳ, ମଧ୍ୟରେ ଅନ୍ଧ୍ର, କଙ୍କଣ ଓ ଧନକଟକ ଏବଂ ଦକ୍ଷିଣରେ ଚୋର୍ଯ୍ୟ, ମାଲକୂଟ ଓ ସିଂହଳ । ସିଂହଳରେ ଅରାଜକତା ଓ ଦୁର୍ଭିକ୍ଷ ଯୋଗୁଁ ହୁଏନ୍-ସାଂ ସେଠାକୁ ଯାଇପାରି ନ ଥିଲେ ।

ହୁଏନ୍‌ସାଂଙ୍କ ଭ୍ରମଣ କାଳରେ ଓଡ଼ିଶା ମଧ୍ୟ ବୌଦ୍ଧ ଜଗତରେ ପ୍ରସିଦ୍ଧି ଲାଭ କରିଥିଲା । ସେ ତାହାଙ୍କ ଭ୍ରମଣ-ବୃତ୍ତାନ୍ତରେ ମଧ୍ୟ ଏହାକୁ ସୁପ୍ରସିଦ୍ଧ ଉଡ୍ର ନାମରେ ଅଭିହିତ କରିଅଛନ୍ତି । ହୁଏନ୍‌ସାଂ କର୍ଣ୍ଣ ସୁବର୍ଣ୍ଣରୁ ତାମ୍ରଲିପ୍ତିକୁ ପ୍ରତ୍ୟାବର୍ତ୍ତନ କରି ଉଡ୍ର ଦେଶକୁ ଯାଇଥିଲେ । ଓଡ଼ିଶାର କ୍ଷମତାଶାଳୀ ନରପତିମାନଙ୍କ ସମୟରେ ଏହା ଉତ୍ତରରେ

---

* ଶ୍ରୀଯୁକ୍ତ ରାଖାଲ ଦାସ ବେନର୍ଜୀଙ୍କ ମତେ ଓଡ଼ିଶା ସ୍ୱାଧୀନ ଥିଲା ।
History of Orissa Vol. I. P.P. 129-30

ହୁଗ୍‌ଲି ଓ ଦାମୋଦର ନଦୀଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ହୁଏନ୍‌ସାଂଙ୍କ ଭ୍ରମଣ ସମୟରେ ଉତ୍ତରରେ ସୁବର୍ଣ୍ଣରେଖା ନଦୀଠାରୁ ଦକ୍ଷିଣରେ ଗଞ୍ଜାମ ପର୍ଯ୍ୟନ୍ତ ଓ ପଶ୍ଚିମରେ ଗଣ୍ଡୱାନାଠାରୁ ପୂର୍ବରେ ସମୁଦ୍ର ପର୍ଯ୍ୟନ୍ତ ଥିଲା । ଆଧୁନିକ ମେଦିନୀପୁର ଜିଲ୍ଲାର ଏକାଂଶ, ବାଲେଶ୍ୱର, କଟକ, ସମ୍ବଲପୁର * ଓ ପୁରୀ ଏହାର ଅନ୍ତର୍ବର୍ତ୍ତୀ ଥିଲା । ଏହାର ଆୟତନ ୭୦୦୦ ଲି ଅର୍ଥାତ୍ ୧୧୬୭ ମାଇଲ ଥିଲା । ଯାଜପୁର ଏହାର ରାଜଧାନୀ ଥିଲା । ସମୁଦ୍ର କୂଳରେ ଚେ-ଲି-ତ-ଲୋ (ଚରିତ୍ରପୁର) ନାମକ ବନ୍ଦର ଥିଲା । ଏହିଠାରୁ ଉତ୍କଳର ନାବିକମାନେ ସମୁଦ୍ର ପଥରେ ବାଣିଜ୍ୟ ସକାଶେ ଦୂର ଦେଶକୁ ଗମନ କରୁଥିଲେ । ଚରିତ୍ରପୁରକୁ ଆଧୁନିକ ପୁରୀ ବୋଲି କେହି କେହି ଅନୁମାନ କରନ୍ତି (୧) । ଚରିତ୍ରପୁରର ବହିର୍ଭାଗରେ ଅତ୍ୟୁଚ୍ଚ ପାଞ୍ଚୋଟି ସ୍ତୂପ ଥିଲା ଓ ଏହା ବୌଦ୍ଧଧର୍ମର ଏକ ପ୍ରଧାନ ପୀଠ ଥିଲା । ଆଧୁନିକ ଜଗନ୍ନାଥ ମନ୍ଦିରର ମୂଳ ପତ୍ତନ ଉକ୍ତ ପଞ୍ଚସ୍ତୂପ ମଧ୍ୟରୁ ଗୋଟିକ ଉପରେ ପ୍ରତିଷ୍ଠିତ ବୋଲି ଅନୁମିତ ହୁଏ । ଅର୍ହତ୍ ଶୀଳଭଦ୍ର ପୁଣ୍ଣ୍ୟଧନଙ୍କୁ ସ୍ୱପ୍ନରେ ତିନିଗୋଟି ଦେବତା ଦର୍ଶନ ଦେଇ ତାହାଙ୍କ ରୋଗ ସମ୍ବନ୍ଧରେ ଭବିଷ୍ୟଦ୍‌ବାଣୀ ପ୍ରକାଶ କରିଥିଲେ; ସ୍ଫଟିକବର୍ଣ୍ଣ ଦେବତା ଅବଲୋକିତେଶ୍ୱର ବୋଧିସତ୍ତ୍ୱ, ରଜତବର୍ଣ୍ଣ ଦେବତା ମୈତ୍ରେୟ ବୋଧିସତ୍ତ୍ୱ ଓ ସୁବର୍ଣ୍ଣବର୍ଣ୍ଣ ଦେବତା ମଞ୍ଜୁଶ୍ରୀ ବୋଧିସତ୍ତ୍ୱ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନି ଦେବତାଙ୍କର ନାମାନ୍ତର ବୋଲି ରୂପସାଦୃଶ୍ୟରୁ ଅନୁମିତ ହୁଏ । କନିଂହାମ (Cunningham) ପ୍ରଭୃତି ଐତିହାସିକମାନଙ୍କ ମତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ ବୁଦ୍ଧ, ଧର୍ମ ଓ ସଂଘର ପ୍ରତୀକ ।

ଭୁବନେଶ୍ୱରରୁ ପାଞ୍ଚମାଇଲ ପଶ୍ଚିମକୁ ଓ କଟକରୁ ୨୦ ମାଇଲ ଦକ୍ଷିଣକୁ ପୁ-ଷି-ପୋ-କି-ଲି (ପୁଷ୍ପଗିରି) ନାମକ ପର୍ବତ ଉପରେ ହୁଏନ୍‌ସାଂ

---

* ଶ୍ରୀଯୁକ୍ତ ରାଖାଲ ଦାସ ବାନାର୍ଜିଙ୍କ ମତେ ସମ୍ବଲପୁର ଉଡ୍ରାନ୍ତର୍ଗତ ନ ଥିଲା । Hist. of Orissa Vol. I. P.136 (୧) କୃପାସିନ୍ଧୁ ମିଶ୍ରଙ୍କ ମତେ କୋଣାର୍କ ନିକଟବର୍ତ୍ତୀ ଏକ ଲୁପ୍ତ ବନ୍ଦର—"କୋଣାର୍କ" ପୃଷ୍ଠା୧-୫୫ ଶ୍ରୀ ବସନ୍ତ୍ ସ୍ୱରୂପଙ୍କ ମତେ ଏହା ପ୍ରାଚୀ ତୀରବର୍ତ୍ତୀ । 'Konarka"

ଏକ ବୌଦ୍ଧମଠ ଓ ପ୍ରସ୍ତରସ୍ତୂପ ପରିଦର୍ଶନ କରିଥିଲେ । ପୁଷ୍ପଗିରି ଅଧିକାଂଶ ଉଦୟଗିରି । ଏଠାରେ ସେହି ସମୟର ବୌଦ୍ଧ କୀର୍ତ୍ତିମାନ ଅଦ୍ୟାପି ବିଦ୍ୟମାନ ଅଛି । ଚୀନ ଦେଶୀୟ ପରିବ୍ରାଜକ ଓ ସନ୍ନ୍ୟାସିଗଣ ଆସି ଏହି ସ୍ଥାନରେ କିଛି ସମୟ ଅତିବାହିତ କରି ଯାଉଥିଲେ । ଏହି ପୁଷ୍ପଗିରି ସନ୍ନିକଟସ୍ଥ ଅନ୍ୟ ଏକ ପର୍ବତ ଉପରେ କେବଳ ଏକ ପ୍ରସ୍ତରସ୍ତୂପ ହୁଏନ୍ ସାଂ ପରିଦର୍ଶନ କରିଥିଲେ—ଏହା ଅଧିକାଂଶ ଖଣ୍ଡଗିରି ପର୍ବତ । *

ଗଞ୍ଜାମ ଏହି ସମୟରେ ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ଏହାର ପ୍ରାଚୀନ ନାମ କଙ୍ଗୋଦ । ଏହା ଓଡ଼ିଶାର ରାଜଧାନୀରୁ ୧୨୦୦ ଲି ଅର୍ଥାତ୍ ୨୦୦ ମାଇଲ ଦୂରରେ ଦକ୍ଷିଣ ପଶ୍ଚିମରେ ଚିଲିକା କୂଳରେ ଅବସ୍ଥିତ ଥିଲା । ହୁଏନ୍ ସାଂଙ୍କ ଭ୍ରମଣ ସମୟରେ ଏହାର ଆୟତନ ୧୦୦୦ ଲି ଅର୍ଥାତ୍ ୧୬୭ ମାଇଲ ଥିଲା ଓ ଏହି କ୍ଷୁଦ୍ର ରାଜ୍ୟ ଋଷିକୁଲ୍ୟା ନଦୀର ଉପତ୍ୟକା ମଧ୍ୟରେ ଅବସ୍ଥିତ ଥିଲା । ରାଜ୍ୟ କ୍ଷୁଦ୍ର ହେଲେହେଁ ଗଞ୍ଜାମର ରାଜା ଅତ୍ୟନ୍ତ ଶକ୍ତିଶାଳୀ ଓ ତାହାଙ୍କ ସୈନ୍ୟମାନେ ସାହସୀ ଥିଲେ । ନିକଟବର୍ତ୍ତୀ ରାଜ୍ୟସମୂହ ତାହାଙ୍କ ଅଧୀନତା ସ୍ୱୀକାର କରିଥିଲେ । ଏହି ସମସ୍ତ ବିବରଣରୁ କେତେକ ଐତିହାସିକ ଅନୁମାନ କରନ୍ତି ଯେ, ଏହି ରାଜା ଓଡ଼ିଶାର ରାଜା ଲଲାଟେନ୍ଦୁ କେଶରୀ ଭିନ୍ନ ଅନ୍ୟ କେହି ନ ଥିଲେ । ଲଲାଟେନ୍ଦୁ କେଶରୀ (୧) ଖ୍ରୀଷ୍ଟୀୟ ୬୧୭ ରୁ ୬୭୭ ଶତାବ୍ଦୀ ଯାଏ ଅର୍ଥାତ ଷାଠିଏ ବର୍ଷ ରାଜତ୍ୱ କରିଥିଲେ ଏବଂ ଏହାଙ୍କ ରାଜତ୍ୱ ସମୟରେ ହୁଏନ୍ ସାଂ ୬୩୯ ସାଲରେ ଓଡ଼ିଶା ଓ ଗଞ୍ଜାମ ପର୍ଯ୍ୟଟନ କରିଥିଲେ ଓ ଏଠାରେ ଦୁଇବର୍ଷ ଅବସ୍ଥାନ କରି ମଗଧକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଲେଖକ

---

* ଶ୍ରୀଯୁକ୍ତ ରାଖାଲ ବାବୁ ବେନର୍ଜିଙ୍କ ମତରେ ଉଦୟଗିରି । Hist. of Orissa Vol.I.P. 138. (୧) ଶ୍ରୀଯୁକ୍ତ ରାଖାଲ ବାବୁ 'ଲଲାଟେନ୍ଦୁ କେଶରୀ' ଙ୍କୁ ଜଣେ କାଳ୍ପନିକ ରାଜା ବୋଲି କହନ୍ତି— Hist. of Orissa. Vol. I.P. 156.

# ହୁଏନ୍ ସାଂ

# ଙ୍କ

# ଭାରତ-ଭ୍ରମଣ

## ପ୍ରଥମ ଖଣ୍ଡ

### ବାଲ୍ୟ-ଜୀବନ ଓ ତୀର୍ଥଯାତ୍ରା

ହୁଏନ୍ ସାଂ ଚୀନ ଦେଶସ୍ଥ ଚୀନ୍-ଲୁ ନାମକ ପ୍ରଦେଶରେ ଜନ୍ମ-ଗ୍ରହଣ କରିଥିଲେ । ଚ୍ୟାଂ କାଂ ନାମରେ ତାଙ୍କର ଜଣେ ପୂର୍ବପୁରୁଷ ହ୍ୟାନ୍‌ବଂଶର ରାଜତ୍ୱ ସମୟରେ ତାଇ-ଲୁ ନାମକ ପ୍ରଦେଶର ଶାସନ-କର୍ତ୍ତା ପଦରେ ନିଯୁକ୍ତ ଥିଲେ । ତାଙ୍କ ପ୍ରପିତାମହଙ୍କ ନାମ କାନ୍ । ସେ ମଧ ଉଇ-ବଂଶର ରାଜତ୍ୱ ସମୟରେ ଶ୍ୟାଂ-ଠ୍ୟାଂ ନାମକ ପ୍ରଦେଶରେ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ତାହାଙ୍କ ପିତାମହ ମଧ୍ୟ ନିଜର ଅସାଧାରଣ ପାଣ୍ଡିତ୍ୟ ଯୋଗୁଁ ଉଚ୍ଚପଦରେ ଅଭିଷିକ୍ତ ହୋଇଥିଲେ । ସୀ ବଂଶର ରାଜତ୍ୱ ସମୟରେ ସେ ପିକିନ୍ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ପଦରେ ନିଯୁକ୍ତ ଥାଇ ଚୈନ୍ୟାନ୍ ନାମକ ନଗରର ସମସ୍ତ ରାଜସ୍ୱ ବୃତ୍ତିସ୍ୱରୂପ ଭୋଗ କରୁଥିଲେ । ତାହାଙ୍କ ପିତା

ହୁଇ ନାନା ବିଦ୍ୟାରେ ନିପୁଣ ଥିଲେ । ସେ ଉନ୍ନତଚରିତ୍ର ଓ ଶାନ୍ତ-ସ୍ୱଭାବର ଲୋକ ଥିଲେ । ବାଲ୍ୟକାଳରେ ସେ ଧର୍ମଗ୍ରନ୍ଥ ଅଧ୍ୟୟନ ଆରମ୍ଭ କଲେ । ଉନ୍ନତ କଳେବର * ଘନସନ୍ନିବିଷ୍ଟ ଭ୍ରୂଯୁଗଳ ଓ ଚକ୍ଷୁର ଉଜ୍ଜ୍ୱଳ ତାରକାଦ୍ୱୟ ତାହାଙ୍କର ବିଶେଷତ୍ୱ ଥିଲା । ସେ ସର୍ବଦା ବହୁଳ ବସ୍ତ୍ର ପରିଧାନ କରୁଥିଲେ ଓ ବେଶଭୂଷାର ପରିପାଟୀ-ଦ୍ୱାରା ତାଙ୍କ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରିବାକୁ ଅତ୍ୟନ୍ତ ସୁଖ ପାଉଥିଲେ । ସେ ଅନ୍ୟ ଗୋଟିଏ ସୁଦୂରବର୍ତ୍ତୀ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ସ୍ୱଭାବ ଏବଂ ଆଗ୍ରହ ବ୍ୟବହାର ଅତ୍ୟନ୍ତ ସରଳ ଥିଲା । ସେ ସମ୍ମାନ କିମ୍ବା ପଦୋନ୍ନତିର ଆକାଙ୍କ୍ଷା କରୁ ନ ଥିଲେ ଓ ସର୍ବଥା ସନ୍ତୋଷମୟ ଜୀବନ ଯାପନ କରୁଥିଲେ । ଯୌବନରେ ସେ ନିରନ୍ତର ଅଧ୍ୟୟନରେ ରତ ଥିଲେ । ତତ୍କାଳୀନ ସମ୍ରାଟ୍ ବହୁବାର ଉଚ୍ଚ ରାଜପଦ ଗ୍ରହଣ କରିବା ସକାଶେ ତାଙ୍କୁ ଅନୁରୋଧ କରିଥିଲେ; କିନ୍ତୁ ଶାରୀରିକ ଅସୁସ୍ଥତା ହେତୁ ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ସେ ନିଭୃତ ଜୀବନ ଯାପନ କରିବାକୁ ସୁଖ ପାଉଥିଲେ ଏବଂ ଏ ସମସ୍ତ ଗୁଣ ଯୋଗୁଁ ସେ ବନ୍ଧୁମାନଙ୍କର ପ୍ରଣୟ-ଭାଜନ ହୋଇଥିଲେ ।

---

## ପିତାମାତା—ପରିବାର

ହୁଇଙ୍କର ଚାରି ପୁତ୍ର ମଧ୍ୟରେ ହୁଏନ୍‌ସାଂ କନିଷ୍ଠ ଥିଲେ । ବାଲ୍ୟ-କାଳରେ ହୁଏନ୍‌ସାଂଙ୍କ ପ୍ରକୃତି ରାଜପୁତ୍ର ତୁଲ୍ୟ ଗମ୍ଭୀର ଓ ନାନା ସଦ୍‌ଗୁଣସମ୍ପନ୍ନ ଥିଲା । ତାହାଙ୍କର ଅଷ୍ଟମ ବର୍ଷ ବୟସରେ ଦିନେ ତାହାଙ୍କ ପିତା ହୁଉ ନାମକ ଗ୍ରନ୍ଥରୁ ସନ୍ତାନବାତ୍ସଲ୍ୟ ସମ୍ବନ୍ଧରେ ଏକାଂଶ ପାଠ କରୁଥିଲେ । ତହିଁର ଏକସ୍ଥାନରେ ବର୍ଣ୍ଣିତ ହୋଇ-

* ସେ ୮ ଫୁଟ ଉଚ୍ଚ ଥିଲେ । ୧ ଫୁଟ = ୧୪ ଇଞ୍ଚ

ଥିଲି ଯେ, ପୁତ୍ର ଶାଂଶୁ ପିତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ଉଠିଲେ । ଏହା ଶୁଣିବା ମାତ୍ରେ ହୁଏନ୍‌ସାଂ ଠିଆ ହୋଇପଡ଼ିଲେ । କାରଣ ପଚ୍ଚରିବାରୁ ସେ ଉତ୍ତର କଲେ, "ଯଦି ପିତାଙ୍କ ଆଦେଶରେ ପୁତ୍ର ଶାଂଶୁ ସ୍ୱସ୍ଥାନ ତ୍ୟାଗ କରି ଦଣ୍ଡାୟମାନ ହୋଇଥିଲେ, ତାହାହେଲେ ହୁଏନ୍‌ସାଂ ସ୍ୱ ପିତାଙ୍କ ମୁଖନିଃସୃତ ଉପଦେଶ ଶ୍ରବଣ କରି କେବେ ନିଶ୍ଚିନ୍ତ ହୋଇ ବସି ନ ପାରେ ।" ଏହି ଉତ୍ତର ଶୁଣି ପିତା ଅତ୍ୟନ୍ତ ପ୍ରୀତ ହେଲେ ଓ ମନେକଲେ ଯେ, ପୁତ୍ର ଦିନେ ଜଣେ ଖ୍ୟାତନାମା ପୁରୁଷ ହେବ । ତତ୍ପରେ ପରିବାରସ୍ଥ ସମସ୍ତ ବ୍ୟକ୍ତିଙ୍କୁ ଡାକି ଉପର୍ଯ୍ୟୁକ୍ତ ଘଟଣା ବର୍ଣ୍ଣନା କଲେ ଓ ସେମାନଙ୍କ ସମକ୍ଷରେ ପୁତ୍ରକୁ ବହୁ ପ୍ରଶଂସା କରି କହିଲେ, "ଏହି ବାଳକଠାରେ ବହୁ ସଦ୍‌ଗୁଣ ନିହିତ ଅଛି । ବାଲ୍ୟ ବୟସରେ ସୁଦ୍ଧା ଏହାର ବୁଦ୍ଧି ଅସାଧାରଣ !

ଏହି ବୟସରୁ ହୁଏନ୍‌ସାଂ ଧର୍ମଗ୍ରନ୍ଥ ଅଧ୍ୟୟନରେ ମନୋନିବେଶ କଲେ । ସେ ପୂର୍ବତନ ଋଷିମାନଙ୍କ ପ୍ରଣୀତ ଗ୍ରନ୍ଥ ପାଠ କରି ଅତ୍ୟନ୍ତ ମୁଗ୍ଧ ହେଉଥିଲେ ଓ ସୁରୁଚିହୀନ କିମ୍ବା ଅପ୍ରାସଙ୍ଗିକ ଗ୍ରନ୍ଥ ପ୍ରତି ଆଦୌ ଦୃକ୍‌ପାତ କରୁ ନ ଥିଲେ । ଜ୍ଞାନୀ ଓ ପୁଣ୍ୟାତ୍ମାମାନଙ୍କ ପ୍ରଦତ୍ତ ଶିକ୍ଷାର ବିରୁଦ୍ଧାଚରଣ ବ୍ୟକ୍ତିଙ୍କ ସହିତ ସେ ଆଦୌ ସମ୍ପର୍କ ରଖୁ ନ ଥିଲେ । ସମବୟସ୍କ ବାଳକମାନଙ୍କ ସହିତ ସେ ମିଶୁ ନ ଥିଲେ କିମ୍ବା ସାଧାରଣ ବାଳକମାନଙ୍କ ତୁଲ୍ୟ ପଣ୍ୟ ବୀଥିକାରେ ବୃଥା ସମୟ କ୍ଷେପଣ କରୁ ନ ଥିଲେ । ଯେତେବେଳେ ଶଙ୍ଖ, ଘଣ୍ଟି ଓ ବାଦ୍ୟଯନ୍ତ୍ର ସହ ବାଳକବାଳିକାଙ୍କ ସଂଗୀତ ନାଦରେ ରାଜମାର୍ଗ ମୁଖରିତ ହେଉଥିଲା, ସେତେବେଳେ ହୁଏନ୍‌ସାଂ ଗୃହକୋଣରେ ଅଧ୍ୟୟନରେ କିମ୍ବା ପାରିବାରିକ କର୍ତ୍ତବ୍ୟ ପାଳନରେ ଏକାନ୍ତ ଅଭିନିବିଷ୍ଟ ରହୁଥିଲେ ।

---

## ଲ୍ୟୁାଂରେ ଅବସ୍ଥାନ

ହୁଏନ୍‌ସାଂଙ୍କ ଦ୍ୱିତୀୟ ଭ୍ରାତା ଚ୍ୟାଂସି ଏଥିପୂର୍ବେ ବୁଦ୍ଧଙ୍କ ଶିଷ୍ୟତ୍ୱ ଗ୍ରହଣ କରି ପୂର୍ବାଞ୍ଚଳର ରାଜଧାନୀ ଲ୍ୟୁାଂସ୍ଥିତ ସିଂଟୁ ମଠରେ ଅବସ୍ଥାନ କରୁଥିଲେ । ଧର୍ମଶାସ୍ତ୍ର ଅଧ୍ୟୟନରେ କନିଷ୍ଠ ଭ୍ରାତାଙ୍କ ପ୍ରବଳ ଶ୍ରଦ୍ଧା ସନ୍ଦର୍ଶନ କରି ସେ ତାହାଙ୍କୁ ସେହି ମଠକୁ ଘେନିଗଲେ ଏବଂ କନିଷ୍ଠଙ୍କୁ ବୌଦ୍ଧ ଧର୍ମଶାସ୍ତ୍ରସମୂହର ଗୂଢ଼ ତତ୍ତ୍ୱ ବିଷୟରେ ଶିକ୍ଷା ପ୍ରଦାନ କରିବାକୁ ଲାଗିଲେ ।

ଏହି ସମୟରେ ରାଜାଦେଶ ହେଲା ଯେ, ଲ୍ୟୁାଂ ମଠରେ ଚଉଦ ଜଣ ଆଚାର୍ଯ୍ୟ ନିଯୁକ୍ତ ହେବେ ଓ ମଠ ସେମାନଙ୍କର ସମସ୍ତ ବ୍ୟୟ ବହନ କରିବ । ଏହି ପଦ ସକାଶେ ଶତ ଶତ ବ୍ୟକ୍ତି ପ୍ରାର୍ଥୀ ହେଲେ । ଅଳ୍ପବୟସ୍କ ଥିବାରୁ ହୁଏନ୍‌ସାଂ ପ୍ରାର୍ଥୀ ହେଲେ ନାହିଁ । କିନ୍ତୁ ନିର୍ବାଚନ ଦିବସରେ ମଠଦ୍ୱାର ସନ୍ନିକଟକୁ ଯାଇ ଦଣ୍ଡାୟମାନ ହୋଇ ରହିଲେ । ନିର୍ବାଚନ-ଭାରପ୍ରାପ୍ତ ଉଚ୍ଚ କର୍ମଚାରୀ ଚିଂ-ସ୍ୟାନ୍-କୋ ସେଠାରେ ଉପସ୍ଥିତ ଥିଲେ । କୌଣସି ବ୍ୟକ୍ତିର ମୁହଁକୁ ଦେଖିଲେ ସହଜରେ ସେ ତାହାର ଗୁଣ ଜାଣି ପାରୁଥିଲେ । ହୁଏନ୍‌ସାଂଙ୍କୁ ଦେଖି ସେ ପଚାରିଲେ, "ତୁମ୍ଭେ କିଏ ?" ହୁଏନ୍‌ସାଂ ନିଜର ପରିଚୟ ଦେଲେ । ପୁଣି ସେ ତାହାଙ୍କୁ ପଚାରିଲେ, "ତୁମ୍ଭେ କଣ ଏହି ପଦ ସକାଶେ ନିର୍ବାଚିତ ହେବାକୁ ଚାହିଁ ?" ହୁଏନ୍‌ସାଂ ଉତ୍ତର କଲେ, "ହିଁ, ନିଶ୍ଚୟ; କିନ୍ତୁ ଅଳ୍ପ ବୟସ ଯୋଗୁଁ ମୁଁ ବୋଧହୁଏ ନିର୍ବାଚିତ ହୋଇ ପାରିବି ନାହିଁ ।" ପୁଣି ସେ ପଚାରିଲେ, "ତୁମ୍ଭର ଶିଷ୍ୟ ହେବା ଉଦ୍ଦେଶ୍ୟ କଣ ?" ସେ ଉତ୍ତର କଲେ, "ମୋର ଏକମାତ୍ର ଉଦ୍ଦେଶ୍ୟ ଯେ, ଆମ୍ଭେମାନେ ଯେଉଁ ଧର୍ମ ଗ୍ରହଣ କରିଅଛୁଁ, ତାହାର ଆଲୋକ ଚତୁର୍ଦ୍ଦିଗରେ ବିସ୍ତାର କରିବା ।" ସ୍ୟାନ୍-କୋ ଏହା ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ଏବଂ ଯୁବକ ହୁଏନ୍‌ସାଂଙ୍କ ରୂପରେ ମୁଗ୍ଧ ହୋଇ

ତାହାଙ୍କୁ ଆଚାର୍ଯ୍ୟପଦରେ ବରଣ କଲେ ଓ ତାଙ୍କ ଅନ୍ୟ ରାଜ-କର୍ମଚାରୀମାନଙ୍କ ନିକଟକୁ ଯାଇ କହିଲେ, "କୌଣସି ଲୋକ ନିଜ କଥା କହିବା ସହଜ; କିନ୍ତୁ ସର୍ବଗୁଣସମ୍ପନ୍ନତା ଓ ସାହସ ସମସ୍ତଙ୍କ ପକ୍ଷରେ ସୁଲଭ ନୁହେଁ । ଆପଣମାନେ ଯଦି ଏହି ଯୁବକଙ୍କୁ ଆଚାର୍ଯ୍ୟ ପଦରେ ବରଣ କରନ୍ତି, ତାହା ହେଲେ ସେ ନିଃସନ୍ଦେହରେ ଶାକ୍ୟ ମୁନିଙ୍କ ଧର୍ମ ପ୍ରଚାର କରିବାରେ ପ୍ରସିଦ୍ଧି ଲାଭ କରିବେ । ମୋର କେବଳ ଭୟ ହେଉଛି, ଆପଣମାନଙ୍କ ମଧ୍ୟରୁ କେହି ବା ମୁଁ ନିଜେ ସେ ଦିନ ଦେଖିବା ପାଇଁ ବଞ୍ଚି ନ ଥିବା—ଯେଉଁ ଦିନ ଆକାଶରେ ଭାସମାନ ମେଘମାଳା ବୁଦ୍ଧଦେବଙ୍କ ଗୂଢ଼ ନୀତିର ସୁମଧୁର ଶିଶିରବିନ୍ଦୁ ବର୍ଷଣ କରିବ ; କିନ୍ତୁ ତଥାପି ମୁଁ ମନେକରେ ଏହି ସମ୍ମାନାସ୍ପଦ ଯୁବକର ଉନ୍ନତ ଚରିତ୍ର ସର୍ବସମକ୍ଷରେ ପ୍ରତିଭାତ ହୋଇଉଠିବ ।"

ତତ୍ପରେ ଚିଂ-ସ୍ୟାନ-କୋଙ୍କ ବାଣୀ ସଫଳ ହେଲା ଓ ସର୍ବସମ୍ମତି-କ୍ରମେ ହୁଏନ୍ ସାଂ ଆଚାର୍ଯ୍ୟପଦରେ ନିଯୁକ୍ତ ହେଲେ । ସନ୍ନ୍ୟାସ ଧର୍ମ ଗ୍ରହଣ କରି ହୁଏନ୍ ସାଂ ଭ୍ରାତାଙ୍କ ସହ ମଠରେ ଅବସ୍ଥାନ କଲେ ।

---

## ଦୀକ୍ଷା-ଗ୍ରହଣ

ଏହି ସମୟରେ ଉକ୍ତ ମଠରେ କିଂ ନାମକ ଜଣେ ଧର୍ମାଧ୍ୟକ୍ଷ ବାସ କରୁଥିଲେ । ସେ ନିର୍ବାଣସୂତ୍ର ଆବୃତ୍ତି କରି ତାହାର ପ୍ରଚାର କାର୍ଯ୍ୟରେ ବ୍ରତୀ ହୋଇଥିଲେ । ହୁଏନ୍ ସାଂ ତାହାଙ୍କଠାରୁ ଉକ୍ତ ଗ୍ରନ୍ଥ ଗ୍ରହଣ କରି ଆହାର ନିଦ୍ରା ପରିତ୍ୟାଗପୂର୍ବକ ତାହା ଅଧ୍ୟୟନ କରିବାକୁ ଲାଗିଲେ । ପୁଣି ସେ ଆଚାର୍ଯ୍ୟ-ଶ୍ରେଷ୍ଠ ୟେନ୍ଙ୍କ ନିକଟରେ ମହାଯାନ-ସୂତ୍ର ନାମକ ଶାସ୍ତ୍ର ଅଧ୍ୟୟନ କଲେ । ଏହିପରି ତାହାଙ୍କ ଶିକ୍ଷାସ୍ପୃହା ଉତ୍ତରୋତ୍ତର ବୃଦ୍ଧି ପାଇବାକୁ ଲାଗିଲା । କେବଳ ଥରେ କୌଣସି ଗ୍ରନ୍ଥ

ଶୁଣିଯାଉଥିଲେ ସେ ତାହା ସମ୍ପୂର୍ଣ୍ଣରୂପେ ବୁଝି ପାରୁଥିଲେ ଓ ଦ୍ୱିତୀୟ ବାର ପଠନ ପରେ ଆଉ ତହିଁରେ ବୁଝିବାକୁ କିଛି ବାକୀ ରହୁ ନ ଥିଲା । ସେ ତାହା ଆମୂଳଚୂଳ ସ୍ମରଣ ରଖୁଥିଲେ । ବନ୍ଧୁବାନ୍ଧବମାନେ ତାହା ଦେଖି ବିସ୍ମୟାବିଷ୍ଟ ହେଉଥିଲେ ଓ ସେମାନଙ୍କ ଆଦେଶରେ ସେ ଧର୍ମୋପଦେଶ ବ୍ୟାଖ୍ୟାନ ସକାଶେ ବେଦିକା ଉପରେ ଆରୋହଣ କରି ଧର୍ମର ଗୂଢ ନୀତିସମୂହ ତନ୍ନ ତନ୍ନ କରି ଅତ୍ୟନ୍ତ ସୂକ୍ଷ୍ମ ଓ ବିଶଦ୍ ଭାବରେ ବ୍ୟାଖ୍ୟା କରୁଥିଲେ । ଉପସ୍ଥିତ ବନ୍ଧୁବାନ୍ଧବମାନେ ତାହାଙ୍କ ବ୍ୟାଖ୍ୟା ଅଭିନିବେଶ ସହକାରେ ଶ୍ରବଣ କରୁଥିଲେ । ଏହି ପ୍ରକାରରେ ହୁଏନ୍‌ସାଂ ତାହାଙ୍କ ଖ୍ୟାତିର ମୂଳଭିତ୍ତି ପ୍ରତିଷ୍ଠା କଲେ । ଏହି ସମୟରେ ତାହାଙ୍କ ବୟସ ତ୍ରୟୋଦଶ ବର୍ଷ ମାତ୍ର ଥିଲା ।

ଏହାର ଅଳ୍ପଦିନ ଉତ୍ତାରେ ଚୀନର ଶାସନକାରୀ ସୁଇ ବଂଶର ଉଚ୍ଛେଦ ହେଲା । ସମସ୍ତ ଦେଶ ଅରାଜକତାରେ ପୂର୍ଣ୍ଣ ହେଲା ଓ ରାଜଧାନୀ ଦସ୍ୟୁମାନଙ୍କର ଲୀଳାଭୂମି ହେଲା, ହୋ ଓ ଲୋ ନଦୀ ମଧ୍ୟସ୍ଥିତ ଭୂଖଣ୍ଡ ଶ୍ୱାପଦସଙ୍କୁଳ ହେଲା । ରାଜ-କର୍ମଚାରୀଗଣ ଓ ଧର୍ମ-ଯାଜକଗଣଙ୍କ ମଧ୍ୟରୁ କେତେକେ ନିହତ ହେଲେ ଏବଂ କେତେକେ ଦୂର ଦେଶକୁ ପଳାୟନ କଲେ; ରାଜପଥସମୂହ ମୃତ ଶରୀରର କଙ୍କାଳ ଓ ଅଟ୍ଟାଳିକାସମୂହର ଭଗ୍ନସ୍ତୂପରେ ପରିପୂର୍ଣ୍ଣ ହେଲା । ଚତୁର୍ଦ୍ଦିଗରେ ସଂହାର-ଲୀଳାର ବିଭୀଷିକାମୟ ଦୃଶ୍ୟାବଳୀ ସଂଘଟିତ ହେଉଥିଲା । ଦେଶ ଇତି-ପୂର୍ବରେ କେବେ ଏତାଦୃଶ ବିପଦର ସମ୍ମୁଖୀନ ହୋଇ ନ ଥିଲା । ହୁଏନ୍‌ସାଂ ଅଳ୍ପବୟସ୍କ ହେଲେ ହେଁ ଏହି ସମସ୍ତ ବିପଦ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କଲେ ଓ ଜ୍ୟେଷ୍ଠ ଭ୍ରାତାଙ୍କୁ ସମ୍ବୋଧନ କରି କହିଲେ, "ଏହି ନଗର ଆମ୍ଭମାନଙ୍କ ଆବାସ ଭୂମି ହେଲେ ହେଁ ଏ ଅବସ୍ଥାରେ ଆମ୍ଭେମାନେ କପରି ମୃତ୍ୟୁମୁଖରୁ ରକ୍ଷା ପାଇବା ? ମୁଁ ଶୁଣିଅଛି ଯେ, ଟ୍ୟାଂର ରାଜପୁତ୍ର ସନ୍-ୟ୍ୟାଂର ଲୋକଙ୍କୁ ଯୁଦ୍ଧରେ ପରାସ୍ତ କରି ସୁଂ-

ସ୍ଥାନରେ ସ୍ୱାଧିକାର ସ୍ଥାପନ କରିଅଛନ୍ତି । ଚୀନ ସାମ୍ରାଜ୍ୟ ତାହାଙ୍କ ଓ ଆମ୍ଭ ପିତାମାତାଙ୍କ ଉପରେ ଭରସା କରି ରହିଅଛି । ଚାଲ, ଆମ୍ଭେ ତୁମ୍ଭେ ସେଠାକୁ ଯିବା ।” ଜ୍ୟେଷ୍ଠଭ୍ରାତା ଏଥିରେ ସମ୍ମତି ପ୍ରଦାନ କଲେ ଓ ଉଭୟେ ଉକ୍ତ ସ୍ଥାନକୁ ଯାତ୍ରା କଲେ । ଏହା ୬୧୮ ଖ୍ରୀଷ୍ଟାବ୍ଦର କଥା । ଏହି ସମୟରେ ଦେଶରେ ନିୟମିତ ଶାସନପ୍ରଣାଳୀ ପ୍ରତିଷ୍ଠିତ ହୋଇ ନ ଥିଲା । ସୈନ୍ୟମାନେ ସର୍ବଦା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ରହିଥିଲେ । କନ୍‌ଫୁସିଅସ୍ ଓ ବୁଦ୍ଧଙ୍କ ଧର୍ମନୀତିସମୂହ ଲୋକେ ଭୁଲି ଯାଇଥିଲେ ଏବଂ ନିରନ୍ତର ଯୁଦ୍ଧରେ ବ୍ୟାପୃତ ହୋଇ ରହୁଥିଲେ । ରାଜଧାନୀରେ ଆଉ ଧର୍ମସମ୍ମିଳନୀର ଅଧିବେଶନ ହେଉ ନ ଥିଲା । ଏଥିରେ ହୁଏନ୍‌ସାଂ ତୀବ୍ର ମାନସିକ କଷ୍ଟ ଅନୁଭବ କଲେ ।

ସୁଇ ବଂଶର ଦ୍ୱିତୀୟ ସମ୍ରାଟ୍ ୟାଂ-ତି ତାହାଙ୍କ ରାଜତ୍ୱର ପ୍ରଥମ ବର୍ଷରେ ପୂର୍ବାଞ୍ଚଳର ରାଜଧାନୀରେ ଚାରିଗୋଟି ମଠ ସ୍ଥାପନ କରି ସେଠାରେ ରହିବା ପାଇଁ ସାମ୍ରାଜ୍ୟର ଭିନ୍ନ ଭିନ୍ନ ଅଞ୍ଚଳରୁ ପ୍ରସିଦ୍ଧ ଆଚାର୍ଯ୍ୟମାନଙ୍କୁ ଆହ୍ୱାନ କରିଥିଲେ । ନିମନ୍ତ୍ରଣ ପାଇ ଅନେକ ବିଜ୍ଞ ଓ ପ୍ରତିଭାଶାଳୀ ବ୍ୟକ୍ତି ସେଠାକୁ ଆଗମନ କଲେ । ସେମାନଙ୍କ ମଧ୍ୟରେ କାଂ-ଚୋ ଓ ସାଇସିନ୍ ନାମକ ଦୁଇ ଜଣ ଧର୍ମାଚାର୍ଯ୍ୟ ସର୍ବପ୍ରଧାନ । ତାଙ୍କ ରାଜତ୍ୱର ଅନ୍ତିମ ବର୍ଷରେ ଅରାଜକତା ଓ ଶସ୍ୟହାନି ଘଟିଥିଲା । ସୁତରାଂ ବହୁସଂଖ୍ୟକ ଲୋକ ଦେଶ ତ୍ୟାଗ କରି ଉତ୍ତର-ପଶ୍ଚିମ ଓ ଦକ୍ଷିଣ-ପଶ୍ଚିମାଞ୍ଚଳସ୍ଥ ସିନ୍ ଓ ଶୁ-ପ୍ରଦେଶକୁ ପଳାୟନ କଲେ । ସେମାନଙ୍କ ସହିତ ଉପର୍ଯ୍ୟୁକ୍ତ ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରୁ ବହୁସଂଖ୍ୟକ ଆଚାର୍ଯ୍ୟ ମଠ ତ୍ୟାଗ କଲେ ।

ଏହା ଦେଖି ହୁଏନ୍‌ସାଂ ଜ୍ୟେଷ୍ଠ ଭ୍ରାତାଙ୍କୁ କହିଲେ, “ଏଠାରେ ଧର୍ମକାର୍ଯ୍ୟ ସମ୍ପାଦନ ସକାଶେ କିଛି ନାହିଁ । ତେବେ ଆମ୍ଭେମାନେ

ଅଳସ ଜୀବନ ଯାପନ କରିବା ? ଚାଲ, ଆମ୍ଭେମାନେ ମଧ୍ଯ ଶୁ-ପ୍ରଦେଶକୁ ଚାଲିଯାଇ ସେଠାରେ ଧର୍ମଶାସ୍ତ୍ର ଆଲୋଚନା କରିବା ।”

ଏଥିରେ ଜ୍ୟେଷ୍ଠଭ୍ରାତା ସମ୍ମତ ହେଲେ ଏବଂ ତତ୍ପରେ ଦୁହେଁ ବହୁ ପ୍ରଦେଶ ଭ୍ରମଣ କରି ପରିଶେଷରେ ହ୍ୱାଂ-ଚୁ ନାମକ ସ୍ଥାନରେ ଉପନୀତ ହେଲେ । ସେହି ସ୍ଥାନର ମଠରେ କାଂ ଓ କାଂ ନାମକ ଦୁଇ ଜଣ ପ୍ରସିଦ୍ଧ ପଣ୍ଡିତଙ୍କ ସହିତ ଦୁଇ ଭାଇଙ୍କର ଦେଖା ହୋଇଥିଲା । ସେମାନଙ୍କ ଦର୍ଶନରେ ଉଭୟଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ବିଗଳିତ ହେଲା । ମାସାଧିକ କାଳ ସେମାନଙ୍କ ସଙ୍ଗେ ଅବସ୍ଥାନ କରି ସେମାନେ ଧର୍ମୋପଦେଶ ପ୍ରାପ୍ତ ହେଲେ ଓ ତତ୍ପରେ ସେଠାରୁ ସିଂ-ଟୁ ନଗରକୁ ଚାଲିଗଲେ । ସେଠାରେ ବହୁସଂଖ୍ୟକ ପଣ୍ଡିତଙ୍କୁ ଦର୍ଶନ କରି ସେମାନଙ୍କର ଏକ ସମ୍ମିଳନୀ ସ୍ଥାପନ କଲେ । କହିବା ବାହୁଲ୍ୟ ଯେ, ପୂର୍ବୋକ୍ତ ଧର୍ମାଚାର୍ଯ୍ୟ କାଂ-ଟୁ ଓ ସାଇସିନ୍ ମଧ୍ୟ ଏହି ସ୍ଥାନରେ ଅବସ୍ଥାନ କରୁଥିଲେ । ଉଭୟ ଭ୍ରାତା ଏଠାରେ ସାଇସିନ୍‌ଙ୍କ ମୁଖରୁ ମହାଯାନ ସମ୍ପରିଗ୍ରହ ଶାସ୍ତ୍ର (ଶି-ଲୁନ୍), ଅଭିଧର୍ମଶାସ୍ତ୍ର (ପି-ଟ୍ୟାନ୍) ଏବଂ ଧର୍ମାଚାର୍ଯ୍ୟ ଚନ୍‌ଙ୍କ ମୁଖରୁ କାତ୍ୟାୟନଙ୍କ ଗ୍ରନ୍ଥସମୂହର ବିଶଦ୍-ବ୍ୟାଖ୍ୟା ଶ୍ରବଣ କଲେ । ଏହିପ୍ରକାରେ ପ୍ରଗାଢ଼ ଅଧ୍ୟବସାୟ ସହକାରେ ଦୁଇ ତିନି ବର୍ଷ ମଧ୍ୟରେ ହୁଏନ୍‌ସାଂ ନାନା ଶାସ୍ତ୍ର ଅଧ୍ୟୟନ କରି ସେ ସମସ୍ତ ଆୟତ୍ତ କଲେ ।

---

## ଚୀନ ସାମ୍ରାଜ୍ୟରେ ଦୁର୍ଭିକ୍ଷ ଓ ଅରାଜକତା

ଏହି ସମୟରେ ସାମ୍ରାଜ୍ୟବ୍ୟାପୀ ଭୟଙ୍କର ଦୁର୍ଭିକ୍ଷ ଉପସ୍ଥିତ ହେଲା ! ସଙ୍ଗେ ସଙ୍ଗେ ଅରାଜକତା ଦେଶକୁ ଶାନ୍ତିଶୂନ୍ୟ କରି ପକାଇଲା । କେବଳ ଶୁ-ପ୍ରଦେଶ ଏଥିରୁ ରକ୍ଷା ପାଇଥିଲା । ସେଠାରେ

ଶସ୍ୟ ଓ ଶାନ୍ତିର ଅଭାବ ନ ଥିଲା । ତେଣୁ ସାମ୍ରାଜ୍ୟର ବିଭିନ୍ନାଞ୍ଚଳରୁ ଶତ ଶତ ଧର୍ମାଚାର୍ଯ୍ୟ ଏହି ସ୍ଥାନର ମଠରେ ଆଶ୍ରୟ ଗ୍ରହଣ କରିଥିଲେ । ହୁଏନ୍ ସାଂ ତାଙ୍କ ବିଚକ୍ଷଣ ପ୍ରତିଭା ଓ ଗଭୀର ଶାସ୍ତ୍ରଜ୍ଞାନ ପ୍ରଭାବରେ ସେମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କଲେ । ଶାସ୍ତ୍ରାଲୋଚନାରେ ତାଙ୍କ ସମକକ୍ଷ ଅନ୍ୟ କେହି ନ ଥିଲେ । ତାହାଙ୍କ ଶାସ୍ତ୍ର-ବ୍ୟାଖ୍ୟାନ ଶ୍ରବଣ କରିବା ସକାଶେ ବହୁ ଦୂରରୁ ବୃଦ୍ଧ ପଣ୍ଡିତମାନେ ଆସି ସମବେତ ହେଉଥିଲେ ଏବଂ ତାଙ୍କ ଶାସ୍ତ୍ରଜ୍ଞାନ ଓ ତର୍କ-କୌଶଳରେ ମୁଗ୍ଧ ହେଉଥିଲେ ।

ଦୁଇ ଭାଇ ଖିଂ-ତୁଙ୍ଗ ହୁଂ-ହୁଇ ମଠରେ ଆଶ୍ରୟ ଗ୍ରହଣ କରିଥିଲେ । ହୁଏନ୍‌ସାଂଙ୍କ ଜ୍ୟେଷ୍ଠଭ୍ରାତା ମଧ୍ୟ ଋଷିପ୍ରତିମ, ରୂପବାନ୍ ଓ ପିତାଙ୍କ ତୁଲ୍ୟ ନିର୍ମଳ ଚରିତ୍ର ଏବଂ ଉନ୍ନତ ସ୍ୱଭାବସମ୍ପନ୍ନ ଥିଲେ । ବୌଦ୍ଧ ଧର୍ମ-ଗ୍ରନ୍ଥମାନଙ୍କରେ ସେ ମଧ୍ୟ ଅଶେଷ ପ୍ରବୀଣତା ଲାଭ କରିଥିଲେ ଏବଂ ନିର୍ବାଣସୂତ୍ର ଓ ଅଭିଧର୍ମ ଶାସ୍ତ୍ର ପ୍ରଚାରରେ ଅଧିକ ସମୟ ଯାପନ କରୁଥିଲେ । ସାହିତ୍ୟ ଓ ଇତିହାସରେ ମଧ୍ୟ ସେ ବିଜ୍ଞତା ଅର୍ଜନ କରିଥିଲେ । ଶୁ-ପ୍ରଦେଶର ଅଧିବାସୀମାନେ ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ ଏବଂ ସ୍ୱୟଂ ସାନ୍-କୁଂ ପ୍ରଦେଶର ଶାସନକର୍ତ୍ତା ମଧ୍ୟ ତାଙ୍କୁ ଅତ୍ୟନ୍ତ ସମ୍ମାନ କରୁଥିଲେ । ବସ୍ତୁତଃ ଶାସ୍ତ୍ରାଲୋଚନା ଓ ବ୍ୟାଖ୍ୟାନ ପ୍ରଭୃତି କୌଣସି ବିଷୟରେ ସେ କନିଷ୍ଠ ଭ୍ରାତା ହୁଏନ୍ ସାଂଙ୍କଠାରୁ ନ୍ୟୂନ ଥିଲେ ବୋଲି କୁହାଯାଇ ନ ପାରେ ।

କିନ୍ତୁ ହୁଏନ୍ ସାଂ ଜ୍ୟେଷ୍ଠ ଭ୍ରାତାଙ୍କ ଅପେକ୍ଷା ଅଧିକ ଗମ୍ଭୀର ଓ ଉନ୍ନତ ସ୍ୱଭାବବିଶିଷ୍ଟ ଥିଲେ । ସେ ନିର୍ଜନରେ ଓ ସାଂସାରିକ ବିଷୟା-ସକ୍ତିରୁ ସର୍ବଦା ଦୂରରେ ରହୁଥିଲେ । ସେ ଅଷ୍ଟସ୍ୱର୍ଗ ଭ୍ରମଣ ଓ ପ୍ରକୃତିର ନିଗୂଢ଼ ରହସ୍ୟସମୂହ ଭେଦ କରିଥିଲେ । ଏ ସମସ୍ତ

ବିଷୟରେ ତାହାଙ୍କର ଆକାଙ୍କ୍ଷା ଏତେ ବଳବତୀ ଥିଲା ଯେ, ସେ ପୂର୍ବତନ ଋଷିମାନଙ୍କ ନୀତିର ତାତ୍ପର୍ଯ୍ୟକୁ ସମ୍ୟକ୍ ଅନୁଶୀଳନ କରିବା ପାଇଁ ସର୍ବଦା ଚେଷ୍ଟା କରୁଥିଲେ । ଲୁପ୍ତ ରତ୍ନୋଦ୍ଧାର ଓ ଜନ-ସମାଜରେ ଧର୍ମନୀତିର ପୁନଃପ୍ରତିଷ୍ଠା ତାହାଙ୍କ ଜୀବନର ବ୍ରତ ହୋଇଥିଲା । ସେ ପାଣି, ପବନ, ବଣ ଜଙ୍ଗଲ, ସୁଖଦୁଃଖ ନ ମାନି ସ୍ୱୟଂ ସମ୍ରାଟଙ୍କ ସମ୍ମୁଖରେ ସୁଦ୍ଧା ସାହସ ଓ ଦୃଢ଼ତାସହକାରେ ସ୍ୱକାର୍ଯ୍ୟ ସମ୍ପାଦନ କରିବାରେ ତିଳେ ମାତ୍ର ପଶ୍ଚାତ୍ପଦ ହେଉ ନ ଥିଲେ । ଏହି ଗୁଣରେ ସେ ଜ୍ୟେଷ୍ଠଭ୍ରାତାଙ୍କ ଅପେକ୍ଷା ଅଧିକତର ଅଗ୍ରଗାମୀ ଥିଲେ । କିନ୍ତୁ ଉଭୟ ଭ୍ରାତା ଅନନ୍ୟସାଧାରଣ ପ୍ରତିଭା, ପ୍ରକୃତିମାଧୁର୍ଯ୍ୟ ଓ ପବିତ୍ର ଚରିତ୍ରବତ୍ତାଦ୍ୱାରା ତତ୍କାଳୀନ ସମାଜର ଭୂଷଣସ୍ୱରୂପ ଥିଲେ ।

---

## ଶିଂ-ଟୁ ତ୍ୟାଗ

ହୁଏନ୍ ସାଂଙ୍କ ବିଂଶବର୍ଷ ବୟଃକ୍ରମ ସମୟରେ ସେ ଶିଂ-ଟୁ ମଠରେ ସୁପ୍ରତିଷ୍ଠିତ ହୋଇ ରହିଥିଲେ । ଏହି ବର୍ଷର ବର୍ଷା ଋତୁରେ ସେ 'ବିନୟ'ନାମକ ଗ୍ରନ୍ଥ ଅଧ୍ୟୟନ କଲେ ଓ ତାକୁ ସମ୍ପୂର୍ଣ୍ଣରୂପେ ଆୟତ୍ତ କରି ଗ୍ରନ୍ଥର ମୂଳସୂତ୍ର ଆଲୋଚନା କରିବାକୁ ଲାଗିଲେ । ତତ୍ପରେ ସେ କେତେକ ସନ୍ଦେହ ମୋଚନାର୍ଥେ ବିଖ୍ୟାତ ପଣ୍ଡିତମାନଙ୍କ ସହିତ ସାକ୍ଷାତ୍ କରିବା ସକାଶେ ରାଜଧାନୀକୁ ଯିବା ପାଇଁ ଇଚ୍ଛା କଲେ ; ମାତ୍ର ଏଥିରେ ତାହାଙ୍କ ଜ୍ୟେଷ୍ଠଭ୍ରାତା ବାଧା ଦେବାରୁ ସେ ଗୋପନରେ ଏକ ବାଣିଜ୍ୟ-ପୋତରେ ବଣିକମାନଙ୍କ ସହିତ ଯାତ୍ରା କରି ହ୍ୟାଂ-ଚ୍ୱେସ୍ଥିତ ଟିନ୍-ହାଂ ନାମକ ମଠରେ ଉପସ୍ଥିତ ହେଲେ । ଏହି ମଠର ଅଧ୍ୟକ୍ଷମାନେ ବହୁଦିନରୁ ତାହାଙ୍କ ନାମ ଶୁଣିଥିଲେ । ବର୍ତ୍ତମାନ ତାଙ୍କୁ ସମ୍ମୁଖରେ ପାଇ ତାଙ୍କ ମୁଖରୁ ଭିନ୍ନ

ଭିନ୍ନ ଶାସ୍ତ୍ରର ବ୍ୟାଖ୍ୟା ଶ୍ରବଣ କରିବା ପାଇଁ ଇଚ୍ଛା ପ୍ରକାଶ କଲେ । ଏହି ସ୍ଥାନରେ ହୁଏନସାଂ ମହାଯାନ ସମ୍ପରିଗ୍ରହ ଓ ଅଭିଧର୍ମ୍ମ ଶାସ୍ତ୍ରର ବ୍ୟାଖ୍ୟାରେ ଅଗ୍ରୁଯିମଣ୍ଡଳୀଙ୍କୁ ଆପ୍ୟାୟିତ କଲେ । ଗ୍ରୀଷ୍ମକାଳରୁ ଶୀତକାଳ ପର୍ଯ୍ୟନ୍ତ ଏକାଦିକ୍ରମେ ତିନି ଥର ସେ ଏହି ଶାସ୍ତ୍ରସମୂହର ଆଲୋଚନା କରିଥିଲେ । ଏହି ସମୟରେ ହିନ୍‌ୟୁଂର ନରପତି ସ୍ୱକୀୟ ନିର୍ମଳ ଚରିତ ଓ ପ୍ରକୃତି-ରଞ୍ଜନଦ୍ୱାରା ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲେ । ହୁଏନ୍‌ସାଂଙ୍କ ଆଗମନ-ବାର୍ତ୍ତା ଶ୍ରବଣ କରି ସେ ଉତ୍‌ଫୁଲ୍ଲ ହୃଦୟରେ ତାହାଙ୍କୁ ଅଭିନନ୍ଦନ କରିବା ସକାଶେ ସ୍ୱୟଂ ତାହାଙ୍କ ନିକଟକୁ ଗମନ କଲେ । ଯେଉଁ ଦିନ ହୁଏନ୍‌ସାଂ ଶାସ୍ତ୍ର-ବ୍ୟାଖ୍ୟାନ ଆରମ୍ଭ କଲେ, ସେଦିନ ରାଜା, ପାରିଷଦବର୍ଗ, ବହୁସଂଖ୍ୟକ ଅଗ୍ରୁଯି ଓ ଶ୍ରୋତା ତାହା ଶ୍ରବଣ କରିବା ପାଇଁ ଏବଂ ତାହାଙ୍କୁ ଦର୍ଶନ କରିବା ପାଇଁ ସେଠାରେ ସମବେତ ହୋଇଥିଲେ । ଏକ ବର୍ଷରେ ଆଲୋଚନା ସାଙ୍ଗ ହେଲା ଉତାରୁ ଦର୍ଶକମଣ୍ଡଳୀରୁ ଅନେକେ ହୁଏନ୍‌ସାଂଙ୍କୁ ବହୁବିଧ ପ୍ରଶ୍ନ ପଚାରିଲେ ଓ ସେ ପ୍ରତ୍ୟେକ ପ୍ରଶ୍ନର ଉପଯୁକ୍ତ ଉତ୍ତର ପ୍ରଦାନ କରି ସମସ୍ତଙ୍କୁ ସନ୍ତୋଷ ପ୍ରଦାନ କଲେ । ସମସ୍ତେ ଏକବାକ୍ୟରେ ସ୍ୱୀକାର କଲେ ଯେ, ଶାସ୍ତ୍ରଜ୍ଞାନ ଓ ତର୍କରେ କେହି ତାହାଙ୍କର ସମକକ୍ଷ ନୁହନ୍ତି । ପଣ୍ଡିତମାନେ ଜୟଲାଭ କରି ନ ପାରି କ୍ଷୁଣ୍ଣ ମନରେ ସେଠାରୁ ପ୍ରତ୍ୟାବର୍ତ୍ତନ କଲେ । ରାଜାଙ୍କ ମୁଖରେ ହୁଏନ୍‌ସାଂଙ୍କ ପ୍ରଶଂସାର ସୀମା ରହିଲା ନାହିଁ । ସେ ତାହାଙ୍କୁ ବହୁ ଉପହାର ଯାଚିଲେ । କିନ୍ତୁ ହୁଏନ୍‌ସାଂ ସମସ୍ତ ପ୍ରତ୍ୟାଖ୍ୟାନ କଲେ । ଏହି ସ୍ଥାନର କାର୍ଯ୍ୟ ନିଷ୍ପନ୍ନ କରି ଅନ୍ୟର ବଙ୍ଗ ପଣ୍ଡିତମାନଙ୍କଠାରୁ ଜ୍ଞାନାର୍ଜ୍ଜନ କରିବା ଉଦ୍ଦେଶ୍ୟରେ ସେ ଉତ୍ତରାଞ୍ଚଳକୁ ଯାତ୍ରା କଲେ । ସାଂ-ଚ୍ୱେ ନାମକ ସ୍ଥାନରେ ଉପସ୍ଥିତ ହୋଇ ସେ ହୁଇ ନାମକ ଧର୍ମ୍ମାଧ୍ୟକ୍ଷଙ୍କ ସମ୍ମୁଖରେ ନିଜର କେତେକ ସନ୍ଦେହ ଉପସ୍ଥାପିତ କଲେ ଓ ସେ ସମସ୍ତ ମୋଚନ

ସକାଶେ ତାହାଙ୍କୁ ଅନୁରୋଧ କଲେ । ତତ୍ପରେ ସେ ଚୂ-ଚୌ ନାମକ ସ୍ଥାନକୁ ଗମନ କରି ଧର୍ମାଧ୍ୟକ୍ଷ ଶିନ୍‌ଙ୍କଠାରୁ ସତ୍ୟସିଦ୍ଧି ବ୍ୟାକରଣ ଶାସ୍ତ୍ର ଅଧ୍ୟୟନ କଲେ । ଏହି ସ୍ଥାନରୁ ଯାଇ ସେ ସୁଂ-ଆନ ପ୍ରଦେଶସ୍ଥ ମହାବୋଧି (ଝୀ-ହୁଓ) ମଠରେ ଅବସ୍ଥାନ କଲେ ଓ ସେଠାରେ ଯୌ ନାମକ ଆଚାର୍ଯ୍ୟଙ୍କ ନିକଟରେ କୋଷଶାସ୍ତ୍ର ଅଧ୍ୟୟନ କଲେ । ଥରେ ମାତ୍ର ପାଠ କରି ସେ ଏହି ଶାସ୍ତ୍ର କଣ୍ଠସ୍ଥ ଓ ଆୟତ୍ତ କରି ପକାଇଲେ । ତାହାଙ୍କର ଏତାଦୃଶ ଶକ୍ତି ସନ୍ଦର୍ଶନରେ ଆବାଳ-ବୃଦ୍ଧବନିତା ସମସ୍ତେ ଅବାକ୍ ହୋଇ ତାହାଙ୍କ ପ୍ରତିଭାର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ଯେଉଁ ଯେଉଁ ଅଂଶର ଅର୍ଥ ବୃଦ୍ଧ ପଣ୍ଡିତମାନଙ୍କର ସୁଦ୍ଧା ବୋଧଗମ୍ୟ ହେଉ ନ ଥିଲା, ହୁଏନ୍‌ସାଂ ଅତି ସହଜରେ ତହିଁର ମୀମାଂସା କରିଦେଉଥିଲେ ।

ଏହି ସମୟରେ ସୁଂ-ଆନରେ ଶାଂ ଓ ପିନ୍ ନାମରେ ଦୁଇ ଜଣ ଆଚାର୍ଯ୍ୟ ଅବସ୍ଥାନ କରୁଥିଲେ ଏବଂ ରାଜଧାନୀରେ ସେମାନେ ଧର୍ମାଧ୍ୟକ୍ଷ ଆସନ ଗ୍ରହଣ କରିଥିଲେ । ସେମାନେ ସମ୍ପୂର୍ଣ୍ଣରୂପେ ବୌଦ୍ଧଧର୍ମର ଉଭୟ ଯାନ, ତିନି ପ୍ରକରଣର ଗବେଷଣା ଓ ଅନୁଶୀଳନ କରିଥିଲେ । ଧର୍ମସମ୍ପ୍ରଦାୟ ଓ ସାଧାରଣ ଲୋକ-ସମାଜ ଧର୍ମଶାସ୍ତ୍ର ଶ୍ରବଣ କରିବା ପାଇଁ ସେମାନଙ୍କ ଶରଣାପନ୍ନ ହେଉଥିଲେ । ସମଗ୍ର ପ୍ରଦେଶ ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସେମାନଙ୍କ ପ୍ରଶଂସା-ବାକ୍ୟରେ ମୁଖରିତ ହେଉଥିଲା ଏବଂ ସମୁଦ୍ରର ଅପର ପାର୍ଶ୍ୱ ପର୍ଯ୍ୟନ୍ତ ସେମାନଙ୍କ ଯଶୋରାଶି ବିସ୍ତୃତ ହୋଇଥିଲା । ଆକାଶରେ ଯେତେ ମେଘ ଦେଖାଯାଆନ୍ତି, ସେମାନଙ୍କ ଶିଷ୍ୟସଂଖ୍ୟା ତାହାଠାରୁ ଅଧିକ ଥିଲା । ସେମାନେ ସମସ୍ତ ଶାସ୍ତ୍ର ଆୟତ୍ତ କରିଥିଲେ ହେଁ ଶି-ତା-ଲୁନ୍ ( ମହାଯାନ ସମ୍ପରିଗ୍ରହ ଶାସ୍ତ୍ର ) ଆଲୋଚନା କରିବାକୁ ସେମାନଙ୍କୁ ଭଲ ଲାଗୁ ନ ଥିଲା । ହୁଏନ୍‌ସାଂଙ୍କ ଖ୍ୟାତି ଉ ଓ ଶୁ-

ପ୍ରଦେଶରେ ସମ୍ୟକ୍ ବିସ୍ତୃତ ଲାଭ କରିଥିଲା ; ତଥାପି ସେ ଝୁଂ-ଆନରେ ପଦାର୍ପଣ କଲା ସମୟରୁ ଏହି ଆଚାର୍ଯ୍ୟପ୍ରିୟଙ୍କ ପଦଦେଶରେ ଉପବେଶନପୂର୍ବକ ଶାସ୍ତ୍ର-ବ୍ୟାଖ୍ୟାନ ଶ୍ରବଣ କରି ଓ ବାରମ୍ବାର ତାହାର ଗୂଢ଼ ନୀତିସମୂହର ରହସ୍ୟ ସମ୍ବନ୍ଧରେ ପ୍ରଶ୍ନମାନ ଜିଜ୍ଞାସା କରି ସମସ୍ତ ସନ୍ଦେହ ମୋଚନ କଲେ । ହୁଏନ୍‌ସାଂଙ୍କ ଗୁଣରେ ସେମାନେ ଏତେ ବିମୁଗ୍ଧ ହୋଇଥିଲେ ଯେ, ଦିନେ ତାଙ୍କୁ ପ୍ରଶଂସା-ଗଦ୍‌ଗଦ ହୃଦୟରେ ସମ୍ବୋଧନ କରି କହିଲେ, "ବତ୍ସ, ତୁମ୍ଭେ ଦିନକରେ ବହୁଦୂରଗାମୀ ଶାକ୍ୟ-ଧର୍ମ-ଦୂତପଦବାଚ୍ୟ ହୋଇଅଛ ଏବଂ ପୃଥିବୀରେ ଜ୍ଞାନ-ସୂର୍ଯ୍ୟର ବିମଳ କିରଣ ବିକୀରଣ କରିବା ନିମନ୍ତେ ଅବତୀର୍ଣ୍ଣ ହୋଇଅଛ । ଆମ୍ଭେମାନେ ବର୍ତ୍ତମାନ ବାର୍ଦ୍ଧକ୍ୟରେ ଉପସ୍ଥିତ ହୋଇଅଛୁଁ । ଦୁଃଖର ବିଷୟ, ସେ ଦିନ ଦେଖିବା ଆମ୍ଭମାନଙ୍କ ଭାଗ୍ୟରେ ନାହିଁ ।" ସେହି ଦିନଠାରୁ ମଠର ଶିଷ୍ୟ ଓ ଅଧିବାସିବର୍ଗ ତାହାଙ୍କୁ ଅତ୍ୟନ୍ତ ସମ୍ମାନ କରିବାକୁ ଲାଗିଲେ ଓ ସମସ୍ତ ରାଜଧାନୀ ତାହାଙ୍କ ଯଶୋଗାନରେ ପୂର୍ଣ୍ଣ ହୋଇଗଲା ।

---

## ପଶ୍ଚିମ ଭୂଖଣ୍ଡ-ଯାତ୍ରା

ତତ୍ପରେ ହୁଏନ୍‌ସାଂ ଅନ୍ୟାନ୍ୟ ଧର୍ମାଚାର୍ଯ୍ୟଙ୍କ ସମ୍ବାଦ ପାଇଲା ମାତ୍ରେ ସେମାନଙ୍କ ସଙ୍ଗେ ଦେଖା କରି ଅଗ୍ରହସହକାରେ ସେମାନଙ୍କ ମୁଖନିଃସୃତ ଧର୍ମନୀତିପୂର୍ଣ୍ଣ ବାକ୍ୟସମୂହ ଶ୍ରବଣ ଓ ପରୀକ୍ଷାପୂର୍ବକ ସେ ସବୁକୁ ହୃଦ୍‌ଗତ କରୁଥିଲେ; କିନ୍ତୁ ସମ୍ୟକ୍ ପରୀକ୍ଷା ଉତ୍ତାରେ ସେ ଦେଖିଲେ ଯେ, ଆଚାର୍ଯ୍ୟ ଓ ଶିଷ୍ୟବର୍ଗ ନିଜ ନିଜ ସମ୍ପ୍ରଦାୟ-ପ୍ରତିପାଦିତ ନୀତିସମୂହ ଅନୁସରଣ କରୁଥିଲେ ସୁଦ୍ଧା ଭିନ୍ନ ଭିନ୍ନ ସମ୍ପ୍ରଦାୟର ନୀତି ଓ ଧର୍ମଗ୍ରନ୍ଥରେ ବିଶେଷ ପାର୍ଥକ୍ୟ ବିଦ୍ୟମାନ ରହିଅଛି । ସୁତରାଂ

କେଉଁ ଗ୍ରନ୍ଥ ଭ୍ରମପ୍ରମାଦଶୂନ୍ୟ—ଏ ବିଷୟରେ ତାଙ୍କର ଘୋର ସନ୍ଦେହ ଜାତ ହେଲା । ଏହି ହେତୁ ସେ ଏ ସମସ୍ତ ସନ୍ଦେହ ମୋଚନାର୍ଥେ ପଶ୍ଚିମ ଭୂଖଣ୍ଡକୁ ଯାତ୍ରା କରିବା ପାଇଁ ସଙ୍କଳ୍ପ କଲେ । ଶି-ଟି-ଚି-ଲୁନ୍ ( ସପ୍ତଦଶ ଭୂମିଶାସ୍ତ୍ର ) ନାମକ ଗ୍ରନ୍ଥର ଅନେକାଂଶରେ ତାହାଙ୍କର ସନ୍ଦେହ ଥିବାରୁ ସେ ଏହି ଗ୍ରନ୍ଥ ସର୍ବଦା ନିଜ ସଙ୍ଗରେ ଘେନି ଯାଉଥିଲେ । ଏହି ଗ୍ରନ୍ଥ ବର୍ତ୍ତିମାନ ୟୁ-କ୍ୟା-ସେ-ଚି-ଲୁନ୍ ( ଯୋଗାଚାର୍ଯ୍ୟ ଭୂମିଶାସ୍ତ୍ର ) -ନାମରେ ଅଭିହିତ । ଏକଦା ସେ କହିଥିଲେ—"ନିଜର ତଥା ମାନବ-ସମାଜର ଉପକାରାର୍ଥେ ଫାହିଆନ୍ ଓ ଚି-ୟେନ୍ ପ୍ରଭୃତି ଋଷିବୃନ୍ଦ ଇତିପୂର୍ବେ ସତ୍ୟାନୁସନ୍ଧାନରେ ସମର୍ଥ ହୋଇଥିଲେ । ସେମାନଙ୍କ ପବିତ୍ର ପଦାଙ୍କ ଅନୁସରଣ କରିବା ଏବଂ ସେମାନଙ୍କ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଓ ନିଷ୍କଳଙ୍କ ଚରିତ୍ର ଭବିଷ୍ୟତ୍ ବଂଶଧରଙ୍କ ସକାଶେ ରକ୍ଷା କରିବା କି ମୋର କର୍ତ୍ତବ୍ୟ ନୁହେ ? ମହାଜନମାନଙ୍କ ପଦାଙ୍କ ଅନୁସରଣ କରିବା ହିଁ ପ୍ରତ୍ୟେକ ଲୋକ-ଶିକ୍ଷକର କଠୋର କର୍ତ୍ତବ୍ୟ ହେବା ଉଚିତ ।"

ଏ ସମସ୍ତ ବିଷୟ ଭାବନା କରି ହୁଏନ୍‌ସାଂ କେତେକ ଲୋକଙ୍କ ସହିତ ପଶ୍ଚିମ ଭୂଖଣ୍ଡକୁ ଯାତ୍ରା କରିବା ସକାଶେ ସମ୍ରାଟଙ୍କ ଅନୁମତି ପ୍ରାର୍ଥନା କରିବା ପାଇଁ ସଙ୍କଳ୍ପ କଲେ; କିନ୍ତୁ ସେହି ସମୟରେ ତାଙ୍କ ଦେଶରେ ସମ୍ରାଟଙ୍କ ବିଦେଶଯାତ୍ରା ନିଷେଧାଜ୍ଞା ପ୍ରଚଳିତ ହୋଇଥିଲା । ସୁତରାଂ କେହି ତାଙ୍କର ଏହି ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । କିନ୍ତୁ ହୁଏନ୍‌ସାଂ ତାଙ୍କ ସଙ୍କଳ୍ପ ପରିତ୍ୟାଗ ନ କରି ଏକାକୀ ଯିବା ପାଇଁ ସ୍ଥିର କଲେ । ପରେ ସେ ଶୁଣିଲେ ଯେ, ପଶ୍ଚିମ ଭୂଖଣ୍ଡକୁ ଯିବାର ପଥ-ସମୂହ ଅତ୍ୟନ୍ତ ଦୁର୍ଗମ ଓ ବିପତ୍ସଙ୍କୁଳ । କିନ୍ତୁ ଜୀବନର ଉଦ୍ଦେଶ୍ୟ ସିଦ୍ଧି ସକାଶେ ସେ ସମସ୍ତ ବାଧାବିଘ୍ନ ଓ ବିପଦର ଭୟଙ୍କର ଚିତ୍ର ତାଙ୍କ ସ୍ଥିରସଙ୍କଳ୍ପରୁ ତିଳେ ମାତ୍ର ବିଚଳିତ କରି ପାରିଲା ନାହିଁ । ତତ୍ପରେ

ସେ ଗୋଟିଏ ମଠକୁ ଯାଇ ମଠାଧ୍ୟକ୍ଷ ଓ ଶିଷ୍ୟବର୍ଗଙ୍କୁ ତାହାଙ୍କ ସଙ୍କଳ୍ପ ଜ୍ଞାପନ କଲେ ଏବଂ ସେମାନଙ୍କ ପବିତ୍ର ପ୍ରଭାବ ବଳରେ ତାହାଙ୍କ ତୀର୍ଥଯାତ୍ରା ଓ ପ୍ରତ୍ୟାବର୍ତ୍ତନକୁ ଶୁଭମୟ ଓ ନିରାପଦ କରିବା ସକାଶେ ସନିର୍ବନ୍ଧ ପ୍ରାର୍ଥନା କଲେ ।

## ମାତାଙ୍କ ସ୍ୱପ୍ନ-ଦର୍ଶନ

ହୁଏନ୍‌ସାଂଙ୍କ ଜନ୍ମାବସରେ ତାହାଙ୍କ ଜନନୀ ଗୋଟିଏ ସ୍ୱପ୍ନ ଦେଖିଥିଲେ ଯେ, ପୁତ୍ର ଶୁକ୍ଳାମ୍ବର ଧାରଣ କରି ପଶ୍ଚିମ ଭୂଖଣ୍ଡକୁ ଚାଲି ଯାଉଅଛି ଓ ଜନନୀ ତାହାକୁ ପଚାରୁଅଛନ୍ତି, "ତୁ ତ ମୋ ପୁଅ ଜନ୍ମ ହେଲୁ, କେଉଁ ଆଡକୁ ଯାଉଅଛୁ ?" ପୁତ୍ର ଉତ୍ତର କଲେ, "ମୁଁ ତତ୍ତ୍ୱାନୁସନ୍ଧାନ ଉଦ୍ଦେଶ୍ୟରେ ଯାଉଅଛି ।" ଏହା ହିଁ ହୁଏନ୍‌ସାଂଙ୍କ ବିଦେଶ-ଯାତ୍ରାର ପ୍ରଥମ ସୂଚନା ।

୬୩୦ ଖ୍ରୀଷ୍ଟାବ୍ଦରେ ସେ ଯାତ୍ରା ସକାଶେ ପ୍ରସ୍ତୁତ ହେଲେ । ଦିନେ ସେ ରାତିରେ ସ୍ୱପ୍ନରେ ଦେଖିଲେ ଯେ, ସୁବିସ୍ତୀର୍ଣ୍ଣ ସମୁଦ୍ର ମଧ୍ୟରେ ସୁମେରୁ ପର୍ବତ ବିବିଧ ରତ୍ନମଣ୍ଡିତ ହୋଇ ଅତ୍ୟୁନ୍ନତ ଉଜ୍ଜ୍ୱଳ ମସ୍ତକ ଉତ୍ତୋଳନ କରି ରହିଅଛି । ସେ ପର୍ବତାରୋହଣ କରିବା ପାଇଁ ଇଚ୍ଛା କରୁଅଛନ୍ତି । ମୁହୂର୍ତ୍ତିକ ମଧ୍ୟରେ ଉତ୍ତାଳ ତରଙ୍ଗମାଳା ଭୀଷଣ ଗର୍ଜ୍ଜନସହକାରେ ପର୍ବତକୁ ବେଷ୍ଟନ କରି ପକାଇଲା । ସେଠାରେ ପୋତ ଅବା ନୌକା ନ ଥିଲା; ତଥାପି କିଛିମାତ୍ର ଭୀତ ନ ହୋଇ ସେ ଦୃଢ଼ସଙ୍କଳ୍ପ ସହକାରେ ତରଙ୍ଗମାଳା ମଧ୍ୟରେ ପ୍ରବିଷ୍ଟ ହେଲେ । ମୁହୂର୍ତ୍ତି ମଧ୍ୟରେ ସମୁଦ୍ର ମଧ୍ୟରୁ ଗୋଟିଏ ପ୍ରଫୁଲ୍ଲ ପ୍ରସ୍ତର କମଳ ଉଦ୍ଭୂତ ହେଲା; କିନ୍ତୁ ତଦୁପରି ପଦ-ନିକ୍ଷେପ କଲାମାତ୍ରକେ କ୍ରମେ ତାହା ଅପସୃତ ହୋଇଗଲା । ସେ ଦଣ୍ଡାୟମାନ ହୋଇ ତାହା ନିରୀକ୍ଷଣ

କରିବାକୁ ଲାଗିଲେ; କିନ୍ତୁ କମଳଟି ତାହାଙ୍କ ପଦ ସ୍ପର୍ଶ କରିବାକୁ ଆସି କ୍ରମେ ଅଦୃଶ୍ୟ ହୋଇଗଲା । ପର ମୁହୂର୍ତ୍ତରେ ସେ ଦେଖିଲେ ଯେ, ସେ ସୁମେରୁ ପର୍ବତର ସାନୁଦେଶରେ ଦଣ୍ଡାୟମାନ ହୋଇଅଛନ୍ତି । ସେ ଆରୋହଣ କରିବାକୁ ଚେଷ୍ଟା କଲେ; କିନ୍ତୁ ପ୍ରସ୍ତର ଓ କଙ୍କରମୟ ପାର୍ଶ୍ୱଦେଶ ଅତ୍ୟନ୍ତ ଦୁର୍ଗମ ବୋଧ ହେଲା ; ତଥାପି ହତୋତ୍ସାହ ନ ହୋଇ ଅଗ୍ରସର ହେବାକୁ ସେ ତାହାଙ୍କର ସମସ୍ତ ଶକ୍ତି ନିୟୋଜିତ କଲେ । ତତ୍‌କ୍ଷଣାତ୍ ପ୍ରବଳ ଘୂର୍ଣ୍ଣିବାୟୁ ତାହାଙ୍କୁ ପର୍ବତଶୃଙ୍ଗ ଉପରକୁ ଉଡାଇନେଲା । ସେ ପର୍ବତ-ଶୃଙ୍ଗୋପରି ଦଣ୍ଡାୟମାନ ହୋଇ ଚତୁର୍ଦ୍ଦିଗ ନିରୀକ୍ଷଣ କରି ଦେଖିଲେ ଯେ, ନିରବଚ୍ଛିନ୍ନ ଦିଗ୍‌ବଳୟ ଭିନ୍ନ ଆଉ କିଛି ଦୃଷ୍ଟିଗୋଚର ହେଉ ନାହିଁ । ସେ ଆନନ୍ଦରେ ଅଭିଭୂତ ହେଲେ । ତତ୍ପରେ ତାହାଙ୍କର ନିଦ୍ରାଭଙ୍ଗ ହେଲା ।

ଏହାର ଅବ୍ୟବହିତ ପରେ ସେ ଯାତ୍ରାରେ ବହିର୍ଗତ ହେଲେ । ସେତେବେଳେ ତାହାଙ୍କର ବୟସ ୨୬ ବର୍ଷ ମାତ୍ର । ଏହି ସମୟରେ ରାଜଧାନୀରେ ହୁଏଓ-ଚା ନାମରେ ଜଣେ ଆଚାର୍ଯ୍ୟ ରହୁଥିଲେ । ସେ ନିର୍ବାଣ-ସୂତ୍ର ଅଧ୍ୟୟନ କରି ସାରି ସ୍ୱଗୃହ ଶିଂ-ଚୌକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ସେ ଓ ହୁଏନ୍‌ସାଂ ଏକତ୍ର ଶିଂ-ଚୌ ପର୍ଯ୍ୟନ୍ତ ଆସି ସେଠାରେ ଏକରାତ୍ରି ଯାପନ କଲେ । ତତ୍ପରେ ସେଠାରୁ ଅନ୍ୟ ଏକ ଆଚାର୍ଯ୍ୟଙ୍କ ସହିତ ଲାଂ-ଚୌ ପର୍ଯ୍ୟନ୍ତ ଆସି ସେଠାରେ ମଧ୍ୟ ତାହାଙ୍କ ସହିତ ଏକରାତ୍ରି ଯାପନ କଲେ । ଲାଂ-ଚୌରେ ସେ କତିପୟ ଅଶ୍ୱାରୋହୀଙ୍କୁ ଦେଖିଲେ । ସେମାନେ ଜନୈକ ଉଚ୍ଚପଦସ୍ଥ ରାଜକର୍ମଚାରୀଙ୍କୁ ଛାଡି ଲିୟାଂ-ଚୌକୁ ଫେରି ଯାଉଥିଲେ । ସେମାନଙ୍କ ସହିତ ଯାଇ ହୁଏନ୍‌ସାଂ ଲିୟାଂ-ଚୌରେ ମାସାଧିକ କାଳ ଅବସ୍ଥାନ କଲେ । ଏଠାରେ ଧର୍ମଯାଜକ ଓ ଅନ୍ୟ ବ୍ୟକ୍ତିମାନେ ନିର୍ବାଣସୂତ୍ର, ମହାଯାନ, ସମ୍ପରିଗ୍ରହ ଓ ଅନ୍ୟାନ୍ୟ ଶାସ୍ତ୍ର ବ୍ୟାଖ୍ୟାନ କରିବାକୁ ଆହ୍ୱାନ କଲେ ଏବଂ

ହୁଏନ୍‌ସାଂ ସେମାନଙ୍କ ଅନୁରୋଧ ରକ୍ଷା କରିଥିଲେ । ଲିୟାଂ-ଚୌ ନଦୀର ପଶ୍ଚିମକୂଳବର୍ତ୍ତୀ ଏକ ଜନାକୀର୍ଣ୍ଣ ନଗର ଏବଂ ତିବ୍ବତ ସୀମାନ୍ତ ଓ ଶୁଂଲିଂ ପର୍ବତ ନିକଟବର୍ତ୍ତୀ ଦେଶସମୂହର ବାଣିଜ୍ୟର ଗୋଟିଏ ପ୍ରଧାନ କେନ୍ଦ୍ରସ୍ଥଳ ।

ଲିୟାଂ-ଚୌରେ ହୁଏନ୍‌ସାଂ ପଣ୍ଡିତମଣ୍ଡଳୀ ସମକ୍ଷରେ ଶାସ୍ତ୍ର ବ୍ୟାଖ୍ୟାନ ଆରମ୍ଭ କରନ୍ତେ, ସେ ଅଞ୍ଚଳରୁ ବହୁସଂଖ୍ୟକ ଲୋକ ଆସି ବହୁମୂଲ୍ୟ ଧନରତ୍ନ ଉପହାର ସହ ତାହାଙ୍କ ପଦଦେଶରେ ପ୍ରଣତ ହୋଇ ତାହାଙ୍କ ସ୍ତୁତି ଗାନ କରିବାକୁ ଲାଗିଲେ ଓ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ତତ୍ରତ୍ୟ ଶାସନକର୍ତ୍ତାଙ୍କ ସମ୍ମୁଖରେ ତାହାଙ୍କର ଅଶେଷ ପ୍ରଶଂସା କୀର୍ତ୍ତନ କରି କହିଲେ ଯେ, ଅଳ୍ପଦିନ ମଧ୍ୟରେ ସେ ପଶ୍ଚିମ ଭୂଖଣ୍ଡସ୍ଥ ବ୍ରାହ୍ମଣମାନଙ୍କ ଦେଶକୁ ତତ୍ତ୍ୱାନୁସନ୍ଧାନ ଉଦ୍ଦେଶ୍ୟରେ ଯାଉଅଛନ୍ତି । ଏହି ସମ୍ବାଦ ପ୍ରାପ୍ତ ହୋଇ ମାର୍ଗର ସମସ୍ତ ଦେଶର ଲୋକେ ହର୍ଷୋତ୍ଫୁଲ୍ଲ ହୃଦୟରେ ତାଙ୍କୁ ଅଭିବାଦନ କରିବା ସକାଶେ ପ୍ରସ୍ତୁତ ହୋଇ ରହିଥିଲେ ।

ସମ୍ମିଳନୀର ଅନ୍ତିମ ଦିବସରେ ଲିୟାଂ-ଚୌର ଅଧିବାସୀମାନେ ତାହାଙ୍କୁ ବହୁ ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରା ଏବଂ ଅସଂଖ୍ୟ ଶ୍ୱେତ ଅଶ୍ୱ ଉପହାର ପ୍ରଦାନ କଲେ । ହୁଏନ୍‌ସାଂ ତହିଁରୁ ଅର୍ଦ୍ଧେକ ମାତ୍ର ଗ୍ରହଣ କରି ସେହି ଅର୍ଥ ସାହାଯ୍ୟରେ ତତ୍ରତ୍ୟ ସମସ୍ତ ମଠର ପ୍ରଦୀପ ପ୍ରଜ୍ୱଳିତ କରାଇଲେ ଓ ଅପରାର୍ଦ୍ଧ ସେମାନଙ୍କ ମଧ୍ୟରେ ବିତରଣ କରିଦେଲେ । ଏହି ସମୟରେ ଦେଶର ଶାସନପ୍ରଣାଳୀ ସୁଶୃଙ୍ଖଳ ହୋଇଆସୁଥିଲା । ଦେଶର ବିସ୍ତୃତି ଅଧିକ ଦୂର ନ ଥିଲା । ଦେଶବାସୀଙ୍କ ବିଦେଶ-ଯାତ୍ରା ଅତ୍ୟନ୍ତ ନିୟମାବଦ୍ଧ ହୋଇଥିଲା । ଯେତେବେଳେ ଲିୟାଂ-ଚୌର ଶାସନକର୍ତ୍ତା ଲିଠା ଲ୍ୟାଂଙ୍କ ସମ୍ମୁଖରେ ଜଣେ ଲୋକ ହୁଏନ୍‌ସାଂଙ୍କ

ଉପସ୍ଥିତ କଂସ୍ ଭଦ ଜହଲ ଯେ, ଏହ ବ୍ୟକ୍ତ ପଶ୍ଚିମ ଭୂଖଣ୍ଡକୁ ଯାଉ-ଅଛନ୍ତ, ସେତେବେଳେ ଲ୍ୟାଂ ଅତ୍ୟନ୍ତ ବଚଳିତ ହୋଇ ତାହାଙ୍କ ଯାହାର ଉଦ୍ଦେଶ୍ୟ ଜ୍ଞାପନ କରିବା ସକାଶେ ତାହାଙ୍କୁ ଅନୁରୋଧ କଲେ । ହୁଏନ୍‌ସାଂ ଉତ୍ତର କଲେ, "ମୁଁ ପଶ୍ଚିମ ଭୂଖଣ୍ଡକୁ ଧର୍ମ-ତତ୍ତ୍ୱାନୁସନ୍ଧାନ ସକାଶେ ଯିବାକୁ ଇଚ୍ଛୁକ ହୋଇଅଛି ।" ଲ୍ୟାଂ କହିଲେ, "ରାଜାଙ୍କ ନିଷେଧାଜ୍ଞା ଅତି କଠୋର ; ଆପଣ ସ୍ୱଦେଶକୁ ଫେରିଯାଆନ୍ତୁ ।"

ସେହି ସମୟରେ ଲ୍ୟାଂ-ଷ୍ଟେରେ ହୁଇ-ଉଇ ନାମକ ଜଣେ ଅତି ପ୍ରସିଦ୍ଧ ଧର୍ମାଚାର୍ଯ୍ୟ ବାସ କରୁଥିଲେ । ସେ ହୁଏନ୍‌ସାଂଙ୍କ ବିଷୟରେ ସମସ୍ତ ଅବଗତ ହୋଇ ଅତ୍ୟନ୍ତ ଆନନ୍ଦ ପ୍ରକାଶ କଲେ ଓ ଦୁଇ ଜଣ ଶିଷ୍ୟଙ୍କ ସମଭିବ୍ୟାହାରରେ ତାହାଙ୍କ ଗନ୍ତବ୍ୟ ପଥରେ ଗୋପନରେ ତାହାଙ୍କୁ ଛାଡ଼ିଦେଇ ଆସିଲେ । ସେହିଦିନଠାରୁ ହୁଏନ୍‌ସାଂ ଦିବସରେ ଲୁଚି ରହୁଥିଲେ ଓ ରାତିରେ ପଥ ଚାଲୁଥିଲେ ।

---

## ଲ୍ୟାଂ-ଷ୍ଟେ ତ୍ୱାଷ୍ଟେ ଶାସନକର୍ତ୍ତାଙ୍କଠାରୁ ସାହାଯ୍ୟପ୍ରାପ୍ତି

କେତେକ ଦିନ ପରେ ସେ ଗ୍ୱା-ଷ୍ଟେରେ ଆସି ଉପନୀତ ହେଲେ । ସେହି ସ୍ଥାନର ଶାସନକର୍ତ୍ତା ଓ-ଚୋ-କ-ଉ ତାହାଙ୍କ ଆଗମନ-ବାର୍ତ୍ତା ଶ୍ରବଣ କରି ଅତ୍ୟନ୍ତ ପ୍ରୀତ ହେଲେ ଓ ତାହାଙ୍କ ସକାଶେ ପ୍ରଚୁର ଆହାର୍ଯ୍ୟ ପ୍ରେରଣ କଲେ ।

ଏହି ସ୍ଥାନରେ ହୁଏନ୍‌ସାଂ ପଶ୍ଚିମ ଭୂଖଣ୍ଡକୁ ଯାଇଥିବା ପଥ ବିଷୟରେ ପଚାରି ବୁଝିଲେ ଯେ, ସେହି ସ୍ଥାନର ୫୦ଲି ଉତ୍ତରରେ ହୂ-ଲୁ ନାମରେ ଗୋଟିଏ ନଦୀ ଅଛି । ତାହାର ନିମ୍ନାଂଶ ପ୍ରଶସ୍ତ ଓ

ଉପର ଅଂଶ ଅପ୍ରଶସ୍ତ, ସ୍ରୋତ ଅତ୍ୟନ୍ତ ବେଗଗାମୀ ଓ ଗଭୀର, ନୌକା-ଚାଳନ ସକାଶେ ସଙ୍କଟସଙ୍କୁଳ । ଉପର ଅଂଶର ପାର୍ଶ୍ୱବର୍ତ୍ତୀ ଇଉ-ମେନ୍ ନିକଟରେ ଦେଶର ସୀମା ଏପରି ଦୃଢ ଭାବରେ ଅବରୁଦ୍ଧ ହୋଇଅଛି ଯେ, ପଶ୍ଚିମ ସୀମାନ୍ତ ଅତିକ୍ରମ କରିବାକୁ ହେଲେ, ଏହି ସ୍ଥାନ ଦେଇ ସମସ୍ତଙ୍କୁ ଯିବାକୁ ହେବ । ସୀମାନ୍ତର ଉତ୍ତରପଶ୍ଚିମ କୋଣର ଏକ ଶତ ଲି ବ୍ୟବଧାନରେ ପାଞ୍ଚଗୋଟି ଦୁର୍ଗ ଅଛି । ତହିଁରେ ରାଜକର୍ମଚାରୀମାନେ ଅବସ୍ଥାନ କରି ସମସ୍ତ ବିଷୟରେ ଜାଗ୍ରତ ରହି-ଅଛନ୍ତି । ପ୍ରତ୍ୟେକ ଦୁର୍ଗମଧ୍ୟସ୍ଥ ଭୂମି ଏକାବେଳକେ ଜଳ ଓ ଉଦ୍ଭିଦ-ହୀନ ଓ ଉକ୍ତ ପଞ୍ଚଦୁର୍ଗର ଅପର ପାର୍ଶ୍ୱଠାରୁ ଇ-ଗ୍ର ରାଜ୍ୟର ସୀମାନ୍ତ ପର୍ଯ୍ୟନ୍ତ ମୋ-କ୍ୟା-ୟେନ ମରୁଭୂମି ବିସ୍ତୃତ ।

ଏ ସମସ୍ତ ବିବରଣ ଶ୍ରବଣ କରି ହୁଏନ୍‌ସାଂଙ୍କ ହୃଦୟ ଚିନ୍ତା ଓ ଦୁଃଖରେ ପୂର୍ଣ୍ଣ ହୋଇଗଲା । ଏଠାରେ ତାହାଙ୍କ ବାହନ ଅଶ୍ୱଟି ପ୍ରାଣତ୍ୟାଗ କଲା ଓ ସେ କଅଣ କରିବେ ସ୍ଥିର କରି ପାରିଲେ ନାହିଁ । ବିଷଣ୍ଣ ହୃଦୟରେ ଏହି ସ୍ଥାନରେ ସେ ନୀରବରେ ମାସାଧିକ କାଳ ଅତିବାହିତ କଲେ । ଏହି ସ୍ଥାନ ପରିତ୍ୟାଗ କରିବା ପୂର୍ବେ ଲିୟୁଂଝେ-ଠାରୁ ଗୁପ୍ତଚରମାନେ ଆସି ତାହାଙ୍କୁ କହିଲେ, “ଏଠାରେ ହୁଏନ୍‌ସାଂ ନାମକ ଜଣେ ଆଚାର୍ଯ୍ୟ ଅଛନ୍ତି । ସେ ସି-ଫାନ ( ତିବ୍ବତ ) ରାଜ୍ୟ ମଧ୍ୟକୁ ପ୍ରବେଶ କରିବା ପାଇଁ ଚେଷ୍ଟା କରୁଅଛନ୍ତି । ସମସ୍ତ ପ୍ରଦେଶ ଓ ଜିଲ୍ଲାର ଶାସନକର୍ତ୍ତାମାନେ ତାହାଙ୍କୁ ଅବରୁଦ୍ଧ କରି ରଖିବା ପାଇଁ ଆଦିଷ୍ଟ ହୋଇଅଛନ୍ତି ।” ଲି-ଚାଂ ପ୍ରଦେଶର ଶାସନକର୍ତ୍ତା ଜଣେ ଧର୍ମ-ପରାୟଣ ବ୍ୟକ୍ତି ଥିଲେ । ସେ ହୁଏନ୍‌ସାଂଙ୍କ ପ୍ରତି ଉଦ୍ଦିଷ୍ଟ ଅବରୋଧ-ପତ୍ର ତାଙ୍କୁ ଗୋପନରେ ଦେଖାଇ ପଚାରିଲେ, “ଏଥିଲିଖିତ ବ୍ୟକ୍ତି କି ଆପଣ ?” ହୁଏନ୍‌ସାଂ ପ୍ରଥମରେ କୌଣସି ଉତ୍ତର ଦେଲେ ନାହିଁ । ପୁଣି ଶାସନକର୍ତ୍ତା କହିଲେ, “ଆପଣ ସତ୍ୟ ପ୍ରକାଶ କରନ୍ତୁ, ତାହା-

ହେଲେ ଏହି ଦାସ ଆପଣଙ୍କ ନିଷ୍ପଦରେ ଏହି ସ୍ଥାନ ତ୍ୟାଗର ଉପାୟ କରିଦେବ ।” ତତ୍ପରେ ହୁଏନ୍‌ସାଂ ସତ୍ୟ କଥା ପ୍ରକାଶ କଲେ । ଏଥିରେ ଶାସନକର୍ତ୍ତା ଭକ୍ତି ଓ ବିସ୍ମୟରେ ଅଭିଭୂତ ହୋଇ କହିଲେ, “ଆପଣ ଯେତେବେଳେ ଏତେ ମହତ୍ କାର୍ଯ୍ୟ ସମ୍ପାଦନ କରିବାକୁ ବାହାରିଅଛନ୍ତି, ମୁଁ ଏହି ଆଦେଶ-ପତ୍ର ନଷ୍ଟ କରି ଦେଉଅଛି ।” ଏହା କହି ତତ୍‌କ୍ଷଣାତ୍ ସେ ତାହା ତାଙ୍କ ସମ୍ମୁଖରେ ଛିଣ୍ଡାଇ ପକାଇଲେ ଓ କହିଲେ, “ଏହି ମୁହୂର୍ତ୍ତରେ ଆପଣ ଏହି ସ୍ଥାନ ତ୍ୟାଗ କରନ୍ତୁ ।”

ଏହି ସମୟରୁ ତାଙ୍କ ହୃଦୟରେ ଚିନ୍ତା ଓ ଭୟ ବୃଦ୍ଧି ପାଇବାକୁ ଲାଗିଲା । ଯେଉଁ ଦୁଇ ଜଣ ଶିଷ୍ୟ ତାହାଙ୍କ ସହଯାତ୍ରୀ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଡାଉ-ଚିଂ ଅର୍ଦ୍ଧମାର୍ଗରୁ ଫେରିଯାଇଥିଲେ । ହୁଇ-ଲିନ୍ ନାମକ ଯେଉଁ ଶିଷ୍ୟ ତାହାଙ୍କ ସଙ୍ଗରେ ଥିଲେ, ତାହାଙ୍କୁ ଏତେ ସୁଦୀର୍ଘ ପଥ ଅତିକ୍ରମ କରିବାରେ ଅସମର୍ଥ ଦେଖି ସେହିଠାରୁ ତାହାଙ୍କ ଗୃହକୁ ଫେରିଯିବା ସକାଶେ ସେ ଅନୁମତି ପ୍ରଦାନ କଲେ । ବର୍ତ୍ତମାନ ସେ ଗୋଟିଏ ଅଶ୍ୱ ସଂଗ୍ରହ କଲେ । ତାହାଙ୍କ ସଙ୍ଗେ ପଥପ୍ରଦର୍ଶକ ଆଉ କେହି ନ ଥିଲେ—ଏହା ହିଁ ତାଙ୍କର ଏକମାତ୍ର ଦୁଃଖ ଥିଲା । ଯେଉଁ ମନ୍ଦିରରେ ସେ ଅବସ୍ଥାନ କରୁଥିଲେ, ସେହି ମନ୍ଦିର ମଧ୍ୟରେ ଦିନେ ପ୍ରବିଷ୍ଟ ହୋଇ ତତ୍ରତ୍ୟ ଦେବତା ମୈତ୍ରେୟଙ୍କ ମୂର୍ତ୍ତି ସମ୍ମୁଖରେ ଜାନୁପାତପୂର୍ବକ ପ୍ରଣିପାତ କରି ଭକ୍ତିଗଦ୍‌ଗଦ ହୃଦୟରେ ତାହାଙ୍କ ଏହି ଯାତ୍ରାରେ ପଥ-ପ୍ରଦର୍ଶକ ହେବା ସକାଶେ ପ୍ରାର୍ଥନା କଲେ ।

---

## ଧର୍ମ୍ମାଚାର୍ଯ୍ୟଙ୍କ ସ୍ୱପ୍ନ-ଦର୍ଶନ

ସେହି ସମୟରେ ସେଠାରେ ଜଣେ ବିଦେଶୀୟ ଆଚାର୍ଯ୍ୟ ଅବସ୍ଥାନ କରୁଥିଲେ । ତାହାଙ୍କ ନାମ ଧର୍ମ୍ମ । ସେ ସମୟରେ ସ୍ୱପ୍ନ ଦେଖିଲେ ଯେ, ହୁଏନ୍‌ସାଂ ଏକ ପଦ୍ମପୁଷ୍ପୋପରି ଉପବିଷ୍ଟ ହୋଇ ପଶ୍ଚିମ ଭୂଖଣ୍ଡ ଆଡକୁ ଯାଉଅଛନ୍ତି । ତହିଁ ପର ଦିନ ବିସ୍ମୟାବିଷ୍ଟ ହୃଦୟରେ ଧର୍ମ ହୁଏନ୍‌ସାଂଙ୍କୁ ଏହି ବିଷୟ ଜ୍ଞାପନ କଲେ । ହୁଏନ୍‌ସାଙ୍କର ହୃଦୟ ଆନନ୍ଦରେ ପରିପୂର୍ଣ୍ଣ ହେଲା ଓ ଏହାକୁ ସେ ତାହାଙ୍କ ତୀର୍ଥଯାତ୍ରା ପକ୍ଷରେ ଶୁଭ ଲକ୍ଷଣ ବୋଲି ମନେ କଲେ । କିନ୍ତୁ ସେ ଧର୍ମ୍ମଙ୍କୁ କହିଲେ, "ସ୍ୱପ୍ନ ମିଥ୍ୟା ଓ ଭ୍ରାନ୍ତିଜନକ । ଏହି ବିଷୟ ପରୀକ୍ଷା କରିବା ଆବଶ୍ୟକ ।" ତତ୍ପରେ ସେ ମନ୍ଦିରାଭ୍ୟନ୍ତରକୁ ଯାଇ ଗଭୀର ଧ୍ୟାନରେ ନିମଗ୍ନ ହୋଇ ରହିଲେ ।

ଅଳ୍ପ ସମୟ ପରେ ଜଣେ ବିଦେଶୀୟ ବ୍ୟକ୍ତି ବୁଦ୍ଧଙ୍କ ଉପାସନା ନିମନ୍ତେ ଉକ୍ତ ମନ୍ଦିର ମଧ୍ୟରେ ପ୍ରବିଷ୍ଟ ହେଲେ ଓ ଉପାସନାନନ୍ତର ହୁଏନ୍‌ସାଙ୍କୁ ତିନି ବାର ପ୍ରଦକ୍ଷିଣ କରି ତାହାଙ୍କ ଚରଣ ବନ୍ଦନା କଲେ । ହୁଏନ୍‌ସା ତାହାଙ୍କ ନାମ ଓ ଗୋତ୍ର ପଚାରିଲେ ଓ ସେ ଉତ୍ତର କଲେ, "ମୋର ନାମ ବନ୍ଧ ଓ ମୁଁ ଶି-ଗୋତ୍ରଜ ।" ତତ୍ପରେ ବିଦେଶୀୟ ଯୁବକ ଶିଷ୍ୟତ୍ୱ ଗ୍ରହଣର ପ୍ରଥମ କାର୍ଯ୍ୟସ୍ୱରୂପ ପଞ୍ଚନୀତି ଶିକ୍ଷାଦାନ ନିମନ୍ତେ ତାହାଙ୍କୁ ଅନୁରୋଧ କଲେ । ହୁଏନ୍‌ସାଂ ତାହାଙ୍କୁ ଯଥାବିଧି ଶିକ୍ଷା ପ୍ରଦାନ କଲା ଉତ୍ତାରେ ସେ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ଗୃହକୁ ଫେରିଯାଇ ଆଉ ଥରେ ତାଙ୍କ ନିକଟକୁ ଆସିବା ପାଇଁ ଅନୁମତି ପ୍ରାର୍ଥନା କଲେ । ତତ୍ପରେ ଅନୁମତିପ୍ରାପ୍ତ ହୋଇ ତାହାଙ୍କ ନିକଟରେ ପିଷ୍ଟକ ଓ ଫଳ ଘେନି ଉପସ୍ଥିତ ହେଲେ । ହୁଏନ୍‌ସାଂ ଯୁବକଙ୍କ ବୁଦ୍ଧି, ବଳିଷ୍ଠ ଶରୀର ଓ ଶିଷ୍ଟାଚାର ସନ୍ଦର୍ଶନ କରି ପଶ୍ଚିମ ଭୂଖଣ୍ଡରେ ତାହାଙ୍କ

ସହଯାତ୍ରୀ ହେବା ନିମନ୍ତେ ପ୍ରସ୍ତାବ କଲେ । ଯୁବକ ଅବିଳମ୍ବରେ ସମ୍ମତି ପ୍ରଦାନ କଲେ ଓ ତାଙ୍କୁ ପଶ୍ଚିମ ଦୁର୍ଗର ଅପରପାର୍ଶ୍ୱସ୍ଥ ପଥ ଦେଖାଇ ଦେବେ ବୋଲି କହିଲେ । ହୁଏନ୍ସାଂ ଏହା ଶୁଣି ଆନନ୍ଦାଭିଭୂତ ହୋଇପଡିଲେ ଏବଂ ଯୁବକଙ୍କୁ କେତେକ ଖଣ୍ଡ ବସ୍ତ୍ର ଓ ଗୋଟିଏ ଅଶ୍ୱ କ୍ରୟ କରିବା ନିମନ୍ତେ ଅନ୍ୟ କେତେକ ପଦାର୍ଥ ପ୍ରଦାନ କଲେ । ଉଭୟଙ୍କର ପରସ୍ପର ସାକ୍ଷାତର ସମୟ ସ୍ଥିର ହେଲା । ପରଦିନ ସନ୍ଧ୍ୟା ସମୟରେ ହୁଏନସାଂ ଗୋଟିଏ ଗୁଳ୍ମ ନିକଟକୁ ଗମନ କଲେ । ଅଳ୍ପ ସମୟ ଉତ୍ତାରେ ଉକ୍ତ ଯୁବକ ଏକ ଶୀର୍ଣ୍ଣକାୟ ରକ୍ତବର୍ଣ୍ଣ ଅଶ୍ୱୋପରି ଆରୂଢ଼ ପକ୍ୱଶ୍ମଶ୍ରୁବିଶିଷ୍ଟ ଜଣେ ବୃଦ୍ଧଙ୍କ ସହିତ ତାହାଙ୍କ ସହ ସାକ୍ଷାତ୍ କଲେ । ତାହାଙ୍କୁ ଦେଖି ହୁଏନ୍ସାଂଙ୍କ ମନ ଅସ୍ଥିର ହେବାକୁ ଲାଗିଲା । ଯୁବକ କହିଲେ, "ଏହି ବୃଦ୍ଧ ପଶ୍ଚିମାଞ୍ଚଳର ପଥସମୂହ ସମ୍ବନ୍ଧରେ ଅଭିଜ୍ଞ ଓ ସେହି ଅଞ୍ଚଳକୁ ସେ ତିରିଶ ଥର ଯାଇଅଛନ୍ତି । ଏଣୁ ଆପଣଙ୍କୁ ଉତ୍ତମରୂପେ ପଥ ଦେଖାଇ ପାରିବେ ବୋଲି ମୁଁ ତାଙ୍କୁ ଆଣିଅଛି ।" ବୃଦ୍ଧ କହିଲେ, "ପଶ୍ଚିମାଞ୍ଚଳର ପଥସମୂହ ଅତ୍ୟନ୍ତ ଦୁର୍ଗମ, ଭୀଷଣ ବିପଦ ଓ ଦୁଷ୍ଟ ପ୍ରେତସଙ୍କୁଳ । ବିସ୍ତୀର୍ଣ୍ଣ ମରୁଭୂମିର ଉତ୍ତପ୍ତ ବାୟୁରେ ଶରୀର ଦଗ୍‌ଧ ହୋଇଉଠେ । ଲୋକେ ଦଳବଦ୍ଧ ହୋଇ ଗଲେ ମଧ୍ୟ ପଥଭ୍ରାନ୍ତ ହୁଅନ୍ତି । ଆପଣ କାହିଁକି ଏହି ଦୁଃସାହସ କରୁଛନ୍ତି ? ଏହି ଭୀତିସଙ୍କୁଳ ଯାତ୍ରା କିପରି ସମ୍ପାଦନ କରିବେ ? ଉତ୍ତମରୂପେ ବିବେଚନା କରି ଏହି କାର୍ଯ୍ୟରେ ଅଗ୍ରସର ହୁଅନ୍ତୁ; ଜୀବନକୁ ଏତେ ତୁଚ୍ଛ ମଣନ୍ତୁ ନାହିଁ ।"

---

## ପଥ-ପ୍ରଦର୍ଶକ ନିଯୁକ୍ତି

ହୁଏନ୍‌ସାଂ ଉତ୍ତର କଲେ, "ଏହି ତତ୍ତ୍ୱାନୁସନ୍ଧିତ୍ସୁ ଦାସ ପଶ୍ଚିମ ଭୂଖଣ୍ଡକୁ ଯାତ୍ରା କରିବା ସକାଶେ ଦୃଢ଼ ସଙ୍କଳ୍ପ କରିଅଛି । ଯଦି ସେ ବ୍ରାହ୍ମଣଙ୍କ ଭୂମି ଦର୍ଶନ କରିବାରେ ସମର୍ଥ ହୁଏ, ତେବେ ତାହାର ପ୍ରତ୍ୟାଗମନ ଅସମ୍ଭବ । ମାର୍ଗରେ ପ୍ରାଣନାଶ ହେଲେ ମଧ୍ୟ କ୍ଷତି ନାହିଁ ।" ବୃଦ୍ଧ କହିଲେ, "ଆପଣ ଯଦି ଯିବା ପାଇଁ ଏକାନ୍ତ କୃତ-ନିଶ୍ଚୟ, ତାହା ହେଲେ ମୋର ଏହି ଅଶ୍ୱାରୋହଣ କରନ୍ତୁ । ଏହି ଅଶ୍ୱ ସେ ପଥରେ ପଚିଶ ଥର ଯାତାୟାତ କରିଅଛି । ଏ ବଳିଷ୍ଠ ଓ ସମସ୍ତ ପଥ ଏହାର ପରିଚିତ । ଆପଣଙ୍କ ଅଶ୍ୱ କ୍ଷୁଦ୍ର ଓ ଏହି ଯାତ୍ରାର ଉପଯୁକ୍ତ ନୁହେଁ ।

ଏହି ସମୟରେ ହୁଏନ୍‌ସାଂଙ୍କର ଗୋଟିଏ କଥା ମନେପଡ଼ିଲା । ଚ୍ୟାଂ ଗାନ୍‌ରେ ଥିବା ସମୟରେ ଯେତେବେଳେ ତାହାଙ୍କ ମନରେ ପଶ୍ଚିମ ଭୂଖଣ୍ଡ ଯାତ୍ରାର ସଙ୍କଳ୍ପ ଉଦିତ ହେଲା, ଜଣେ ଗଣକ ଦିନେ ତାହାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କେତେକ ମନ୍ତ୍ର ପାଠକରିଥିଲେ ଓ ଉକ୍ତ ସଙ୍କଳ୍ପ ବିଷୟରେ କେତେକ କଥା ତାଙ୍କୁ ଜଣାଇଥିଲେ । ହୁଏନ୍‌ସାଂ ତାଙ୍କ ତୀର୍ଥଯାତ୍ରା ବିଷୟରେ ମଧ୍ୟ ତାଙ୍କୁ କେତେକ ପ୍ରଶ୍ନ ପଚାରିଥିଲେ । ଗଣକ କହିଥିଲେ, "ଆପଣ ଯିବେ ଓ ମାର୍ଗରେ ଗୋଟିଏ ବୃଦ୍ଧ ଶୀର୍ଣ୍ଣକାୟ ଅଶ୍ୱ ଆରୋହଣ କରିବେ । ଅଶ୍ୱପୃଷ୍ଠାସନ ବାର୍ଣ୍ଣିସରଞ୍ଜିତ ଓ ସମ୍ମୁଖାଂଶ ଲୌହ-ପଟବଦ୍ଧ ହୋଇଥିବ ।" ବର୍ତ୍ତମାନ ସମ୍ମୁଖରେ ଉକ୍ତ ଗଣକବର୍ଣ୍ଣିତ ଅଶ୍ୱ ସଶରୀରରେ ଦଣ୍ଡାୟମାନ । ବୃଦ୍ଧଙ୍କ ପରାମର୍ଶାନୁଯାୟୀ ସେ ନିଜ ଅଶ୍ୱଟିକୁ ତାହାଙ୍କୁ ପ୍ରଦାନ କରି ତାହାଙ୍କ ଶୀର୍ଣ୍ଣକାୟ ଅଶ୍ୱଟିକୁ ଗ୍ରହଣ କଲେ ଓ ଏହା ତାହାଙ୍କ ସଂକଳ୍ପ-ସିଦ୍ଧିର ପୂର୍ବାଭାଷ ବୋଲି ମନେ କଲେ । ବୃଦ୍ଧ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କୁ ଅଭିବାଦନପୂର୍ବକ ସ୍ୱଗୃହାଭିମୁଖରେ ପ୍ରସ୍ଥାନ କଲେ ।

## ଇଉମେନ୍ ସୀମାନ୍ତରେ ପ୍ରବେଶ

ବର୍ତ୍ତମାନ ନିଜ ଜିନିଷପତ୍ର ସଜ୍ଜିତ କରି ହୁଏନ୍‌ସାଂ ସେହି ଯୁବକ ସହିତ ରାତିରେ ସେ ସ୍ଥାନରୁ ପ୍ରସ୍ଥାନ କଲେ । ତୃତୀୟ ଦିବସରେ ସେ ପଶ୍ଚିମ ସୀମାନ୍ତର ଇଉମେନ ନଦୀକୂଳରେ ଆସି ଉପସ୍ଥିତ ହେଲେ ଓ ଏହି ସ୍ଥାନର ପ୍ରହରୀଗୃହ ଦୃଷ୍ଟିଗୋଚର ହେଲାରୁ ସେଠାରେ ଲୁକ୍କାୟିତ ହୋଇ ରହିଲେ । ସୀମାନ୍ତର ଦଶ ଲି ଉପରକୁ ନଦୀର ଉତ୍ତରାଂଶ ଦଶଫୁଟରୁ ଅଧିକ ପ୍ରଶସ୍ତ ନୁହେ । ଉଭୟ କୂଳ ଗୁଳ୍ମଲତାପୂର୍ଣ୍ଣ । ଯୁବକ ନଦୀକୂଳରୁ କେତେଗୁଡ଼ିଏ ବୃକ୍ଷଲତା କାଟି ସ୍ରୋତ ଉପରେ ଏକ ସେତୁ ନିର୍ମାଣ କଲେ ଓ ତହିଁ ଉପରେ ଅନାୟାସରେ ନଦୀ ଅତିକ୍ରମ କଲେ ।

ହୁଏନ୍‌ସାଂ ନଦୀ ଅତିକ୍ରମ କରି ଅତ୍ୟନ୍ତ ପ୍ରୀତ ହେଲେ ଓ ଅପର ପାର୍ଶ୍ୱରେ ବିଶ୍ରାମାର୍ଥେ ଅଶ୍ୱରୁ ଅବତରଣ କଲେ । ଯୁବକ ତାହାଙ୍କଠାରୁ ପଚାଶ ପାଦ ଦୂରରେ ଆସନ ବିସ୍ତୃତ କରି ତହିଁରେ ବିଶ୍ରାମ କଲେ । ଅଳ୍ପ ସମୟ ମଧ୍ୟରେ ଉଭୟେ ଗାଢ ନିଦ୍ରାରେ ଅଭିଭୂତ ହୋଇପଡ଼ିଲେ । କିଛି ସମୟ ପରେ ଯୁବକ ନିଦ୍ରାରୁ ଉଠି ଛୁରିକା-ହସ୍ତରେ ଦଣ୍ଡାୟମାନ ହୋଇ ହୁଏନ୍‌ସାଂଙ୍କ ଆଡ଼କୁ ଅଗ୍ରସର ହେଲେ ଓ ଦଶପାଦ ଅତିକ୍ରମ କରି ପୁଣି ପ୍ରତ୍ୟାବର୍ତ୍ତନ କଲେ । ହୁଏନ୍‌ସାଂ ଏହା ଦେଖି ଯୁବକର ଉଦ୍ଦେଶ୍ୟ ସମ୍ବନ୍ଧରେ ସନ୍ଦିହାନ ହୋଇ କେତେକ ମନ୍ତ୍ର ଉଚ୍ଚାରଣ କଲେ ଓ କ୍ୱାନିନ ବୋଧିସତ୍ତ୍ୱଙ୍କୁ ଆହ୍ୱାନ କଲେ । ଯୁବକ ଏହା ଦେଖି ଫେରିଯାଇ ପୁନର୍ବାର ନିଦ୍ରାଭିଭୂତ ହେଲେ ।

ରାତି ପ୍ରଭାତ ହେଲାରୁ ହୁଏନ୍‌ସାଂ ଯୁବକଙ୍କ ନିକଟକୁ ଯାଇ ଜଳ ଆଣିବା ସକାଶେ ତାହାଙ୍କୁ ଆଦେଶ କଲେ । ତତ୍ପରେ ଗାତ୍ର ପ୍ରକ୍ଷାଳନ କରି କିଞ୍ଚିତ୍ ଜଳଯୋଗ ସମ୍ପାଦନପୂର୍ବକ ଯାତ୍ରାରେ ଅଗ୍ରସର

ହେବାର ଉଦ୍‌ଯୋଗ କଲେ । ଯୁବକ କହିଲେ, "ଏହି ବାଟ ଆପଣଙ୍କୁ ଅତ୍ୟନ୍ତ ବିପଦସଙ୍କୁଳ ଦୂର ଦେଶକୁ ଘେନି ଯାଉଅଛି । ସେହି ଦେଶରେ ଜଳ ଅଥବା ତୃଣ ନାହିଁ । କେବଳ ପଞ୍ଚମ ଦୁର୍ଗର ଅପର ପାର୍ଶ୍ୱରେ ଜଳ ଅଛି ଏବଂ ସେଠାରୁ ଜଳ ଆଣିବାକୁ ହେଲେ କେବଳ ରାତିରେ ଯିବା ଓ ସେଠାରୁ ତନ୍ମୁହୂର୍ତ୍ତରେ ପଳାୟନ କରିବା ଆବଶ୍ୟକ । କେହି ଦେଖିଲେ ଆମ୍ଭମାନଙ୍କର ମୃତ୍ୟୁ ସୁନିଶ୍ଚିତ । ଏହା ଅପେକ୍ଷା ଫେରିଯିବା କି ଶ୍ରେୟସ୍କର ନୁହେଁ ?" ହୁଏନ୍‌ସାଂ ଫେରିଯିବା ପାଇଁ ଦୃଢ଼ ଭାବରେ ନାସ୍ତି କଲେ । ତତ୍ପରେ ଉଭୟେ ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ଯୁବକ ସ୍ୱହସ୍ତସ୍ଥିତ ଛୁରିକା ଉନ୍ମୁକ୍ତ ଓ ଶରାସନରେ ଗୁଣ ପ୍ରଦାନ କଲେ ଏବଂ ହୁଏନ୍‌ସାଂଙ୍କୁ ତାଙ୍କ ସମ୍ମୁଖରେ ଚାଲିବା ପାଇଁ ଅନୁରୋଧ କଲେ; କିନ୍ତୁ ସେ ଏଥିରେ ସମ୍ମତ ହେଲେ ନାହିଁ । ଯୁବକ କିଛି ଦୂର ଯାଇ ହଠାତ୍ କହି ଉଠିଲେ, "ଏହି ବାଟ ଆଉ ଯାଇ ପାରିବ ନାହିଁ । ତାହାଙ୍କୁ ଅନେକ ପାରିବାରିକ କାର୍ଯ୍ୟ ସମ୍ପାଦନ କରିବାକୁ ହେବ । ଆଉ ମଧ୍ୟ ସେ ସ୍ୱଦେଶର ନିୟମ ଲଙ୍ଘନ କରିବାକୁ ପ୍ରସ୍ତୁତ ନୁହେଁ ।" ହୁଏନ୍‌ସାଂ ଯୁବକର ଅଭିପ୍ରାୟ ବୁଝିପାରି ତାହାଙ୍କୁ ଫେରିଯିବା ପାଇଁ ଅନୁମତି ପ୍ରଦାନ କଲେ । ଯୁବକ କହିଲେ, "ଗୁରୋ ! ଆପଣ ନିଜ ଉଦ୍ଦେଶ୍ୟ ସାଧନ କରି ପାରିବେ, ଏହା ଅସମ୍ଭବ । କର୍ତ୍ତୃପକ୍ଷ ନିଶ୍ଚୟ ଆପଣଙ୍କୁ ଧରି ଫେରାଇ ଆଣିବେ ।" ହୁଏନ୍‌ସାଂ କହିଲେ, "ମୋର ଏହି ଶରୀର ଖଣ୍ଡ ଖଣ୍ଡ ହୋଇ ଧୂଳିରେ ପରିଣତ ହେବ; ତଥାପି ଫେରିବି ନାହିଁ । ଏହା ମୋର ଦୃଢ଼ ଶପଥ ।" ଏହି ସ୍ଥାନରେ ହୁଏନ୍‌ସାଂ ଯୁବକକୁ କୃତଜ୍ଞତାର ନିଦର୍ଶନସ୍ୱରୂପ ସ୍ୱକୀୟ ଅଶ୍ୱଟି ପ୍ରଦାନ କରି ବିଦାୟ ଦେଲେ ।

---

## ମରୁଭୂମି ଅତିକ୍ରମ ଓ ତତ୍ପର ବିଭୀଷିକା

ଏପରି ଭାବରେ ପରିଜନଦ୍ୱାରା ପରିତ୍ୟକ୍ତ ହୋଇ ହୁଏନସାଂ ଏକାକୀ ବାଲୁକାମୟ ମରୁଭୂମି ଅତିକ୍ରମ କରିବାକୁ ଲାଗିଲେ । ମାର୍ଗରେ ସ୍ତୂପୀକୃତ କଙ୍କାଳ, ଅଶ୍ୱ-ମଳରାଶି ଓ ଅନ୍ୟାନ୍ୟ ପଦାର୍ଥ ତାହାଙ୍କ ପଥ ନିର୍ଦ୍ଦେଶ କରିବାରେ ଏକମାତ୍ର ସହାୟ ହୋଇଥିଲା । ଏହି ପ୍ରକାରେ ଧୀର ଭାବରେ ଓ ଅତି ସନ୍ତର୍ପଣରେ ଯାଉଅଛନ୍ତି, ହଠାତ୍ ବହୁ ଶତସଂଖ୍ୟକ ସୈନ୍ୟ ତାହାଙ୍କର ଦୃଷ୍ଟିଗୋଚର ହେଲେ । ତାଙ୍କୁ ବୋଧହେଲା, ସେମାନେ ସତେ ଯେପରି ସମଗ୍ର ମରୁଭୂମିକୁ ଆଚ୍ଛନ୍ନ କରି ଆସୁଅଛନ୍ତି । କେତେବେଳେ ସେମାନେ ଗତି କରୁଥାଆନ୍ତି, କେତେ-ବେଳେ ଅବା ପଥ ମଧ୍ୟରେ ଅବସ୍ଥିତି କରୁଥାଆନ୍ତି । ସମସ୍ତଙ୍କ ଶରୀର ପଶୁଲୋମରେ ଆଚ୍ଛାଦିତ । ତତ୍ପରେ ଅସଂଖ୍ୟ ଅଶ୍ୱ, ଉଷ୍ଟ୍ର, ପତାକା ଓ ବଲ୍ଲମ ତାହାଙ୍କ ଦୃଷ୍ଟିପଥାରୂଢ଼ ହେଲା ଏବଂ ପୁଣି ମୁହୂର୍ତ୍ତକ ମଧ୍ୟରେ ସେସମସ୍ତ ଭିନ୍ନ ରୂପରେ ପରିଣତ ହୋଇଗଲା । ସେମାନେ କେତେ-ବେଳେ ଦୂରରେ, କେତେବେଳେ ସନ୍ନିକଟରେ ଦେଖାଯାଉଥିଲେ ଓ ପର ମୁହୂର୍ତ୍ତରେ କେଉଁଆଡ଼େ ଏକାବେଳକେ ଅଦୃଶ୍ୟ ହୋଇଗଲେ ।

---

## ପ୍ରଥମ ରକ୍ଷୀ ଦୁର୍ଗରେ ପ୍ରବେଶ

ପ୍ରଥମରେ ଏମାନଙ୍କୁ ଦେଖି ହୁଏନ୍‌ସାଂ ମନେ କଲେ ଯେ, ଏମାନେ ଦସ୍ୟୁ । କିନ୍ତୁ ପରେ ଅଦୃଶ୍ୟ ହୋଇଯିବା ଦେଖି ପିଶାଚ-ବିଷୟକ ମାନସିକ ଭ୍ରମ ବୋଲି ମନେ କଲେ । ଏହି ସମୟରେ ଏକ ଶୂନ୍ୟଶବ୍ଦ ତାଙ୍କୁ ଶୁଣାଗଲା—"ଭୟ ନାହିଁ, ଭୟ ନାହିଁ !" ସେ ଧୈର୍ଯ୍ୟାବଲମ୍ବନପୂର୍ବକ ଅଗ୍ରସର ହେବାକୁ ଲାଗିଲେ ଓ ପ୍ରାୟ ୮୦ ଲି ଅତିକ୍ରମ କଲା ଉତ୍ତାରେ ପ୍ରଥମ ରକ୍ଷିସ୍ତମ୍ଭ ତାହାଙ୍କ ଦୃଷ୍ଟିଗୋଚର

ହେଲା । କାଳେ ପ୍ରହରୀମାନେ ତାଙ୍କୁ ଦେଖି ପାରିବେ, ଏହି ଭୟରେ ସେ ଗୋଟିଏ ଗୁମ୍ଫାରେ ରାତି ପର୍ଯ୍ୟନ୍ତ ଲୁକ୍କାୟିତ ହୋଇ ରହିଲେ । ରାତିରେ ସ୍ତମ୍ଭର ପଶ୍ଚିମ ପାର୍ଶ୍ୱକୁ ଯାଇ ସେ ଜଳ ଦେଖିଲେ ଓ ହସ୍ତ ପ୍ରକ୍ଷାଳନ କରି ଜଳ ପାନ କଲେ । ତତ୍ପରେ ତାହାଙ୍କ ପାତ୍ରରେ ଜଳ ପୂର୍ଣ୍ଣ କରୁଅଛନ୍ତି, ଏହି ସମୟରେ ଗୋଟାଏ ଶର ତୀବ୍ର ବେଗରେ ଶଁ ଶଁ ଶବ୍ଦ କରି ତାହାଙ୍କ ଅଣ୍ଟୁ ସ୍ପର୍ଶ କଲା ଭଳି ଅବସ୍ଥାରେ ଚାଲିଗଲା ଏବଂ ପର ମୁହୂର୍ତ୍ତରେ ଆଉ ଗୋଟାଏ ଶର ତାହାଙ୍କ ସମ୍ମୁଖରେ ପଡିତ ହେଲା । ସେ ଧରା ପଡିଅଛନ୍ତି ବୋଲି ମନେ କରି ଉଚ୍ଚସ୍ୱରରେ ଚିତ୍କାର କରିଉଠିଲେ, "ମୁଁ ରାଜଧାନୀର ଜଣେ ନିରୀହ ସନ୍ନ୍ୟାସୀ, ମୋତେ ମାର ନାହିଁ ।" ତତ୍ପରେ ସେ ସ୍ତମ୍ଭ ଆଡ଼କୁ ଅଶ୍ୱ ଚଳାଇ ଘେନି-ଗଲେ । ପ୍ରହରୀମାନେ ଦ୍ୱାର ଖୋଲି ବାହାରକୁ ଆସି ଦେଖିଲେ ଯେ, ପ୍ରକୃତରେ ସେ ଜଣେ ସନ୍ନ୍ୟାସୀ ଏବଂ ତାଙ୍କୁ ଦୁର୍ଗପତିଙ୍କ ନିକଟକୁ ଘେନିଗଲେ । ଦୁର୍ଗପତିଙ୍କ ନାମ ଉଆଂସିୟାଂ । ହୁଏନ୍‌ସାଂଙ୍କୁ ଉତ୍ତମ-ରୂପେ ପରୀକ୍ଷା କରିବା ନିମିତ୍ତ ସେ ଅଗ୍ନି ଜାଳିବା ପାଇଁ ଆଦେଶ ଦେଲେ । ତତ୍ପରେ ତାହାଙ୍କୁ ଦେଖି କହିଲେ, "ଏ ଆମ୍ଭମାନଙ୍କର ଏହି ହୋସି ଦେଶର ସନ୍ନ୍ୟାସୀ ନୁହନ୍ତି । ପ୍ରକୃତରେ ଏ ରାଜଧାନୀରୁ ଆସିଅଛନ୍ତି ।" ତତ୍ପରେ ଦୁର୍ଗପତି ତାହାଙ୍କ ଭ୍ରମଣର ଉଦ୍ଦେଶ୍ୟ ଜିଜ୍ଞାସା କଲେ । ହୁଏନ୍‌ସାଂ ଉତ୍ତର କଲେ, "ଦୁର୍ଗପତି, ହୁଏନ୍‌ସାଂ ନାମକ ଜଣେ ସନ୍ନ୍ୟାସୀ ଧର୍ମତତ୍ତ୍ୱାନୁସନ୍ଧାନ ଉଦ୍ଦେଶ୍ୟରେ ବ୍ରାହ୍ମଣମାନଙ୍କ ଦେଶକୁ ଯାଉଥିବା ବିଷୟରେ ଲ୍ୟାଂ-ଚ୍ୱେର ଲୋକେ ଯେଉଁ ଗଳ୍ପ କରୁଅଛନ୍ତି, ଆପଣ କଅଣ ତାହା ଶୁଣି ନାହାନ୍ତି ?" ସେ କହିଲେ, "ହଁ, ମୁଁ ଶୁଣିଅଛି ଯେ, ହୁଏନ୍‌ସାଂ ପୂର୍ବାଞ୍ଚଳକୁ ଫେରି ଯାଇଅଛନ୍ତି । ଆପଣ ଏଠାକୁ କାହିଁକି ଆସିଅଛନ୍ତି ?" ତତ୍ପରେ ହୁଏନ୍‌ସାଂ ତାଙ୍କୁ ତାଙ୍କ ଅଶ୍ୱ ନିକଟକୁ ଘେନିଗଲେ ଓ ତାଙ୍କ ନାମାଙ୍କିତ ଅନେକ-

ଗୁଡ଼ିଏ ପଦାର୍ଥ ଦେଖାଇଲେ । ଦୁର୍ଗପତି ତାଙ୍କର ସମସ୍ତ କଥାକୁ ବିଶ୍ୱାସ କରି କହିଲେ, "ମହାଶୟ, ପଶ୍ଚିମକୁ ଯାଇଥିବା ପଥ ଅତ୍ୟନ୍ତ ଦୀର୍ଘ ଓ ବିପଦସଙ୍କୁଳ । ଆପଣଙ୍କ ଉଦ୍ଦେଶ୍ୟ ସିଦ୍ଧ ହେବା ଅସମ୍ଭବ । ମୁଁ ଆପଣଙ୍କର କୌଣସି ଦୋଷ ଦେଖୁ ନାହିଁ । ମୁଁ ତୁଂ-ହ୍ୱାଂ ଅଧିବାସୀ । ମୁଁ ନିଜେ ଆପଣଙ୍କୁ ସେଠାକୁ ଘେନିଯିବି । ସେଠାରେ ୟୁଂ-କୋ ନାମକ ଜଣେ ଋଷୀ ଅଛନ୍ତି । ସେ ଆପଣଙ୍କ ତୁଲ୍ୟ ଆଚାର୍ଯ୍ୟମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରନ୍ତି । ଆପଣଙ୍କୁ ଦେଖିଲେ ସେ ଆନନ୍ଦିତ ହେବେ । ଆପଣ କଅଣ ସେଠାକୁ ଯିବାକୁ ଇଚ୍ଛା କରନ୍ତି ?"

ହୁଏନ୍‌ସାଂ ଉତ୍ତର କଲେ, "ଲୋ-ୟାଂ ମୋର ଜନ୍ମସ୍ଥାନ । ମୋର ବାଲ୍ୟକାଳରୁ ଧର୍ମ ପ୍ରତି ଗଭୀର ଶ୍ରଦ୍ଧା । ଉ ଓ ସୁ ଉଭୟ ରାଜଧାନୀର ଧର୍ମଶାସ୍ତ୍ରାଧାୟୀ ପ୍ରସିଦ୍ଧ ଆଚାର୍ଯ୍ୟମାନେ ମୋ ନିକଟରୁ ଧର୍ମୋପଦେଶ ଶ୍ରବଣ କରିବା ସକାଶେ ଆସିଅଛନ୍ତି । ସେମାନଙ୍କ ସକାଶେ ମୁଁ ବହୁ ସ୍ଥାନରେ ଧର୍ମଶାସ୍ତ୍ର ବ୍ୟାଖ୍ୟାନ ଓ ପ୍ରଚାର କରୁଅଛି ଏବଂ ସାହସସହକାରେ କହି ପାରେ ଯେ, ମୁଁ ଆଧୁନିକ ଯୁଗର ପ୍ରଧାନ ଧର୍ମାଚାର୍ଯ୍ୟ । ମୁଁ ଅଦ୍ଭୁତ ଶିକ୍ଷା, ଯଶ ଓ ଉତ୍ସାହ ସକାଶେ ଲାଳାୟିତ । ଆପଣଙ୍କୁ ମୁଁ ବର୍ତ୍ତମାନ ପୃଷ୍ଠପୋଷକରୂପେ ପ୍ରାପ୍ତ ହେଲି । ଭିନ୍ନ ଭିନ୍ନ ବୌଦ୍ଧ ଧର୍ମଶାସ୍ତ୍ରମାନଙ୍କରେ ବିଭିନ୍ନ ମତ ଦେଖି ମୁଁ ସେ ସମସ୍ତର ମୀମାଂସା ବିଷୟରେ ସନ୍ଦିହାନ ହୋଇ ମୋର ଶାରୀରିକ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ବିପଦ ପ୍ରତି ଦୃକ୍‌ପାତ ନ କରି ପୃଥିବୀକୁ ପ୍ରଦତ୍ତ ଧର୍ମତତ୍ତ୍ୱର ପ୍ରକୃତ ତତ୍ତ୍ୱ ଅନ୍ୱେଷଣାର୍ଥେ ପଶ୍ଚିମ ଭୂଖଣ୍ଡକୁ ଯିବା ସକାଶେ ପ୍ରତିଜ୍ଞାବଦ୍ଧ ହୋଇଅଛି । ଆପଣ ମୋର ପୃଷ୍ଠପୋଷକ ହୋଇ ମୋର ଏ ସତ୍କାର୍ଯ୍ୟରେ ଉତ୍ସାହ ପ୍ରଦାନ କରିବା ପରିବର୍ତ୍ତେରେ ଏହି ସଂକଳ୍ପ ପରିତ୍ୟାଗ କରି ଫେରିଯିବା ସକାଶେ ଉପଦେଶ ଦେଉଅଛନ୍ତି । ତାହା ହେଲେ ଆପଣ କିପରି କହିପାରନ୍ତି ଯେ, ମୋ ପରି ଆପଣ ମନୁଷ୍ୟ

ଜୀବନର ନିବୁଦ୍ଧିତାକୁ ଘୃଣା କରି ନିର୍ବାଣପ୍ରାପ୍ତିର ବୀଜ ବପନ କରିବାକୁ ଇଚ୍ଛା କରନ୍ତି ? ଆପଣ ଯଦି ମୋତେ ଅବରୁଦ୍ଧ କରିବାକୁ ଇଚ୍ଛା କରନ୍ତି, ତେବେ ମୋର ଅନୁରୋଧ, ମୋତେ ଆପଣ ହତ୍ୟା କରନ୍ତୁ । ଜାଣିରଖନ୍ତୁ ଯେ, ହୁଏନ୍‌ସାଂ ଏହି ସ୍ଥାନରୁ ପାଦମାତ୍ର ପୂର୍ବ ଦିଗକୁ ଫିରିବ ନାହିଁ କିମ୍ବା ତାହାର ସଂକଳ୍ପ ତ୍ୟାଗ କରିବ ନାହିଁ ।”

ଏହା ଶ୍ରବଣ କରି ଦୁର୍ଗପତି ସାଂଙ୍କ ହୃଦୟ ଭାବାନ୍ତରରେ ପୂର୍ଣ୍ଣ ହେଲା ଏବଂ ତାହାଙ୍କ ଗଣ୍ଡସ୍ଥଳ ଅଶ୍ରୁପ୍ଳାବିତ ହୋଇଗଲା । କ୍ଷଣକାଳ ପରେ ସେ କହିଲେ, “ଆପଣଙ୍କର ଦର୍ଶନଲାଭ ମୋ ପକ୍ଷରେ ପରମ ସୌଭାଗ୍ୟ; ଆପଣଙ୍କ ସାହଚର୍ଯ୍ୟରେ ମୋର ହୃଦୟ ଆନନ୍ଦରେ ପରିପୂର୍ଣ୍ଣ ହୋଇଯାଉଅଛି । ବର୍ତ୍ତମାନ ଆପଣ ପଥଶ୍ରମରେ କ୍ଳାନ୍ତ ହୋଇଅଛନ୍ତି ; ଅତଏବ ରାତିରେ ଏଠାରେ ଶୟନ କରନ୍ତୁ । ରାତି ପ୍ରଭାତ ହେଲାରୁ ମୁଁ ନିଜେ ନେଇ ଆପଣଙ୍କୁ ପଥ ଦେଖାଇଦେବି ।” ତତ୍ପରେ ତାହାଙ୍କ ବିଶ୍ରାମ ସକାଶେ ସେ ସ୍ୱହସ୍ତରେ ଆସନ ରଚନା କରିଦେଲେ । ରାତି ପ୍ରଭାତ ହେଲା । ହୁଏନସାଂ କିଛି ଆହାର ଗ୍ରହଣ କଲା ଉତ୍ତାରେ ଦୁର୍ଗପତି ତାହାଙ୍କ ଜଳପାନ ପୂର୍ଣ୍ଣ କରିଆଣିବା ସକାଶେ ଜଣେ ଭୃତ୍ୟକୁ ଆଦେଶ ଦେଲେ । ତତ୍ପରେ ପଥ ସକାଶେ କିଛି ଆହାର-ସାମଗ୍ରୀ ପ୍ରଦାନ କରି ନିଜେ ତାହାଙ୍କ ସହିତ ଯାତ୍ରାରେ ବହିର୍ଗତ ହେଲେ । ୧୦ ଲି ପଥ ଅତିକ୍ରମ କଲା ପରେ ଏକ ସ୍ଥାନରେ ଉପସ୍ଥିତ ହୋଇ ସେ କହିଲେ, “ଏହି ପଥ ସଳଖ ହୋଇ ଚତୁର୍ଥ ଦୁର୍ଗକୁ ଯାଇଅଛି । ସେଠାର ଦୁର୍ଗପତି ଜଣେ ସଦାଶୟ ବ୍ୟକ୍ତି ଓ ମୋର ନିକଟ ଜ୍ଞାତି । ତାହାଙ୍କ ନାମ ପି-ଲୁଂ ଓ ଗୋତ୍ର ୟୋଂ । ତାହାଙ୍କୁ ଦେଖିଲେ ଆପଣ କହିବେ ଯେ, ମୁଁ ଆପଣଙ୍କୁ ପଠାଇଅଛି ।” ତତ୍ପରେ ସେ ଗଳଦଶ୍ରୁଲୋଚନରେ ପ୍ରଣିପାତପୂର୍ବକ ତାହାଙ୍କଠାରୁ ବିଦାୟ ଗ୍ରହଣ କଲେ ।

---

# ଚତୁର୍ଥ ଦୁର୍ଗରେ ଉପନୀତ

ରାତିପରିନ୍ତ ଚାଲି ଚାଲି ସେ ଚତୁର୍ଥ ଦୁର୍ଗରେ ଆସି ଉପନୀତ ହେଲେ । ଏଠାରେ ମଧ୍ୟ ଧରାପଡ଼ିବା ଭୟରେ ଅଳ୍ପ ଜଳ ମାତ୍ର ସଂଗ୍ରହ କରି ଚାଲିଯିବାକୁ ଇଚ୍ଛାକଲେ । ଜଳକୁଣ୍ଡ ନିକଟରେ ପାତ୍ର ପୂର୍ଣ୍ଣ କରୁଅଛନ୍ତି, ଏହି ସମୟରେ ପୂର୍ବ ପରି ଶବ୍ଦାୟମାନ ବେଗରେ ଗୋଟିଏ ନିକ୍ଷିପ୍ତ ଶର ତାଙ୍କ ଆଡ଼କୁ ଆସିଲା । ହୁଏନ୍‌ସାଂ ଅଳ୍ପ ଚାଲିଯାଇ ପୂର୍ବ ପରି ଚିତ୍କାର କରିଉଠିଲେ ଓ ଦୁର୍ଗ ଆଡ଼କୁ ଅଗ୍ରସର ହେଲେ । ପ୍ରହରୀଗଣ ତାହାଙ୍କୁ ଦେଖି ଦୁର୍ଗ ମଧ୍ୟକୁ ଘେନିଗଲେ । ଦୁର୍ଗପତିଙ୍କ ପ୍ରଶ୍ନର ଉତ୍ତରରେ ସେ କହିଲେ, "ମୁଁ ଭାରତବର୍ଷକୁ ଯାଉଅଛି । ତହିଁର ପଥ ଏହି ଦିଗରେ । ପ୍ରଥମ ଦୁର୍ଗାଧିପତି ଉଆଂ-ସିୟାଂ ଆପଣଙ୍କ ସହିତ ସାକ୍ଷାତ୍ କରିବା ପାଇଁ ମୋତେ ଆଦେଶ କରିଅଛନ୍ତି ।" ଏହା ଶୁଣି ସେ ଅତ୍ୟନ୍ତ ପ୍ରୀତ ହେଲେ ଓ ରାତିରେ ତାହାଙ୍କୁ ସସମ୍ମାନରେ ସ୍ଥାନ ଦେଲେ, ତାହାଙ୍କୁ ଗୋଟିଏ ଚର୍ମନିର୍ମିତ ଜଳାଧାର ଓ ତାହାଙ୍କ ଅଶ୍ୱକୁ ତୃଣ ଦାନ କଲେ । ତତ୍ପରେ ସେ ତାହାଙ୍କୁ କହିଲେ, "ଆପଣ ପଞ୍ଚମ ଦୁର୍ଗ ଆଡ଼କୁ ଯିବେ ନାହିଁ । ସେଠାର ଦୁର୍ଗରକ୍ଷକ ଓ ପ୍ରହରୀମାନେ ଅତ୍ୟନ୍ତ କ୍ରୂର ଓ ଭୀଷଣପ୍ରକୃତିବିଶିଷ୍ଟ । ସେମାନଙ୍କ ହସ୍ତରେ ଆପଣଙ୍କର ବିପଦ ଘଟିପାରେ । ଏଠାରୁ ଏକଶତ ଲି ଦୂରବର୍ତ୍ତୀ ୟେମା ନଦୀରେ ଆପଣ ଜଳ ସଂଗ୍ରହ କରି ଚାଲିଯିବେ ।

ଏହି ସ୍ଥାନ ତ୍ୟାଗ କରି ହୁଏନ୍‌ସାଂ ମୋ-କ୍ୟା-ୟେନ୍ ନାମକ ମରୁଭୂମିରେ ପ୍ରବିଷ୍ଟ ହେଲେ । ଏହି ମରୁଭୂମିର ବିସ୍ତୃତି ଆଠଶତ ଲି । ତାହାର ପୁରାତନ ନାମ ଶା-ଲେ; ଅର୍ଥାତ୍ ବାଲୁକାମୟ ନଦୀ । ଦିଗନ୍ତ-ବିସ୍ତୃତ ବାଲୁକାରାଶି ! ଆକାଶରେ ପକ୍ଷୀ, ନିମ୍ନଦେଶରେ ପଶୁ,

ଜଳ କମ୍ବା ଉଦ୍ଭିଦର ଚିହ୍ନମାତ୍ର ନାହିଁ । ବେଳେ ବେଳେ ହୁଏନସାଂ ସୂର୍ଯ୍ୟଙ୍କ ଛାୟା ପ୍ରତି ଦୃଷ୍ଟି ନବେଶ କରି ଭକ୍ତିପୂର୍ଣ୍ଣ ହୃଦୟରେ ବୋଧି-ସତ୍ତ୍ୱଙ୍କୁ ( କ୍ୱାନ୍-ସାଇ-ୟିନ୍ ) ହୃଦୟରେ ଧ୍ୟାନ କରି ଫା-ଜୋ-ସିନ୍ ( ପ୍ରାଜ୍ଞ ପାରମିତ ହୃଦୟସୂତ୍ର ) ଉଚ୍ଚାରଣ କରୁଥିଲେ ।

'ଶୁ' ରେ ଅବସ୍ଥାନ କାଳରେ ଏକ ରୁଗ୍ଣ ବ୍ୟକ୍ତି ସହିତ ହୁଏନ୍‌ସାଂଙ୍କର ସାକ୍ଷାତ୍ ହୋଇଥିଲା । ସେ ବହୁଛିଦ୍ରବିଶିଷ୍ଟ ଛିନ୍ନ ଓ ମଳିନ ବସ୍ତ୍ର ପରିଧାନ କରିଥିଲେ ଏବଂ ତାହାଙ୍କ ଦେହଯାକ କ୍ଷତପୂର୍ଣ୍ଣ ହୋଇଥିଲା । ଦୟାପରବଶ ହୋଇ ସେ ତାଙ୍କୁ ମଠକୁ ଘେନଗଲେ ଏବଂ ବସ୍ତ୍ର ଓ ଆହାର ପ୍ରଦାନ କଲେ । ରୁଗ୍ଣ ବ୍ୟକ୍ତି କୃତଜ୍ଞତାର ନିଦର୍ଶନସ୍ୱରୂପ ତାଙ୍କୁ ଉକ୍ତ ପ୍ରାଜ୍ଞପାରମିତ ହୃଦୟସୂତ୍ର ଗ୍ରନ୍ଥଟି ପ୍ରଦାନ କରିଥିଲେ । ହୁଏନ୍‌ସାଂ ଏହି ସୂତ୍ରକୁ କଣ୍ଠସ୍ଥ କରି ବାରମ୍ବାର ଆବୃତ୍ତି କରୁଥିଲେ । ଶାଂ-ଲେ ନଦୀ ଅତିକ୍ରମ କରିବା ସମୟରେ ସେ ମନେକଲେ ଯେ, ପିଶାଚ ଏବଂ ଅଦ୍ଭୁତ ରୂପବିଶିଷ୍ଟ ଭୂତଗଣ ତାହାଙ୍କୁ ଚତୁର୍ଦ୍ଦିଗରେ ବେଷ୍ଟନ କରି ରହିଅଛନ୍ତି । ସେ ହୃଦୟରେ ବୋଧିସତ୍ତ୍ୱଙ୍କୁ ଧ୍ୟାନ କଲେ; କିନ୍ତୁ ସେମାନଙ୍କୁ ଘଉଡ଼ି ପାରିଲେ ନାହିଁ । କିନ୍ତୁ ଯେତେ-ବେଳେ ଏହି ସୂତ୍ର ଆବୃତ୍ତି କଲେ, ମୁହୂର୍ତ୍ତି ମଧ୍ୟରେ ସେମାନେ ସମସ୍ତେ ଅଦୃଶ୍ୟ ହୋଇଗଲେ । ଯେତେବେଳେ ସେ ବିପଦ୍‌ଗ୍ରସ୍ତ ହେଉଥିଲେ, ଏହି ସୂତ୍ର ତାହାଙ୍କ ଉଦ୍ଧାରର ଏକମାତ୍ର ଉପାୟ ଥିଲା ।

---

## ପଥ-ଭ୍ରଷ୍ଟ

ଏକଶତ ଲି ଅତିକ୍ରମ କରି ହୁଏନ୍‌ସାଂ ପଥ ହରାଇଲେ । ୟେ-ମା ନଦୀରେ ଜଳପାନ ପୂର୍ବକ କରିବା ପାଇଁ ସେ ଇଚ୍ଛା କରିଥିଲେ;

କିନ୍ତୁ ତାହା ଆଉ ପାଇଲେ ନାହିଁ । ଏହି ସ୍ଥାନରେ ସେ ନିଜ ଜଳପାତ୍ରର ନଳରୁ ଜଳ ପାନ କରିବାକୁ ଯାଉଅଛନ୍ତି , ଏହି ସମୟରେ ହଠାତ୍ ପାତ୍ରଟି ହସ୍ତଚ୍ୟୁତ ହୋଇ ସମସ୍ତ ଜଳ ଭୂମିରେ ପତିତ ହୋଇଗଲା; ସୁତରାଂ ଏକ ସହସ୍ର ଲି ପଥର ଜଳ ଏକ ମୁହୂର୍ତ୍ତରେ ନଷ୍ଟ ହୋଇଗଲା । ସେ ଯେତେ ଅଗ୍ରସର ହେଉଥାଆନ୍ତି, ମାର୍ଗ ସେତିକି ବକ୍ର ଓ କୁଟିଳ ବୋଧ ହେଉଥାଏ; ସୁତରାଂ କେଉଁ ମାର୍ଗ ଅନୁସରଣ କରିବେ, ଆଦୌ ବୁଝିପାରୁ ନ ଥାନ୍ତି । ପରଶେଷରେ ପୂର୍ବଦିଗସ୍ଥ ଚତୁର୍ଥ ଦୁର୍ଗକୁ ଫେରିଯିବା ପାଇଁ ଇଚ୍ଛାକଲେ । ଏହି ଉଦ୍ଦେଶ୍ୟରେ ସେ ଦଶ ଲି ପଥ ଅତିକ୍ରମ କଲେ; କିନ୍ତୁ ପରେ ଭାବିଲେ, "ପ୍ରଥମରେ ମୁଁ ସଂକଳ୍ପ କରିଥିଲି ଯେ, ଭାରତବର୍ଷରେ ପହଞ୍ଚିବାରେ କୃତକାର୍ଯ୍ୟ ନ ହେଲେ ମୁଁ ଏକ ପାଦ ସୁଦ୍ଧା ପୂର୍ବଦିଗକୁ ଫେରିବି ନାହିଁ । ତାହାହେଲେ ବର୍ତ୍ତମାନ ମୁଁ କଅଣ କରିବାକୁ ଯାଉଅଛି ? ପୂର୍ବଦିଗକୁ ପ୍ରତ୍ୟାବର୍ତ୍ତନ କରି ଜୀବନ ଧାରଣ କରି ରହିବା ଅପେକ୍ଷା ପଶ୍ଚିମକୁ ଯାତ୍ରା କରିବା ଉଦ୍ୟମରେ ପ୍ରାଣତ୍ୟାଗ କରିବା ସର୍ବଥା ଶ୍ରେୟସ୍କର ।" ତତ୍ପରେ ଅଶ୍ୱ ପ୍ରତ୍ୟାବର୍ତ୍ତନପୂର୍ବକ ବୋଧିସତ୍ତ୍ୱଙ୍କୁ ହୃଦୟରେ ଧ୍ୟାନ କରି ଉତ୍ତର ପଶ୍ଚିମ ଅଭିମୁଖରେ ଅଗ୍ରସର ହେଲେ । ମସ୍ତକୋପରି ଅନନ୍ତ ଆକାଶମଣ୍ଡଳ, ଚତୁର୍ଦ୍ଦିଗରେ ଦିଗନ୍ତବିସ୍ତୃତ ବାଲୁକାରାଶି; ମନୁଷ୍ୟ, ପଶୁ, ପକ୍ଷୀର ଚିହ୍ନବର୍ତ୍ତ ନାହିଁ । ରାତ୍ରିରେ ଭୂତ ପିଶାଚଗଣ ନକ୍ଷତ୍ର ତୁଲ୍ୟ ଆଲୋକ-ମାଳା ରଚନା କରୁଅଛନ୍ତି । ଦିବସରେ ବର୍ଷାକାଳୀନ ବାରିଧାରା ତୁଲ୍ୟ ପ୍ରବଳ ପ୍ରଭଞ୍ଜନ ବାଲୁକାରାଶି ବର୍ଷଣ କରୁଅଛି । ତଥାପି ଏ ସମସ୍ତ ତାହାଙ୍କୁ ଆଦୌ ହତୋତ୍ସାହ କରି ପାରୁ ନ ଥିଲା; କିନ୍ତୁ ଜଳାଭାବ ଯୋଗୁଁ ସେ ଅତ୍ୟନ୍ତ କ୍ଲେଶ ଅନୁଭବ କଲେ । ତୃଷାରେ ତାହାଙ୍କର କଣ୍ଠ ଏତେ ଶୁଷ୍କ ହୋଇଗଲା ଯେ, ସେ ଆଉ ଅଗ୍ରସର ହୋଇପାରିଲେ ନାହିଁ । ଚାରି ରାତି ଓ ପାଞ୍ଚଦିନଯାଏଁ ତାହାଙ୍କ କଣ୍ଠ ଓ ତୁଣ୍ଡ ଓଦା

କରିବା ପାଇଁ ସେ ବିନ୍ଦୁମାତ୍ର ଜଳ ପାଇଲେ ନାହିଁ । ଏହି ସମୟରେ ସେ ପାକସ୍ଥଳୀରେ ଜ୍ୱାଳା ଯନ୍ତ୍ରଣା ଅନୁଭବ କଲେ ଏବଂ ନିତାନ୍ତ ଅବସନ୍ନ ହୋଇପଡ଼ିଲେ । ଆଉ ପାଦେ ମାତ୍ର ଅଗ୍ରସର ହୋଇ ନ ପାରି ସେ ଶ୍ରାନ୍ତ ହୃଦୟରେ ବାଲୁକାଶଯ୍ୟା ଉପରେ ଶୋଇ ବୋଧି-ସତ୍ତ୍ୱଙ୍କୁ ଅବିରାମ ଧ୍ୟାନ କରିବାକୁ ଲାଗିଲେ । କାତରକଣ୍ଠରେ ତାହାଙ୍କୁ ଆହ୍ୱାନ କରି କହିଲେ, "ପ୍ରଭୋ ! ହୁଏନ୍‌ସାଂ ଧନ, ପାର୍ଥିବ ଅଭ୍ୟୁଦୟ ବା ଯଶୋଲିପ୍‌ସା-ପ୍ରଣୋଦିତ ହୋଇ ଏହି ଦୁଃସାହସିକ କାର୍ଯ୍ୟରେ ପ୍ରବୃତ୍ତ ହୋଇ ନାହିଁ । ସର୍ବଶ୍ରେଷ୍ଠ ତତ୍ତ୍ୱାନୁସନ୍ଧାନ ତାହାର ହୃଦୟର ଏକମାତ୍ର ଲକ୍ଷ୍ୟ । ମୁଁ ଜାଣେ ଯେ, ବୋଧିସତ୍ତ୍ୱ ସସ୍ନେହରେ ପ୍ରାଣୀମାନଙ୍କୁ ବିପଦରୁ ଉଦ୍ଧାର କରିବା ସକାଶେ ସର୍ବଦା ତତ୍ପର । ମୋର ଏହି ଶରୀର ଦୁଃଖ କଅଣ ସେ ଜାଣୁ ନାହାନ୍ତି ?" ଏହିପ୍ରକାରେ ହୁଏନ୍‌ସାଂ ପାଞ୍ଚ ଦିନ କାଳ ତଦ୍‌ଗତ ହୃଦୟରେ ଅବିରାମ ଧ୍ୟାନମଗ୍ନ ହୋଇ ରହିଲେ । ପଞ୍ଚମ ରାତ୍ରିର ମଧ୍ୟଯାମରେ ତୁଷାରସିକ୍ତ ବାୟୁ-ପ୍ରବାହ ତାହାଙ୍କ ତପ୍ତ ପ୍ରାଣକୁ ହଠାତ୍ ଉଜ୍ଜୀବିତ କରିପକାଇଲା । ତାହାଙ୍କ ଚକ୍ଷୁର ଲୁପ୍ତ ଦୃଷ୍ଟିଶକ୍ତି ପୁଣି ଫେରି ଆସିଲା ଏବଂ ଅଶ୍ୱ ଶକ୍ତି ସଞ୍ଚୟ କରି ଦଣ୍ଡାୟମାନ ହେବାରେ ସମର୍ଥ ହେଲା । ଶରୀର ଉତ୍ତେଜିତ ହେଲାରୁ ସେ ଭୂତଳରେ ପତିତ ହୋଇ ଅଳ୍ପ ସମୟ ପର୍ଯ୍ୟନ୍ତ ନିଦ୍ରାରେ ଅଭିଭୂତ ହେଲେ । ନିଦ୍ରାରେ ସେ ସ୍ୱପ୍ନରେ ଦେଖିଲେ ଯେ, ସେ ନିଜେ ପ୍ରବଳ ଶକ୍ତିସମ୍ପନ୍ନ,ଦୀର୍ଘକାୟ ଏକ ଦେବତାରେ ପରିଣତ ହୋଇ-ଅଛନ୍ତି ଏବଂ ପରଶୁ ଉତ୍ତୋଳନ କରି କହୁଅଛନ୍ତି , "ଏଠାରେ କାହିଁକି ଶୋଇ ରହିଛ, ଅଗ୍ରସର ହୁଅ, ଅଗ୍ରସର ହୁଅ ।"

---

## ତୁଷାରେ କଣ୍ଠ ଶୁଷ୍କ

ହୁଏନ୍‌ସାଂ ନଦୀ ପରିହାରପୂର୍ବକ ଦଶ ଲି ପଥ ଅତିକ୍ରମ କରି-ଅଛନ୍ତି, ଏହି ସମୟରେ ତାହାଙ୍କ ଅଶ୍ୱ ହଠାତ୍ ଅନ୍ୟ ଦିଗରେ ଧାବମାନ

ହେବାକୁ ଲାଗିଲା । ସେ କୌଣସି ପ୍ରକାରେ ତାହାର ଗତି ରୁଦ୍ଧ କରିପାରିଲେ ନାହିଁ । କିଛି ଦୂର ଅତିକ୍ରମ କଲାରୁ ଏକ ବିସ୍ତୀର୍ଣ୍ଣ ସୁଶ୍ୟାମଳ ତୃଣାଚ୍ଛାଦିତ ପ୍ରାନ୍ତର ତାହାଙ୍କର ଦୃଷ୍ଟିଗୋଚର ହେଲା । ଅଶ୍ୱରୁ ଅବତରଣ କରି ସେ ପ୍ରାନ୍ତରରେ ତାହାକୁ ମୁକ୍ତ କରିଦେଲେ । ଅଶ୍ୱ ସନ୍ତୋଷସହକାରେ ତୃଣାହାର ସମାପ୍ତ କଲାରୁ ପୁନର୍ବାର ଆରୋହଣ କରି ଯାତ୍ରାରମ୍ଭ କରିବାକୁ ଯାଉଅଛନ୍ତି, ଏହି ସମୟରେ ଅଳ୍ପ ଦୂରରେ ଦର୍ପଣ ତୁଲ୍ୟ ସ୍ୱଚ୍ଛ ସୁସ୍ୱାଦୁ ଜଳପୂର୍ଣ୍ଣ ଏକ ସରୋବର ତାହାଙ୍କ ଦୃଷ୍ଟିଗୋଚର ହେଲା । ସେ ଅଶ୍ୱରୁ ଅବତରଣ କରି ଜଳପାନରେ ତାହାଙ୍କ ଉଦର ପୂରଣ କଲେ । ଶରୀରରେ ଜୀବନୀଶକ୍ତି ତୀବ୍ରବେଗରେ ସଞ୍ଚାରିତ ହେବାକୁ ଲାଗିଲା । ଅଶ୍ୱ ମଧ୍ୟ ତଦ୍ରୂପ ଜଳପାନରେ ଉତ୍ତେଜିତ ହୋଇଉଠିଲା । ଏହି ତୃଣ ଓ ଜଳ ସ୍ୱାଭାବିକ ନୁହେଁ; ଦୈବପ୍ରେରିତ ବୋଲି ସହଜରେ ଅନୁମାନ କରାଯାଇପାରେ । ବୋଧିସତ୍ତ୍ୱ ଭକ୍ତ ପ୍ରତି ଅସୀମ ଦୟାପରବଶ ହୋଇ ତାହାଙ୍କ ଅକପଟ ଦୈବୀଶକ୍ତିର ପରିଚୟ ପ୍ରଦାନ କରିଥିଲେ ।

---

## ଇ-ଗୁ ପଥରେ ଅଗ୍ରସର

ଉପର୍ଯ୍ୟୁକ୍ତ ପ୍ରାନ୍ତର ଓ ସରୋବର ନିକଟରେ ସେ ଗୋଟିଏ ଦିନ ଯାପନ କରି ପର ଦିବସରେ ତୃଣ ସଂଗ୍ରହ ଓ ପାତ୍ରରେ ଜଳପୂର୍ଣ୍ଣ କରି ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ଦୁଇଦିନ ପରେ ସେ ମରୁଭୂମି ଅତିକ୍ରମ କରି ଇ-ଗୁ ରାଜ୍ୟରେ ପ୍ରବିଷ୍ଟ ହେଲେ । ମାର୍ଗରେ ସେ ଆହୁରି କେତେ କେତେ ଯେ ବିପଦ ଅତିକ୍ରମ କଲେ, ତାହା ବର୍ଣ୍ଣନାତୀତ । ଇ-ଗୁରେ ସେ ଏକ ମନ୍ଦିରରେ ଯାଇ ଆଶ୍ରୟ ଗ୍ରହଣ କଲେ । ସେଠାରେ ତିନିଜଣ ଚୀନ ଦେଶୀୟ ଆଚାର୍ଯ୍ୟଙ୍କ ସହିତ ତାହାଙ୍କର ସାକ୍ଷାତ୍ ହେଲା । ତନ୍ମଧ୍ୟରୁ ଜଣେ ବୃଦ୍ଧ । ତାହାଙ୍କର

ପରିଚ୍ଛଦ କଣ୍ଟବିଦ୍ଧବିଚ୍ଛିନ୍ନ ଓ ପଦଦ୍ୱୟ ନଗ୍ନ ଥିଲା । ହୁଏନ୍‌ସାଂଙ୍କୁ ଦେଖିବାମାତ୍ରେ ବୃଦ୍ଧ ତାହାଙ୍କୁ ଆଲିଙ୍ଗନପୂର୍ବକ କରୁଣ ସ୍ୱରରେ ଚିତ୍କାର କରି କହିବାକୁ ଲାଗିଲେ, "ଏତେ ଦିନ ପରେ ଯାହା ମୋର ଜଣେ ଦେଶବାସୀଙ୍କୁ ଦେଖିଲି !" ହୁଏନ୍‌ସାଂଙ୍କର ମଧ୍ୟ ଗଣ୍ଡସ୍ଥଳ ଅଶ୍ରୁଜଳରେ ପ୍ଲାବିତ ହେଲା ।

## ଇ-ଗୁ ରାଜ୍ୟରେ ପ୍ରବେଶ

ବିଦେଶୀୟ ଆଚାର୍ଯ୍ୟ ଓ ନୃପତିଗଣ ଆସି ହୁଏନ୍‌ସାଂଙ୍କୁ ଅଭିବାଦନ କଲେ । ଇ-ଗୁର ରାଜା ତାହାଙ୍କୁ ରାଜପ୍ରାସାଦକୁ ନିମନ୍ତ୍ରଣ କରି ତାହାଙ୍କର ଯଥୋଚିତ ସତ୍କାର କଲେ ।

ଏହି ସମୟରେ କୋ-ଚାଂର ରାଜା ଇ-ଗୁର ରାଜାଙ୍କ ନିକଟକୁ କେତେକ ଜଣ ଦୂତ ପ୍ରେରଣ କରିଥିଲେ । ସେମାନେ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲାଦିନ ହୁଏନ୍‌ସାଂଙ୍କ ସହିତ ସାକ୍ଷାତ୍ କରିଥିଲେ । ସୁତରାଂ ସେମାନେ ରାଜାଙ୍କୁ ତାହାଙ୍କ ଆଗମନ-ବାର୍ତ୍ତା ଜ୍ଞାପନ କଲେ । ଏହା ଶ୍ରବଣ କରି ସେ ହୁଏନ୍‌ସାଂଙ୍କୁ ପାଛୋଟି ଆଣିବା ସକାଶେ ବହୁସଂଖ୍ୟକ ଅଶ୍ୱାରୋହୀ ସୈନ୍ୟ ଓ ଉଚ୍ଚପଦସ୍ଥ ରାଜକର୍ମଚାରୀ ମଧ୍ୟ ପ୍ରେରଣ କଲେ । ସେମାନେ ଦଶଦିନରେ ପହଞ୍ଚି ହୁଏନ୍‌ସାଂଙ୍କୁ ରାଜାଙ୍କ ଅନୁରୋଧ ଜ୍ଞାପନ କଲେ । ହୁଏନ୍‌ସାଂ ତାହାଙ୍କ ଉଦ୍ଦିଷ୍ଟ ପଥରେ ଯିବାକୁ ଇଚ୍ଛା କରିଥିଲେ ହେଁ ଅଗତ୍ୟା କୋ-ଚାଂ ନରପତିଙ୍କ ଅନୁରୋଧ ରକ୍ଷା କରି ତାହାଙ୍କ ରାଜଧାନୀ ଅଭିମୁଖରେ ଯାତ୍ରାକଲେ । ଛଅ ଦିନ ପରେ ଦକ୍ଷିଣ ଦିଗସ୍ଥ ମରୁଭୂମି ଅତିକ୍ରମ କରି ସେ ସହଚରମାନଙ୍କ ସମଭିବ୍ୟାହାରରେ ସୀମାନ୍ତବର୍ତ୍ତୀ ପି-ଲି ନାମକ ନଗରରେ ଉପସ୍ଥିତ ହେଲେ । ଏହିଠାରେ ତାହାଙ୍କୁ ସନ୍ଧ୍ୟା ହେଲା ଓ ଏଠାରେ ରାତ୍ରି ଯାପନ କରିବାକୁ ସେ ଇଚ୍ଛା ପ୍ରକାଶ କଲେ । କିନ୍ତୁ ଦୂତ ଓ କର୍ମଚାରୀମାନେ

କହିଲେ, "ରାଜଧାନୀ ଅତି ନିକଟରେ, ପଥରେ ଘୋଡ଼ାର ଡ଼ାକ ବସା ହୋଇଛି । ଆମ୍ଭମାନଙ୍କର ଅନୁରୋଧ, ଏଠାରେ ନ ରହି ଅଗ୍ରସର ହୁଅନ୍ତୁ ।" ଏତେଦୂର ଯାଏ ହୁଏନ୍‌ସାଂ ନିଜର ରକ୍ତବର୍ଣ୍ଣ ଅଶ୍ୱରେ ଆରୋହଣ କରି ଆସିଥିଲେ । ପି-ଲିରେ ତାକୁ ଛାଡିଦେଇ ପରେ ତାହା ତାଙ୍କ ପାଖକୁ ପଠାଇଦେବା ପାଇଁ ଆଦେଶ କରିଗଲେ ଏବଂ ଅନ୍ୟ ଅଶ୍ୱ ଆରୋହଣ କରି ଅର୍ଦ୍ଧରାତ୍ର ସମୟରେ ସେ ରାଜ-ଧାନୀରେ ଉପସ୍ଥିତ ହେଲେ । ଯଥାସମୟରେ ତାହାଙ୍କ ଆଗମନ-ବାର୍ତ୍ତା ରାଜାଙ୍କ ନିକଟକୁ ପ୍ରେରିତ ହେଲା । ତାହାଙ୍କ ଆଜ୍ଞାରେ ରାଜଦ୍ୱାର ତତ୍‌କ୍ଷଣାତ୍ ଉନ୍ମୁକ୍ତ ହେଲା ।

---

## ଇ-ଗ୍ରୁରେ ପରିଚର୍ଯ୍ୟା

ହୁଏନ୍‌ସାଂ ରାଜପ୍ରାସାଦ ମଧ୍ୟରେ ପ୍ରବେଶ କଲାରୁ ରାଜା ପାରିଷଦବର୍ଗ ପରିବେଷ୍ଟିତ ହୋଇ ସ୍ୱୟଂ ତାହାଙ୍କ ସହିତ ସାକ୍ଷାତ୍ କଲେ । ସେ ଅନ୍ତଃପୁରସ୍ଥ ଏକ ପ୍ରଶସ୍ତ କକ୍ଷମଧ୍ୟରେ ପ୍ରବିଷ୍ଟ ହୋଇ ବହୁମୂଲ୍ୟ ଚନ୍ଦ୍ରାତପ ତଳେ ରଚିତ ମଞ୍ଚୋପରି ଆସନ ଗ୍ରହଣ କଲେ । ରାଜା ଯଥାବିଧି ଅଭିବାଦନପୁରଃସର ବିନୀତ ଭାବରେ କହିଲେ,"ଭବଦୀୟ ନାମ ଶ୍ରବଣ କଲା ଦିନରୁ ମୁଁ ଆହାର ଓ ନିଦ୍ରା ପରିତ୍ୟାଗ କରିଅଛି । ପଥର ଦୂରତା ବିବେଚନାରେ ମୁଁ ଆଶା କରିଥିଲି ଯେ, ଆଜି ରାତିରେ ଭବଦୀୟ ଶୁଭାଗମନ ସୁନିଶ୍ଚିତ । ତେଣୁ ରାଣୀ ଓ ମୋର ପୁତ୍ରକନ୍ୟାଗଣ ଶୟନ ତ୍ୟାଗ କରି ଧର୍ମଗ୍ରନ୍ଥ ପଠନରେ ଭବଦୀୟ ଶୁଭାଗମନ ପ୍ରତୀକ୍ଷା କରି ରହିଅଛନ୍ତି ।

ଅଳ୍ପ ସମୟରେ ରାଣୀ ବହୁସଂଖ୍ୟକ ପରିଚାରିକାଙ୍କ ସମଭିବ୍ୟାହାରରେ ଆସି ତାହାଙ୍କୁ ଅଭିବାଦନ କଲେ ।

ବହୁବିଧ ବାକ୍ୟାଳାପରେ ରାତିରେ ବହୁ ସମୟ ଅତିବାହିତ ହେଲା । ରାତି ପ୍ରଭାତ ହୋଇ ଆସିଲା ବେଳକୁ ହୁଏନ୍‌ସାଂ କହିଲେ, "ମୁଁ ଅତ୍ୟନ୍ତ ପଥଶ୍ରାନ୍ତ ଅନୁଭବ କରୁଅଛି । ସୁତରାଂ କିଛି ବିଶ୍ରାମ ଆବଶ୍ୟକ ।" ରାଜା ପ୍ରାସାଦ ଅଭ୍ୟନ୍ତରକୁ ଗମନ କଲେ ଏବଂ ହୁଏନ୍‌ସାଂଙ୍କ ପରିଚର୍ଯ୍ୟା ସକାଶେ କେତେକ ଜଣ ଭୃତ୍ୟ ନିଯୁକ୍ତ କରିଦେଇ ଗଲେ ।

## ଇ-ଗୁ ନରପତିଙ୍କ ଅନୁରୋଧ

ପ୍ରତ୍ୟୁଷରେ ହୁଏନ୍‌ସାଂ ଗାତ୍ରୋତ୍ଥାନ କରିବା ପୂର୍ବରୁ ରାଜା ଓ ରାଣୀ ଭୃତ୍ୟସମଭିବ୍ୟାହାରରେ ତାହାଙ୍କ ନିର୍ଦ୍ଦିଷ୍ଟ କକ୍ଷର ଦ୍ୱାର-ଦେଶରେ ଅପେକ୍ଷା କରୁଥିଲେ । ଦ୍ୱାରଦେଶକୁ ଯାଇ ତାହାଙ୍କୁ ଅଭିବାଦନପର୍ବକ ରାଜା କହିଲେ, "ଆପଣ ଏହି ଦୀର୍ଘ ଯାତ୍ରାରେ କେତେ ବାଧାବିଘ୍ନ ଓ ବିପଦ ଅତିକ୍ରମ କରିଅଛନ୍ତି, ସେ ସମସ୍ତ ଶ୍ରବଣ କରି ଏହି ଦାସ ବିସ୍ମୟରେ ଅଭିଭୂତ ହୋଇଅଛି ।" ଏ ସମସ୍ତ ବାକ୍ୟ ଉଚ୍ଚାରଣ କରିବା ସମୟରେ ରାଜାଙ୍କର ଚକ୍ଷୁଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇଯାଉଥିଲା ଏବଂ ସେ ବାରମ୍ବାର ବିସ୍ମୟସୂଚକ ଶବ୍ଦସମୂହ ଉଚ୍ଚାରଣ କରୁଥିଲେ । ତତ୍ପରେ ତାହାଙ୍କ ସକାଶେ ଆହାର୍ଯ୍ୟ ଆନୀତ ହେଲା । ଆହାରାନ୍ତେ ସ୍ୱୟଂ ରାଜା ତାହାଙ୍କୁ ପ୍ରାସାଦସଂଲଗ୍ନ ଉପାସନା-ଗୃହକୁ ଘେନିଗଲେ ଏବଂ ସେଠାରେ ରଖିଦେଇ ତାହାଙ୍କ ପରିଚର୍ଯ୍ୟା ସକାଶେ କେତେକ ଭୃତ୍ୟ ନିଯୁକ୍ତ କରିଦେଲେ ।

ଏହି ଉପାସନା-ଗୃହରେ ତୁନ୍ ନାମକ ଜଣେ ଧର୍ମାଚାର୍ଯ୍ୟ ଥିଲେ । ସେ ପୂର୍ବେ ଚାଙ୍ଗାନରେ ଅଧ୍ୟୟନ ସମାପ୍ତ କରି ଧର୍ମଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିଲେ । ରାଜା ତାହାଙ୍କୁ ହୁଏନ୍‌ସାଂଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଆଦେଶ କଲେ । ତତ୍ପରେ ଅଶୀ ବର୍ଷବୟସ୍କ

କ୍ୱୋ-ଠିଂ-ଉଆଂ ନାମକ ଧର୍ମାଚାର୍ଯ୍ୟଙ୍କୁ ହୁଏନ୍‌ସାଂଙ୍କ ସଙ୍ଗରେ ରହି ତାହାଙ୍କୁ ସେଠାରେ ରହିବା ଓ ପଶ୍ଚିମ ଭୂଖଣ୍ଡକୁ ନ ଯିବା ସକାଶେ ପ୍ରବର୍ତ୍ତାଇବା ପାଇଁ କହିଲେ । ଏହି ଉଦ୍ଦେଶ୍ୟରେ ସେ ହୁଏନ୍‌ସାଂଙ୍କୁ ବହୁବିଧ ଅନୁନୟ କଲେ । କିନ୍ତୁ ସେ ତହିଁରେ ସମ୍ମତ ହେଲେ ନାହିଁ ଏବଂ ଦଶ ଦିନ ଅବସ୍ଥାନ ପରେ ଯିବା ସକାଶେ ରାଜାଙ୍କ ଅନୁମତି ପ୍ରାର୍ଥନା କଲେ । ରାଜା କହିଲେ, "ଏଠାରେ ରହିବା ପାଇଁ ଆପଣଙ୍କୁ ଅନୁରୋଧ କରିବା ସକାଶେ ମୁଁ ଠିଂଙ୍କୁ ନିଯୁକ୍ତ କରିଅଛି । ଆପଣଙ୍କର ଅଭିପ୍ରାୟ କଅଣ ?"

ହୁଏନ୍‌ସାଂ ଉତ୍ତର କଲେ, "ଏହି ଅନୁରୋଧ ରାଜାଙ୍କ ଦୟାର ପରିଚାୟକ; କିନ୍ତୁ ପ୍ରକୃତରେ ଏଠାରେ ରହିବା ପାଇଁ ମୋର ହୃଦୟ ଅସମ୍ମତ ।"

ରାଜା କହିଲେ, "ସୁଇ ସମ୍ରାଟଙ୍କ ରାଜତ୍ୱ ସମୟରେ ମୁଁ ଯେତେବେଳେ ମୋ ଗୁରୁଙ୍କ ସହିତ ପ୍ରକାଣ୍ଡ ଚୀନ ଦେଶ ମଧ୍ୟରେ ଭ୍ରମଣ କରୁଥିଲି, ସେହି ସମୟରେ ପୂର୍ବ ଓ ପଶ୍ଚିମାଞ୍ଚଳସ୍ଥ ପ୍ରସିଦ୍ଧ ସ୍ଥାନସମୂହ ପରିଦର୍ଶନ କରି ଅନେକ ଖ୍ୟାତନାମା ଧର୍ମାଚାର୍ଯ୍ୟଙ୍କ ସଙ୍ଗେ ସାକ୍ଷାତ୍ କରିଥିଲି; କିନ୍ତୁ ମୋର ହୃଦୟ କାହାରି ପ୍ରତି ଆକୃଷ୍ଟ ହୋଇପାରି ନାହିଁ । କିନ୍ତୁ ଯେଉଁ ଦିନରୁ ଭବଦୀୟ ପବିତ୍ର ନାମ ମୋର କର୍ଣ୍ଣଗୋଚର ହେଲା, ସେହି ଦିନରୁ ମୋର ଶରୀର ଓ ଅନ୍ତରାତ୍ମା ଆନନ୍ଦରେ ବିହ୍ୱଳ ହୋଇଅଛି । ମୋର ହସ୍ତଦ୍ୱୟ କାର୍ଯ୍ୟ ଓ ପଦଦ୍ୱୟ ନୃତ୍ୟ କରୁଅଛି । ଏଠାରେ ରହିବା ପାଇଁ ମୁଁ ଆପଣଙ୍କୁ ଏକାନ୍ତ ଅନୁରୋଧ କରୁଅଛି । ମୁଁ ମୋର ଜୀବନର ଅନ୍ତିମ ଦିବସ ପର୍ଯ୍ୟନ୍ତ ଆପଣଙ୍କ ସମସ୍ତ ଅଭାବ ମୋଚନର ବ୍ୟବସ୍ଥା କରିଦେବ । ଆଉ ମଧ୍ୟ ଏହି ବ୍ୟବସ୍ଥା କରିବା ସକାଶେ ମୁଁ ପ୍ରତିଜ୍ଞା କରୁଅଛି ଯେ, ମୋ ରାଜ୍ୟର

ସମସ୍ତ ପ୍ରଜା ଆପଣଙ୍କ ଶିଷ୍ୟତ୍ୱ ଗ୍ରହଣ କରିବେ ଏବଂ, ମୁଁ ଆଶାକରେ, ଆପଣ ସେମାନଙ୍କୁ ଧର୍ମୋପଦେଶ ପ୍ରଦାନ କରିବେ । ମୋ ରାଜ୍ୟରେ ଅସଂଖ୍ୟ ନ ହେଲେହେଁ ବହୁସଂଖ୍ୟକ ଆର୍ଯ୍ୟ ଓ ସେମାନଙ୍କ ଶିଷ୍ୟ ଅବସ୍ଥାନ କରୁଅଛନ୍ତି । ଆପଣଙ୍କ ନିର୍ବାଚିତ ଧର୍ମପୁସ୍ତକ ପାଠକରି ସେମାନେ ସମସ୍ତେ ଆପଣଙ୍କ ଉପଦେଶ ଶ୍ରବଣ ଓ ପାଳନ କରିବେ । ମୋର ଏହି ପ୍ରାର୍ଥନା ଆପଣ ରକ୍ଷା କରନ୍ତୁ ଏବଂ ପଶ୍ଚିମ ଯାତ୍ରାର ସଂକଳ୍ପ ପରିତ୍ୟାଗ କରନ୍ତୁ ।”

---

## ଇ-ଗୁ ଅବସ୍ଥାନରେ ଅସମ୍ମତ

ହୁଏନ୍‌ସାଂ ଏହି ପ୍ରସ୍ତାବରେ ଅସମ୍ମତ ହୋଇ କହିଲେ, “ମୁଁ ଜଣେ ଦରିଦ୍ର ନିଃସହାୟ ସନ୍ନ୍ୟାସୀ । ମୁଁ ରାଜାଙ୍କର ଅସୀମ ବଦାନ୍ୟତାର କି ପ୍ରତିଦାନ କରି ପାରିବ ? ମୁଁ ଦାନ ଗ୍ରହଣ କରିବା ସକାଶେ ଏହି ତୀର୍ଥଯାତ୍ରାରେ ଆସି ନାହିଁ । ସ୍ୱଦେଶବାସୀଙ୍କ ଅସମ୍ପୂର୍ଣ୍ଣ ଧର୍ମଜ୍ଞାନ, ବିଭିନ୍ନ ଧର୍ମଶାସ୍ତ୍ରର ଅସମ୍ପୂର୍ଣ୍ଣତା ଓ ମତାନୈକ୍ୟରେ ବ୍ୟଥିତ ହୋଇ ଏବଂ ପ୍ରକୃତ ସତ୍ୟ ସମ୍ବନ୍ଧରେ ସନ୍ଦିହାନ ହୋଇ ମୁଁ ନିଜେ ଯାଇ ପ୍ରକୃତ ତତ୍ତ୍ୱାନୁସନ୍ଧାନ କରିବା ସକାଶେ ସଙ୍କଳ୍ପ କରିଅଛି । ସୁତରାଂ ମୋର ପ୍ରାଣକୁ ମଧ୍ୟା ତୁଚ୍ଛ ଜ୍ଞାନ କରି ଅଜ୍ଞାତ ତତ୍ତ୍ୱାନ୍ୱେଷଣାର୍ଥେ ମୁଁ ପଶ୍ଚିମ ଭୂଖଣ୍ଡକୁ ଯାତ୍ରା କରୁଅଛି । ମୋର ଅଭିପ୍ରାୟ ଏହି ଯେ, ସେହି ସୁପ୍ରଶସ୍ତ ଧର୍ମତତ୍ତ୍ୱ ରୂପ ମଧୁର ଶିଶିର ବିନ୍ଦୁ-ନିଚୟ କେବଳ କପିଳବାସ୍ତୁକୁ ସିକ୍ତ କରିବ, ଏମନ୍ତ ନୁହେଁ—ତହିଁର ନିଗୂଢ଼ ତତ୍ତ୍ୱ ପ୍ରାଚ୍ୟ-ଭୂଖଣ୍ଡରେ ମଧ୍ୟ ସମ୍ୟକ୍ ପ୍ରଚାରିତ ହେବ । ପାର୍ବତ୍ୟ ପ୍ରଦେଶ ମଧ୍ୟରେ ପଥାନ୍ୱେଷଣ-ଚିନ୍ତା ଏବଂ କ୍ଷମତାଶାଳୀ ପ୍ରତିଦ୍ୱନ୍ଦ୍ୱିତ ବନ୍ଧୁଙ୍କ ଆନୁକୂଲ୍ୟ ପ୍ରାପ୍ତି ଇଚ୍ଛା ମୋର ସଙ୍କଳ୍ପକୁ ଦୃଢ଼ତର

ଦୃଢ଼ତର କରିଅଛି । ତାହା ହେଲେ ମୋତେ ଅର୍ଦ୍ଧପଥରେ ରଖିବାକୁ କାହିଁକି ଇଚ୍ଛା କରୁଅଛନ୍ତି ? ମୋର ଅନୁରୋଧ, ଆପଣଙ୍କ ମତ ପରିବର୍ତ୍ତିନ କରନ୍ତୁ ଆଉ ଆପଣଙ୍କ ଅତିରିକ୍ତ ବନ୍ଧୁତାଦ୍ୱାରା ମୋତେ ବାଧିତ କରନ୍ତୁ ନାହିଁ ।"

ରାଜା କହିଲେ, "ମୁଁ ଆପଣଙ୍କ ସହିତ ଦୁର୍ଦ୍ଦମନୀୟ ସ୍ନେହରେ ଆବଦ୍ଧ ହୋଇଅଛି । ପୁନର୍ବାର ମୋର ଅନୁରୋଧ, ଆପଣ ମୋର ପୂଜା ଗ୍ରହଣ କରନ୍ତୁ । ସୁଂଲିଂ ପର୍ବତ ଭୂପତିତ ହୋଇପାରେ; କିନ୍ତୁ ମୋର ସଙ୍କଳ୍ପ ଅଟଳ । ମୋ ପ୍ରତି ବିଶ୍ୱାସ ସ୍ଥାପନ କରନ୍ତୁ; ମୋ ସ୍ନେହରେ ସନ୍ଦେହ କରନ୍ତୁ ନାହିଁ ।"

ହୁଏନ୍‌ସାଂ କହିଲେ, "ରାଜାଙ୍କର ଶ୍ରଦ୍ଧାସୂଚକ ଏତେଗୁଡ଼ିଏ ବାକ୍ୟବ୍ୟୟରେ ପ୍ରୟୋଜନ କଅଣ ? ହୁଏନ୍‌ସାଂ ତତ୍ତ୍ୱାନ୍ୱେଷଣାର୍ଥେ ପଶ୍ଚିମକୁ ଯାତ୍ରା କରୁଅଛି; ତାହାର ଉଦ୍ଦେଶ୍ୟ ସିଦ୍ଧ ହୋଇ ନାହିଁ । ସୁତରାଂ ସେ ଅର୍ଦ୍ଧପଥରେ ରହି ନ ପାରେ । ମୁଁ ସବିନୟ ପ୍ରାର୍ଥନା କରୁଅଛି, ଆପଣ ମୋତେ କ୍ଷମା କରନ୍ତୁ ଓ ମୋ ସ୍ଥାନରେ ନିଜକୁ ରଖି ସମସ୍ତ ବିଷୟ ବିବେଚନା କରି ଦେଖନ୍ତୁ। ଆପଣ ପୂର୍ବଜନ୍ମର ସତ୍କର୍ମ ଫଳ-ସ୍ୱରୂପ ଅଶେଷ ପୁଣ୍ୟ ସଞ୍ଚୟ କରି ରାଜପଦରେ ସମାସୀନ ହୋଇ-ଅଛନ୍ତି । ଆପଣ କେବଳ ଆପଣଙ୍କ ପ୍ରଜାଙ୍କ ପାଳକ ନୁହନ୍ତି; ପରନ୍ତୁ ବୁଦ୍ଧଙ୍କ ଧର୍ମର ରକ୍ଷକ । ଅତଏବ ସେହି ଧର୍ମରକ୍ଷା ଓ ପ୍ରଚାର ଆପଣଙ୍କ ପକ୍ଷରେ ସର୍ବଥା ସମୀଚୀନ । ଏହି ଉଦ୍ଦେଶ୍ୟ ସିଦ୍ଧି ସକାଶେ ମୁଁ ଏହି ତୀର୍ଥଯାତ୍ରାରେ ବହିର୍ଗତ ହୋଇଅଛି । ଆପଣ ସେହି ଉଦ୍ଦେଶ୍ୟପଥରେ କିପରି ଅନ୍ତରାୟ ହେଉଅଛନ୍ତି ?"

ରାଜା କହିଲେ, "ଧର୍ମତତ୍ତ୍ୱ ବିଷୟରେ ମୁଁ କେବେ ଅନ୍ତରାୟ ହେବାକୁ ସାହସ କରି ନ ପାରେ । କିନ୍ତୁ ମୋ ଦେଶରେ ଉପଯୁକ୍ତ

ଧର୍ମାଚାର୍ଯ୍ୟ ନ ଥିବାରୁ ଆପଣଙ୍କୁ ରଖିବାକୁ ମୁଁ ଇଚ୍ଛୁକ । ଆପଣ ଧର୍ମୋପଦେଶଦ୍ୱାରା ସେମାନଙ୍କ ଅଜ୍ଞାନତା ଦୂର କରନ୍ତୁ ।"

ହୁଏନ୍‌ସାଂ ପୁନର୍ବାର କ୍ଷମା ପ୍ରାର୍ଥନା କରି ରହିବା ପାଇଁ ଅସମ୍ମତି ଜ୍ଞାପନ କଲେ । ରାଜା ବିରକ୍ତି ପ୍ରକାଶ କରି ବାହୁଦ୍ୱୟ ଉତ୍ତୋଳନପୂର୍ବକ ଭୀତବ୍ୟଞ୍ଜକ ସ୍ୱରରେ କହିଲେ, "ମହାଶୟ, ଏହି ବିଷୟରେ ମୁଁ ଅନ୍ୟ ପ୍ରକାର ମୀମାଂସା କରି ଜାଣେ । ଆପଣ ଯଦି ସ୍ୱେଚ୍ଛାରେ ଏଠାରୁ ଚାଲିଯିବେ ବୋଲି ମନେ କରନ୍ତି, ତାହାହେଲେ ବଳପୂର୍ବକ ମୁଁ ଆପଣଙ୍କୁ ଅବରୁଦ୍ଧ କରି ସ୍ୱଦେଶକୁ ପ୍ରେରଣ କରିଦେବି । ଆପଣଙ୍କୁ ଏ ବିଷୟରେ ଭାବିବାକୁ ମୁଁ ସମୟ ଦେଉଅଛି । ମୋର ଆଜ୍ଞା ପାଳନ କରିବା ଆପଣଙ୍କ ପକ୍ଷରେ ସର୍ବଥା ଶ୍ରେୟସ୍କର ।"

---

## ଇ-ସୁ ନରପତଙ୍କ ଭୀତିପ୍ରଦର୍ଶନରେ ହୁଏନ୍‌ସାଂଙ୍କ ଅନଶନ

ହୁଏନ୍‌ସାଂ ଉତ୍ତର କଲେ, "ହୁଏନ୍‌ସାଂ ତତ୍ତ୍ୱାନ୍ୱେଷଣାର୍ଥେ ଏଠାକୁ ଆସିଅଛି । ଆଉ ଏଥିରେ ଆପଣ ଅନ୍ତରାୟ ହେଉଅଛନ୍ତି । ଆପଣ ମନେ ରଖନ୍ତୁ, ଏହି ଶରୀର ଉପରେ ଆପଣ ଶକ୍ତି ପ୍ରୟୋଗ କରି ପାରିବେ; କିନ୍ତୁ ମୋର ମନ ଅଥବା ଆତ୍ମାକୁ ସ୍ପର୍ଶ କରି ପାରିବେ ନାହିଁ ।"

ହୁଏନ୍‌ସାଂଙ୍କର ଘନ ଘନ ଶ୍ୱାସ ପ୍ରବାହିତ ହେବାକୁ ଲାଗିଲା । ତାହାଙ୍କର ଆଉ ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ । କିନ୍ତୁ ରାଜା ଅଟଳ, ଅଟଳ । ପ୍ରତ୍ୟହ ତାହାଙ୍କ ସକାଶେ ରାଜପ୍ରାସାଦରୁ ଆହାର ପ୍ରେରିତ ହେବାକୁ ଲାଗିଲା । ବଳପୂର୍ବକ ତାଙ୍କୁ ଅବରୁଦ୍ଧ କରା ହୋଇଥିବା ଦେଖି ସେ ଅନଶନ ଆରମ୍ଭ କଲେ । ସେ ଜଳ ସୁଦ୍ଧା ସ୍ପର୍ଶ ନ କରି

ତିନି ଦିନ କାଳ ଗମ୍ଭୀର ଭାବରେ ନିର୍ବାକ୍ ହୋଇ ବସି ରହିଲେ । ଚତୁର୍ଥ ଦିବସରେ ହୁଏନ୍‌ସାଂଙ୍କୁ କ୍ରମେ ଦୁର୍ବଳ ହୋଇଯାଉଥିବା ଦେଖି ରାଜା ଲଜ୍ଜା ଓ ଦୁଃଖରେ ତାହାଙ୍କ ସମ୍ମୁଖରେ ପ୍ରଣତ ହୋଇ କହିଲେ, "ଆପଣ ଯଥେଚ୍ଛା ଯାଇ ପାରନ୍ତି । ଆପଣ ବର୍ତ୍ତମାନ କିଛି ଆହାର ସମ୍ପାଦନ କରନ୍ତୁ ।" ହୁଏନ୍‌ସାଂ ରାଜାଙ୍କ କଥାରେ ବିଶ୍ୱାସ ସ୍ଥାପନ କରି ନ ପାରି ସୂର୍ଯ୍ୟଙ୍କ ପ୍ରତି ହସ୍ତପ୍ରସାରଣପୂର୍ବକ ଉପର୍ଯ୍ୟୁକ୍ତ ବାକ୍ୟର ପୁନରାବୃତ୍ତି କରିବା ସକାଶେ ତାହାଙ୍କୁ କହିଲେ । ରାଜା ଉତ୍ତର କଲେ, "ତାହାହେଲେ ଚାଲନ୍ତୁ, ଉଭୟେ ବୁଦ୍ଧଙ୍କ ସମୀପକୁ ଯିବା ଏବଂ ପରସ୍ପର ପ୍ରତି ପ୍ରତିଜ୍ଞାବଦ୍ଧ ହେବା ।" ତତ୍ପରେ ଉଭୟେ ଉପାସନାଳୟକୁ ଗଲେ ଏବଂ ବୁଦ୍ଧଙ୍କ ଚରଣରେ ଉପାସନା କଲେ । ରାଜମାତା ଓ ରାଜ୍ଞୀ ବୃନ୍ଦ ସେମାନଙ୍କ ସଙ୍ଗରେ ଥିଲେ । ହୁଏନ୍‌ସାଂଙ୍କୁ ଭ୍ରାତା ବୋଲି ସମ୍ବୋଧନ କରି ପଶ୍ଚିମ- ଭୂଖଣ୍ଡକୁ ଯାଇ ତତ୍ତ୍ୱାନ୍ୱେଷଣ କରିବା ସକାଶେ ରାଜା ତାହାଙ୍କୁ ଅନୁମତି ପ୍ରଦାନ କଲେ । ତତ୍ପରେ ସେ କହିଲେ, "କିନ୍ତୁ ମନେରଖନ୍ତୁ, ପ୍ରତ୍ୟାବର୍ତ୍ତନ ପରେ ଏହି ରାଜ୍ୟରେ ମୋର ଦାନ ଗ୍ରହଣ କରି ତିନିବର୍ଷ କାଳ ଆପଣଙ୍କୁ ଏଠାରେ ରହିବାକୁ ହେବ; ଆଉ ଯଦି ଆପଣ ଭବିଷ୍ୟତରେ ବୁଦ୍ଧତ୍ୱ ପ୍ରାପ୍ତ ହୁଅନ୍ତି, ତାହାହେଲେ ପ୍ରସେନ୍‌ଜିତ୍ କିମ୍ବା ବିମ୍ବିସାର ରାଜାଙ୍କ ପରି ମୁଁ ଆପଣଙ୍କ ପୃଷ୍ଠପୋଷକ ହେବି । ଏଥିପାଇଁ ଆପଣଙ୍କୁ ଅନୁମତି ଦେବାକୁ ହେବ ।"

ଏହା ଉତ୍ତାରେ ଜିନ୍-ଉଆନ୍-ପାନ୍-କୋ ସୂତ୍ର ବ୍ୟାଖ୍ୟାନ ସକାଶେ ଆଉ ଏକମାସ କାଳ ରାଜଧାନୀରେ ରହିବା ପାଇଁ ରାଜା ତାହାଙ୍କୁ ଅନୁରୋଧ କଲେ । ରାଜାଙ୍କର ଆହୁରି ମଧ୍ୟ ଅଭିପ୍ରାୟ ଥିଲି ଯେ, ଇତିମଧ୍ୟରେ ସେ ତାହାଙ୍କ ସକାଶେ ପରିଚ୍ଛଦାଦି ପ୍ରସ୍ତୁତ କରି ଦେବେ । ହୁଏନ୍‌ସାଂ ଏଥିରେ ସମ୍ମତ ହେଲେ । ରାଜ୍ଞୀ ଅତ୍ୟନ୍ତ

ଏହି ଅଭିପ୍ରାୟ ସିଦ୍ଧି ସକାଶେ ଏକମାତ୍ର ପୁତ୍ର ପ୍ରତି ଅତ୍ୟନ୍ତ ପ୍ରେମାଶକ୍ତ ପିତାଙ୍କ ପରି, ଏହି କଳୁଷିତ ସଂସାରରେ ସ୍ୱଶରୀର ମଧ୍ୟରେ ତିନି ମହାବିଦ୍ୟା ଧାରଣ କରି ସୂର୍ଯ୍ୟ ଅନ୍ଧକାରକୁ ଆଲୋକିତ କଲା ତୁଲ୍ୟ ତଥାଗତ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପ୍ରେମ-ବାରିଦବର୍ଷି ଏହି ବିଶ୍ୱ ଜଗତର ସ୍ୱର୍ଗ-ଶିଖରୋପରି ସଞ୍ଚରଣ କଲା ଏବଂ ତହିଁରୁ ନିଃସୃତ ତତ୍ତ୍ୱବାରିଧାରା ତିନିସହସ୍ରସଂଖ୍ୟକ ପୃଥିବୀକୁ ସିକ୍ତ କଲା । ଏହିପ୍ରକାରେ ହିତ ଓ ଶାନ୍ତି ଆନୟନ କରି ପ୍ରକୃତ ଶାନ୍ତି ସ୍ଥାପନାର୍ଥେ ସେ ଇହ ସଂସାରରୁ ବିଦାୟ ଗ୍ରହଣ କରିଗଲେ ଏବଂ ଯେଉଁ ଧର୍ମ୍ମତତ୍ତ୍ୱ ଦାନ କରିଗଲେ, ତାହା ପୂର୍ବଭୂଖଣ୍ଡରେ ବିଗତ ଛଅ ଶତ ବର୍ଷକାଳ ପ୍ରବୃତ୍ତ ହୋଇଆସୁଅଛି । ସେହି ମହତ୍ତତ୍ତ୍ୱ ହୁ ଓ ଲୋ ଦେଶରେ ବ୍ୟାପ୍ତ ହୋଇଅଛି ଏବଂ ସିନ୍ ଓ ଲ୍ୟାଂ ଦେଶରେ ସମୁଜ୍ଜ୍ୱଳ ନକ୍ଷତ୍ର ତୁଲ୍ୟ ଦେଦୀପ୍ୟମାନ ହୋଇ ରହିଅଛି । ଏହି ଗୂଢ଼ତତ୍ତ୍ୱ ପ୍ରସାର ଦ୍ୱାରା ସଂସାର କ୍ରମୋନ୍ନତି ପଥରେ ଅଗ୍ରସର ହୋଇଅଛି । ଏଥିରେ ମତଦ୍ୱୈଧ ନାହିଁ । କେବଳ ଦୂରବର୍ତ୍ତୀ ଭିନ୍ନ ଭିନ୍ନ ସ୍ଥାନନିବାସୀ ଭିନ୍ନ ଭିନ୍ନ ଲୋକେ ଉକ୍ତ ତତ୍ତ୍ୱାର୍ଥ ସମ୍ବନ୍ଧରେ ବିଭିନ୍ନ ମତ ପ୍ରଚାର କରୁଅଛନ୍ତି । ବୁଦ୍ଧ ବହୁକାଳ ହେଲା ଅପ୍ରକଟିତ ହୋଇଅଛନ୍ତି, ତେଣୁ ତାହାଙ୍କ ପ୍ରତିପାଦିତ ତତ୍ତ୍ୱାର୍ଥ ଭିନ୍ନ ଭିନ୍ନ ଲୋକେ ଭିନ୍ନ ଭିନ୍ନ ପ୍ରକାରେ ଲୋକ ସମକ୍ଷରେ ଉପସ୍ଥାପିତ କରୁଅଛନ୍ତି; କିନ୍ତୁ ଯେପରି ଏକ ଜାତୀୟ ବିଭିନ୍ନ ବୃକ୍ଷର ଫଳର ସ୍ୱାଦ ବିଭିନ୍ନ ହୋଇ ନ ପାରେ, ତଦ୍ରୂପ ଭିନ୍ନ ଭିନ୍ନ ସମ୍ପ୍ରଦାୟ-ପ୍ରତିପାଦିତ ତତ୍ତ୍ୱର ପାର୍ଥକ୍ୟ ବିଦ୍ୟମାନ ରହି ନ ପାରେ । ବହୁଶତ ବର୍ଷ ହେଲା ଏହି ମତଭେଦ ଉତ୍ତର ଓ ଦକ୍ଷିଣାଞ୍ଚଳକୁ ବିବ୍ରତ କରି ପକାଉଅଛି ଏବଂ ତହିଁର ମୀମାଂସା କରିବାର ଉପଯୁକ୍ତ ବ୍ୟକ୍ତି ଏପର୍ଯ୍ୟନ୍ତ ଆବିର୍ଭୂତ ହୋଇ ନାହାନ୍ତି ।

ହୁଏନ୍‌ସାଂ ପୂର୍ବଜନ୍ମାର୍ଜ୍ଜିତ କର୍ମଫଳ ସ୍ୱରୂପ ତାହାର ବାଲ୍ୟକାଳରୁ ଧର୍ମ୍ମମୟ ଜୀବନଯାପନର ସୁଯୋଗ ଲାଭ କରି ଆସିଅଛି । ସେ

ବଂଶବର୍ଷ କାଳ ଗୁରୁଙ୍କ ସନ୍ନିକଟରେ ଧର୍ମୋପଦେଶ ସମାପ୍ତ କରିଅଛି । ସୁପ୍ରସିଦ୍ଧ ଋଷି ତଥା ଖ୍ୟାତନାମା ବନ୍ଧୁଗଣଙ୍କଠାରୁ ମଧ୍ୟ ଉପଦେଶ ଗ୍ରହଣ କରିଅଛି ଏବଂ ମହାଯାନ ଓ ହୀନଯାନତତ୍ତ୍ୱ ସମ୍ବନ୍ଧରେ ଗବେଷଣା ମଧ୍ୟ କରିଅଛି । ସେ ଭିନ୍ନ ଭିନ୍ନ ଧର୍ମଗ୍ରନ୍ଥମାନ ପୁଙ୍ଖାନୁପୁଙ୍ଖ ଭାବରେ ଅଧ୍ୟୟନ କରିବାରେ କଦାପି ତ୍ରୁଟି କରି ନାହିଁ ; ତଥାପି ସେ କେବେ ସନ୍ଦେହମୁକ୍ତ ହୋଇପାରି ନାହିଁ । ସଂଶୟରେ ବିବ୍ରତ ହୋଇ ସେ ଜେତବନ ମଠ ଓ ଗୃଧ୍ରକୂଟ ପର୍ବତକୁ ଯାଇ ତାହାର ସନ୍ଦେହ ମୋଚନ କରି ଆସିବା ପାଇଁ ସଙ୍କଳ୍ପ କରିଅଛି ; କିନ୍ତୁ ସେ ଜାଣିଅଛି ଯେ, ଇଞ୍ଚ ଫିତାରେ ସ୍ୱର୍ଗର ଉଚ୍ଚତା ଏବଂ କୁକ୍କୁଟ-ଚୂଳରେ ସମୁଦ୍ରର ଗଭୀରତା ମାପ କରାଯାଇ ନ ପାରେ ; କିନ୍ତୁ ତାହାର ସଙ୍କଳ୍ପରୁ ସେ କେବେ ବିଚଳିତ ହୋଇ ନାହିଁ । ସେହି ସଙ୍କଳ୍ପପ୍ରେରିତ ହୋଇ ବହୁ କଷ୍ଟ ସହ୍ୟ କରି ବର୍ତ୍ତମାନ ସେ ଇ-ଗୁରେ ଉପସ୍ଥିତ ହୋଇଅଛି ।

ମୋର ସାନୁନୟ ଅନୁରୋଧ ଏହି ଯେ, ଆପଣ ସ୍ୱର୍ଗ ଓ ମର୍ତ୍ତ୍ୟର ସମଭାବସମ୍ପନ୍ନ ପ୍ରଭାବରେ ପ୍ରଭାବାନ୍ୱିତ ଓ ଉଭୟ ତତ୍ତ୍ୱର ଶାନ୍ତି-ପ୍ରଦାୟିନୀ ଶକ୍ତିରେ ଅନୁପ୍ରାଣିତ ହୋଇ ପ୍ରଜାବର୍ଗଙ୍କ ମଙ୍ଗଳାର୍ଥେ ଆପଣଙ୍କର ସମସ୍ତ ଶକ୍ତି ନିୟୋଜିତ କରିବେ । ଆପଣଙ୍କ କୀର୍ତ୍ତି ପୂର୍ବାଞ୍ଚଳରେ ଚୀନ ପର୍ଯ୍ୟନ୍ତ ବିଘୋଷିତ ହେଉଅଛି । ପଶ୍ଚିମାଞ୍ଚଳରେ ଶତ ଶତ ଅସଭ୍ୟ ଜାତି ଓ ଲୁ-ଲନ୍, ୟୁ-ହି, କୁ-ସି ଓ ଲଂ-ଉଆଂ ଅଧିବାସୀମାନେ ଆପଣଙ୍କ ସଦ୍‌ଗୁଣାବଳୀ କୀର୍ତ୍ତନ କରୁଅଛନ୍ତି ଏବଂ ଆପଣଙ୍କ ଦୟାଦାକ୍ଷିଣ୍ୟାଦି ଗୁଣ ଯୋଗୁଁ ଆପଣଙ୍କ ପ୍ରତି ଏକାନ୍ତ ଅନୁରକ୍ତ ହୋଇ ରହିଅଛନ୍ତି ; ଅଧିକନ୍ତୁ ଆପଣଙ୍କ ବନ୍ଦନାଗୀତି ପ୍ରତି ସମ୍ମାନ ପ୍ରଦର୍ଶନ ଓ ଗଭୀର ବିଦ୍ୟାନୁରାଗ ଆପଣଙ୍କ ସ୍ୱଭାବର ବିଶିଷ୍ଟତା ସମ୍ପାଦନ କରୁଅଛି ।

ଏହି ଅଞ୍ଚଳକୁ ମୋର ଆଗମନ-ବାର୍ତ୍ତା ଶ୍ରବଣ କରି ଆପଣ ମୋ ସକାଶେ ଯାନ, ବାହନ, ଶରୀରରକ୍ଷୀ, ପଥ-ପ୍ରଦର୍ଶକ ଓ ଅତିଥି-ସତ୍କାରର ସୁବ୍ୟବସ୍ଥା କରିଦେଇ ଅଛନ୍ତି । ମୁଁ ଏଠାକୁ ଆସିବା ମୁହୂର୍ତ୍ତରୁ ମୋ ପ୍ରତି ଆପଣଙ୍କ ଦୟା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୋଇଅଛି । ସର୍ବସାଧାରଣଙ୍କ ସମକ୍ଷରେ ଧର୍ମ୍ମଶାସ୍ତ୍ରାଲୋଚନା କରିବାକୁ ମୋତେ ଆପଣ ସୁଯୋଗ ପ୍ରଦାନ କରିଅଛନ୍ତି । ଆପଣ ସ୍ୱକୀୟ ଅସୀମ ଦୟାଗୁଣରେ ମୋତେ 'ଭାଇ' ବୋଲି ସମ୍ବୋଧନ କରୁଅଛନ୍ତି । ପଶ୍ଚିମାଞ୍ଚଳର ରାଜାମାନଙ୍କ ନିକଟକୁ ମୋ ସମ୍ବନ୍ଧରେ ପ୍ରତ୍ୟୟଜନକ ପତ୍ର ଦାନ କରିଅଛନ୍ତି ଏବଂ ମୋ ପ୍ରତି ସଦୟ ବ୍ୟବହାର କରିବା ସକାଶେ ଓ ଏକ ସ୍ଥାନରୁ ସ୍ଥାନାନ୍ତରକୁ ଯିବା ସକାଶେ ସମସ୍ତ ପ୍ରକାର ସୁବିଧା କରିଦେବା ନିମିତ୍ତ ଅନୁରୋଧ କରିଅଛନ୍ତି । ଏକ ଦରିଦ୍ର ତୀର୍ଥଯାତ୍ରୀ ପ୍ରତି ଦୟାପରବଶ ହୋଇ ତାହାର ସ୍ୱାସ୍ଥ୍ୟରକ୍ଷା ସକାଶେ ପରିଚାରକ ଭୃତ୍ୟ ଓ ବହୁବିଧ ପରିଚ୍ଛଦ ପ୍ରଦାନ କରିଅଛନ୍ତି । ପରିଶେଷରେ ପଶ୍ଚିମଭୂଖଣ୍ଡରେ ଭ୍ରମଣ ଓ ସେଠାରୁ ପ୍ରତ୍ୟାଗମନ ସକାଶେ ବିଂଶବର୍ଷକାଳର ବ୍ୟବହାରୋପଯୋଗୀ ବହୁ ପରିମିତ ବସ୍ତ୍ର ଓ ସ୍ୱର୍ଣ୍ଣରୌପ୍ୟ ମୁଦ୍ରା ଦାନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି । ଏହାର ମୁଁ କି ପ୍ରତିଦାନ ଦେବି ? ସମସ୍ତ ସମ୍ମିଳିତ ନଦୀଜଳ ସୁଦ୍ଧା ଆପଣଙ୍କ ରାଜୋଚିତ ଦାନର ସମତୁଲ୍ୟ ହୋଇପାରିବ ନାହିଁ, ତତ୍ତୁଳନାରେ ସୁଂ ଲିଂ ପର୍ବତ ସୁଦ୍ଧା ଅତ୍ୟନ୍ତ ଅକିଞ୍ଚିତ୍କର ।

ତୁଷାରାବୃତ ଗିରିନଦୀ ଅତିକ୍ରମ କରିବାରେ ମୋର ଆଉ କି ଭୟ ଥାଇପାରେ ? ମୋର ଆଉ ଚିନ୍ତା ନାହିଁ, ଯେଉଁଠାରେ କ-ପଥରେ ସ୍ୱର୍ଗୀୟ ନିଃଶ୍ରେଣୀ ବିଦ୍ୟମାନ, ସେହି ଗୟା ନଗରସ୍ଥ ବୋଧିଦ୍ରୁମ ମୂଳରେ ଉପାସନା କରିବାର ଆଉ କାଳବିଳମ୍ବ ଯେପରି

ନ ହୁଏ, ସେହି ମୋର ଏକମାତ୍ର ଚିନ୍ତା । ମୋର ଇଚ୍ଛା ପୂରଣ କରି ଆପଣ ମୋତେ ଗଭୀର କୃତଜ୍ଞତା ପାଶରେ ଆବଦ୍ଧ କରିଅଛନ୍ତି । ଏ ସମସ୍ତ ସାହାଯ୍ୟ ବ୍ୟତୀତ କଦାପି ମୋର ଉଦ୍ଦେଶ୍ୟ ସିଦ୍ଧ ହୋଇ ପାରନ୍ତା ନାହିଁ ।

ମୁଁ ଭିନ୍ନ ଭିନ୍ନ ଧର୍ମାଚାର୍ଯ୍ୟଙ୍କ ସହିତ ଶାସ୍ତ୍ରାଲୋଚନା ଓ ପ୍ରକୃତ ତତ୍ତ୍ୱ ସମ୍ବନ୍ଧରେ ଉପଦେଶ ଗ୍ରହଣ କରି ସ୍ୱଦେଶକୁ ପ୍ରତ୍ୟାଗମନ କରିବି; ବହୁ ଧର୍ମଗ୍ରନ୍ଥ ସଂଗ୍ରହ କରି ଆଣିବି ଓ ସେ ସମସ୍ତ ମାତୃଭାଷାରେ ଅନୁବାଦ କରିବି । ଏହିପ୍ରକାରେ ଅଜ୍ଞାତ ତତ୍ତ୍ୱଜ୍ଞାନ ପ୍ରଚରିତ ହେବ । ମୁଁ ଏହି ଅଜ୍ଞାନ ଗ୍ରନ୍ଥି ଶତଧା ଛିନ୍ନ କରିବି; ଭ୍ରମାତ୍ମକ ଶିକ୍ଷାର କୁପ୍ରଭାବ ସମୂଳେ ଧ୍ୱଂସ କରିବି । ବୁଦ୍ଧପ୍ରଦତ୍ତ ଧର୍ମତତ୍ତ୍ୱରେ ଯେ ସମସ୍ତ ଅସମ୍ପୂର୍ଣ୍ଣତା ବିଦ୍ୟମାନ ଥିବ, ସେ ସମସ୍ତ ପୂର୍ଣ୍ଣ କରିବି ଏବଂ ଭିନ୍ନ ଭିନ୍ନ ସମ୍ପ୍ରଦାୟ ପ୍ରଚରିତ ମତ ମଧ୍ୟରେ ସମନ୍ୱୟ ସ୍ଥାପନ କରିବି । ମୁଁ ମନେ କରେଁ, ଏ ସମସ୍ତ କାର୍ଯ୍ୟଦ୍ୱାରା ମୁଁ ଆପଣଙ୍କ ବିଶାଳ ଦାନର ପ୍ରତିଦାନ କରିବି ; କିନ୍ତୁ କାର୍ଯ୍ୟର ଗୁରୁତ୍ୱ ଓ ପଥର ଦୂରତ୍ୱ ବିବେଚନାରେ ଆଉ ଅଧିକ କାଳ ବିଳମ୍ବ କରିପାରିବି ନାହିଁ । କାଲି ମୁଁ ଆପଣଙ୍କଠାରୁ ବିଦାୟ ଗ୍ରହଣ କରିବି, ଏହା ଭାବି ମୋ ମନ ଅତ୍ୟନ୍ତ ବ୍ୟଥିତ ହେଉଅଛି । ବିଦାୟ ସମୟରେ ଆପଣଙ୍କୁ ମୋର ସହୃଦୟ କୃତଜ୍ଞତା ବ୍ୟତୀତ ଆଉ କଣ ଦେବି ?”

ରାଜା ଉତ୍ତରରେ କହିଲେ, “ଆପଣ ମୋତେ ଭାଇ ବୋଲି ସ୍ୱୀକାର କରି ମୋ ରାଜ୍ୟର ଧନଭାଗୀ ହେବାର ଅଧିକାର ଗ୍ରହଣ କରିଅଛନ୍ତି । ଆଉ ଏତେ ଧନ୍ୟବାଦ ପ୍ରଦାନର ପ୍ରୟୋଜନ କଣ ?”

ବିଦାୟ ସମୟରେ ଧର୍ମାଚାର୍ଯ୍ୟ, ମନ୍ତ୍ରୀ ଓ ପ୍ରଜାମାନଙ୍କ ସହିତ ରାଜଧାନୀର ଉପକଣ୍ଠ ପର୍ଯ୍ୟନ୍ତ ରାଜା ସ୍ୱୟଂ ହୁଏନ୍ ସାଂଙ୍କ ସହିତ

ଗମନ କଲେ । ରାଜା ଓ ପ୍ରଜାମାନେ ତାହାଙ୍କୁ ସାଶ୍ରୁଲୋଚନରେ ଆଲିଙ୍ଗନ କଲେ । ସେମାନଙ୍କ ଆର୍ତ୍ତନାଦ ଓ ବ୍ୟାକୁଳ କ୍ରନ୍ଦନରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଲା । ରାଜା ରାଣୀ ଓ ପ୍ରଜାମାନଙ୍କୁ ଫେରିଯିବା ପାଇଁ ଆଦେଶ କଲେ; କିନ୍ତୁ ନିଜ ପାରିଷଦ୍‌ବର୍ଗ ଓ ପ୍ରଧାନ ଧର୍ମାଚାର୍ଯ୍ୟଙ୍କ ସମଭିବ୍ୟାହାରରେ ଅନେକ ଦୂର ପର୍ଯ୍ୟନ୍ତ ହୁଏନ୍‌ସାଂଙ୍କ ସହିତ ଗମନ କରି ପ୍ରତ୍ୟାବୃତ୍ତ ହେଲେ ।

ମାର୍ଗରେ ଅନ୍ୟାନ୍ୟ ଦେଶର ନରପତିମାନେ ହୁଏନ୍‌ସାଂଙ୍କ ସସମ୍ମାନରେ ଗ୍ରହଣ କଲେ । ତତ୍ପରେ ସେ ପଶ୍ଚିମାଭିମୁଖରେ ଯାତ୍ରା କଲେ ଏବଂ ଉ ପ୍ୟାନ୍ ଓ ତୋ-ସିନ୍ ନଗର ଅତିକ୍ରମ କରି ଓ-କି-ନି (ୟେନ୍କି) ଦେଶରେ ପ୍ରବିଷ୍ଟ ହେଲେ ।



# ଦ୍ୱିତୀୟ ଖଣ୍ଡ

## ଓ-ଛ-ନ- (ସ୍ୱେକି)ରୁ କ-ଯୋ-ଚ୍ୟା-ଣି (ଉନୌଜ) ଯାତ୍ରା

ହୁଏନ୍‌ସାଂ ଏହିଠାରୁ ପଶ୍ଚିମାଭିମୁଖରେ ଯାତ୍ରା କରି ଓ-କ୍ସ-ନ (ସ୍ୱେକି)ରେ ଉପନୀତ ହେଲେ । ଏଠାରେ ଆ-ଫୁ ଋଷିଙ୍କର ଗୋଟିଏ ପ୍ରସ୍ରବଣ ଅଛି ଓ ତାହା ପଥର ଦକ୍ଷିଣପାର୍ଶ୍ୱସ୍ଥ ଏକ ବାଲୁକାମୟ ପର୍ବତରୁ ପ୍ରବାହିତ ହେଉଅଛି । ପର୍ବତସ୍ଥ ସମୁଚ୍ଚ ଓ ଜଳସ୍ରୋତ ପର୍ବତର ଅଧୋଦେଶରେ ଉତ୍ସେହିତ ହୋଇଅଛି । ଏ ସମ୍ବନ୍ଧରେ ଏକ କିମ୍ବଦନ୍ତୀ ଅଛି । ଏକଦା ଏକ ଶତ ବଣିକ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଁ ଯାଉଁ ଅର୍ଦ୍ଧ ପଥରେ ସେମାନଙ୍କଠାରେ ଥିବା ପାନୀୟ ଜଳ ଶେଷ ହୋଇଗଲା । ସେମାନେ ପଥଶ୍ରାନ୍ତ ହୋଇ ଜଳ ଅନ୍ୱେଷଣରେ ଏହି ପର୍ବତ ନିକଟକୁ ଆସିଲେ; କିନ୍ତୁ କୌଣସିଠାରେ ଜଳର ସନ୍ଧାନ ପାଇଲେ ନାହିଁ । ସେମାନଙ୍କ ସଙ୍ଗରେ ଜଣେ ସନ୍ନ୍ୟାସୀ ଥିଲେ । ତାହାଙ୍କଠାରେ ଖାଦ୍ୟ ସାମଗ୍ରୀ କିଛି ନ ଥିଲା । ସେ ଏହି ବଣିକମାନଙ୍କଠାରୁ ଭିକ୍ଷା ସଂଗ୍ରହ କରି ଜୀବନ ରକ୍ଷା କରୁଥିଲେ । ବଣିକମାନଙ୍କ ମଧ୍ୟରୁ ଜଣେ କହିଲେ, "ଏହି ସନ୍ନ୍ୟାସୀ ବୁଦ୍ଧଙ୍କ ଭକ୍ତ । ତେଣୁ ଏହାଙ୍କୁ ଆମ୍ଭେମାନେ ପାଳନ କରି ଆସିଅଛୁଁ; କିନ୍ତୁ ଦେଖନ୍ତୁ, ଏହି ବ୍ୟକ୍ତି ଆମ୍ଭମାନଙ୍କ ସହିତ ଏକ ସହସ୍ର ଲି ପଥ ଭ୍ରମଣ କରି ଆସିଅଛନ୍ତି । ସଙ୍ଗରେ ତାହାଙ୍କ ଖାଇବା ପାଇଁ କିଛି ନାହିଁ; ଅଥଚ ଆମ୍ଭମାନଙ୍କ ଏହି ଉଦ୍‌ବେଗ ଓ ବିପଦ ସମୟରେ ଅବିଚଳିତ ଓ ନିଶ୍ଚିନ୍ତ ହୋଇ ରହିଅଛନ୍ତି । ଏ ବିଷୟରେ ଏହାଙ୍କୁ ପ୍ରଶ୍ନ କରିବା ।" ତତ୍ପରେ ତାହାଙ୍କୁ ଏ ବିଷୟରେ ପ୍ରଶ୍ନ କଲାରୁ ସେ କହିଲେ, "ଆପଣମାନେ

ଜଳ ସକାଶେ ଏତେ ଚିନ୍ତାକୁଳ ହୋଇଅଛନ୍ତି । ବର୍ତ୍ତମାନ ଆପଣମାନେ ସମସ୍ତେ ବୁଦ୍ଧଙ୍କ ଧ୍ୟାନ କରନ୍ତୁ ଏବଂ ଆଶ୍ରୟତ୍ରୟ * ଓ ପଞ୍ଚଧର୍ମ ନୀତି † ପାଳନ କରିବାକୁ ଅଙ୍ଗୀକାର କରନ୍ତୁ । ତାହା ହେଲେ ମୁଁ ଆପଣମାନଙ୍କ ସକାଶେ ସେହି ପର୍ବତ ଉପରକୁ ଯାଇ ସେଠାରୁ ଜଳସ୍ରୋତ ପ୍ରେରଣ କରିବ ।” ବଣିକମାନେ ସମସ୍ତେ ତୃଷାତୁର ହୋଇଥିବାରୁ ତାହାଙ୍କ କଥାରେ ଅଙ୍ଗୀକାର କଲେ । ତତ୍ପରେ ସନ୍ନ୍ୟାସୀ ସେମାନଙ୍କୁ ଏହି ମର୍ମରେ ଉପଦେଶ ଦେଲେ, “ମୁଁ ପର୍ବତ ଉପରକୁ ଗଲା ଉତ୍ତାରେ ଆପଣମାନେ କହିବେ, ‘ଏ-ଫୁ-ସେ’—ଅର୍ଥାତ୍ ଆମ୍ଭମାନଙ୍କର ଯେତିକି ଜଳ ଆବଶ୍ୟକ ସେତିକି ଜଳଧାର ପ୍ରବାହିତ ହୋଇଆସୁ ।” ଏହା କହି ସେ ପ୍ରସ୍ଥାନ କଲେ । ଅଳ୍ପ ସମୟ ପରେ ସେମାନେ ତାହାଙ୍କ ଉପଦେଶାନୁଯାୟୀ ସେହିପରି ବାକ୍ୟରେ ପ୍ରାର୍ଥନା କଲେ । ଅଳ୍ପ ସମୟ ମଧ୍ୟରେ ସେମାନଙ୍କ ବ୍ୟବହାର ସକାଶେ ପର୍ଯ୍ୟାପ୍ତ ଜଳ ପ୍ରବାହିତ ହୋଇଆସିଲା । ବଣିକଦଳ ଆନନ୍ଦ ଓ କୃତଜ୍ଞତାରେ ଅଭିଭୂତ ହେଲେ; କିନ୍ତୁ ସନ୍ନ୍ୟାସୀଙ୍କୁ ପ୍ରତ୍ୟାବର୍ତ୍ତନ କରିବା ନ ଦେଖି ପର୍ବତ ଉପରକୁ ଯାଇ ଦେଖିଲେ ଯେ, ତାହାଙ୍କ ଶରୀରରୁ ପ୍ରାଣବାୟୁ ନିର୍ଗତ ହୋଇଯାଇଅଛି । ସେମାନେ ତାହାଙ୍କୁ ଦେଖି ଅତ୍ୟନ୍ତ ବିଳାପ କଲେ ଓ ପାଶ୍ଚାତ୍ୟ ରୀତି ଅନୁଯାୟୀ ଅଗ୍ନିରେ ଶବ ସତ୍କାର ସମ୍ପାଦନ କଲେ ଓ ଏହି ସ୍ଥାନରେ ପ୍ରସ୍ତର ସଂଗ୍ରହ କରି ତାଙ୍କ ସମାଧି ନିର୍ମାଣ କଲେ । ଉକ୍ତ ସମାଧି ଅଦ୍ୟାପି ବିଦ୍ୟମାନ ଅଛି । ଜଳସ୍ରୋତ ମଧ୍ୟ ପ୍ରବାହିତ ହୋଇ ପଥିକମାନଙ୍କୁ ପର୍ଯ୍ୟାପ୍ତ ଜଳ ଦାନ କରୁଅଛି । ଯେଉଁଦିନ ପଥିକ ନ ଥାନ୍ତି, ସେହିଦିନ ସ୍ରୋତ ଶୁଷ୍କ ହୋଇଯାଏ ।

---

* Three refuges, † Five moral obligation s.

## ରଜତ ପର୍ବତ ଅତିକ୍ରମ

ଏହି ପ୍ରସ୍ରବଣ ନିକଟରେ ହୁଏନ୍‌ସାଂ ରାତ୍ରି ଯାପନ କଲେ । ରାତ୍ରି ପ୍ରଭାତ ହେଲାରୁ ସେ ଗନ୍ତବ୍ୟ ପଥରେ ଅଗ୍ରସର ହୋଇ ରଜତ ପର୍ବତ* ଅତିକ୍ରମ କଲେ । ଏହି ପର୍ବତ ଅତ୍ୟୁଚ୍ଚ ଓ ବିସ୍ତୃତ । ତହିଁରୁ ରୌପ୍ୟ ଖୋଦିତ ହୋଇ ପଶ୍ଚିମାଞ୍ଚଳୀୟ ଦେଶସମୂହକୁ ମୁଦ୍ରା ନିମିତ୍ତ ପ୍ରେରିତ ହୁଏ । ଏହି ପର୍ବତର ପଶ୍ଚିମପାର୍ଶ୍ୱରେ ହୁଏନ୍‌ସାଂ ଏକ ଦଳ ଦସ୍ୟୁଙ୍କୁ ଭେଟିଲେ । ଦସ୍ୟୁମାନେ ତାଙ୍କଠାରୁ ପ୍ରାର୍ଥିତ ଦ୍ରବ୍ୟ ପ୍ରାପ୍ତ ହେବାରୁ ପଳାୟନ କଲେ ।

---

## କ୍ୟୁ-ଶରେ ପ୍ରବେଶ

ଅଳ୍ପ ସମୟ ପରେ ହୁଏନ୍‌ସାଂ ଏକ ରାଜଧାନୀ ସମୀପରେ ଉପନୀତ ହୋଇ ନିକଟବର୍ତ୍ତୀ ଏକ ନଦୀକୂଳରେ ରାତ୍ରି ଯାପନ କଲେ । ଏହାର ଅଳ୍ପ ସମୟ ପୂର୍ବେ ଏକ ଦଳ ବଣିକ ସେମାନଙ୍କ ପଣ୍ୟଦ୍ରବ୍ୟ ସତ୍ୱର ବିକ୍ରୟ କରିବା ଅଭିପ୍ରାୟରେ ଅର୍ଦ୍ଧରାତ୍ରରେ ଯାତ୍ରା କରିଥିଲେ । ସେମାନେ ପ୍ରାୟ ଦଶ ଲି ପଥ ଅତିକ୍ରମ କରିଅଛନ୍ତି, ଏହି ସମୟରେ ଦସ୍ୟୁଗଣ ସେମାନଙ୍କୁ ଆକ୍ରମଣ କରି ସମସ୍ତଙ୍କୁ ହତ୍ୟା କଲେ । ହୁଏନ୍‌ସାଂ ନଦୀକୂଳରେ ଉପନୀତ ହୋଇ ସେମାନଙ୍କ ମୃତ ଦେହ ଦର୍ଶନ କରି ଅତ୍ୟନ୍ତ ବ୍ୟଥିତ ହେଲେ । ଅଳ୍ପ ସମୟ ପରେ ରାଜଧାନୀ ତାହାଙ୍କ ଦୃଷ୍ଟିପଥାରୂଢ଼ ହେଲା । ଓ-କି-ନି ନରପତି ଅମାତ୍ୟଗଣଙ୍କ ସମଭିବ୍ୟାହାରରେ ଆସି ତାହାଙ୍କୁ ଅଭିବାଦନ କଲେ ଏବଂ ରାଜପ୍ରାସାଦରେ ଆତିଥ୍ୟ ଗ୍ରହଣ କରିବା ସକାଶେ ତାହାଙ୍କୁ

* Silver mountain.

ଅନୁରୋଧ କଲେ । ଇତି ପୂର୍ବେ ଏହା ଦେଶ କୋଚ୍‌ଂର ଦସ୍ୟୁମାନଙ୍କ ଆକ୍ରମଣରେ ଛାରଖାର ହୋଇଯାଇଥିଲା । ସୁତରାଂ 'ଉଭୟ ଦେଶ ମଧ୍ୟରେ ସଦ୍‌ଭାବ ବିଦ୍ୟମାନ ନ ଥିବାରୁ ଓ-କି-ନି ନରପତି ହୁଏନ୍‌ସାଂଙ୍କୁ ପଥପ୍ରଦର୍ଶକ ଦେବା ସକାଶେ ଅନିଚ୍ଛା ପ୍ରକାଶ କଲେ । କହିବା ବାହୁଲ୍ୟ, କୋ-ଚ୍ୟଂର୍ ଏକଦଳ ପଥପ୍ରଦର୍ଶକ ହୁଏନ୍‌ସାଂଙ୍କ ସହିତ ଆସିଥିଲେ ।

ହୁଏନ୍‌ସାଂ ଏଠାରେ ଏକ ରାତ୍ରି ଅତିବାହିତ କରି ପର ଦିନ ଏକ ବୃହତ୍ ନଦୀ ଅତିକ୍ରମ କଲେ । ପଶ୍ଚିମ ଦିଗକୁ ଯାଇ ଏକ ବିସ୍ତୀର୍ଣ୍ଣ ଉପତ୍ୟକା ଅତିକ୍ରମ କରି ଶତାଧିକ ଲି ପଥ ଅତିକ୍ରମ କଲାରୁ କ୍ୟୁ-ଚି ରାଜ୍ୟର ସୀମାନ୍ତରେ ଉପନୀତ ହେଲେ । ରାଜଧାନୀର ନିକଟସ୍ଥ ହେଲାରୁ ରାଜା ମନ୍ତ୍ରିଗଣ ଓ ମୋକ୍ଷଗୁପ୍ତ ( ବା ମୋକ୍ଷ କୁଟ ) ନାମକ ଧର୍ମାଚାର୍ଯ୍ୟଙ୍କ ସମଭିବ୍ୟାହାରରେ ପଥରେ ଯାଇ ତାହାଙ୍କୁ ଅଭିବାଦନ କଲେ । ଏକ ସହସ୍ର ସନ୍ନ୍ୟାସୀ ନଗରର ପୂର୍ବଦ୍ୱାରରେ ତାହାଙ୍କ ଅପେକ୍ଷା କରି ରହିଥିଲେ । ତାହାଙ୍କୁ ସାକ୍ଷାତ୍ କରିବା ସକାଶେ ସେମାନେ ଏକ ବୃହତ୍ ଶିବିକାରେ ବୁଦ୍ଧଙ୍କ ପ୍ରତିମୂର୍ତ୍ତି ସଙ୍ଗୀତ ଓ ବାଦ୍ୟ ସହ ପଟୁଆରରେ ଆଣି ସେଠାରେ ସ୍ଥାପନ କରି ରଖିଥିଲେ ।

ହୁଏନ୍‌ସାଂ ସେଠାରେ ଉପସ୍ଥିତ ହେଲାରୁ ଆଚାର୍ଯ୍ୟଗଣ ଦଣ୍ଡାୟମାନ ହୋଇ ଶ୍ରଦ୍ଧାନ୍ୱିତ ବାକ୍ୟରେ ତାହାଙ୍କୁ ଅଭିବାଦନ କଲେ ଓ ତତ୍ପରେ ସେମାନେ ସ୍ୱୀୟ ଆସନ ଗ୍ରହଣ କଲେ । ଜଣେ ଆଚାର୍ଯ୍ୟ ସମସ୍ତଙ୍କ ଆଦେଶରେ ସଦ୍ୟ ସଂଗୃହୀତ ଏକ ପୁଷ୍ପଗୁଚ୍ଛ ଉପହାର ରୂପେ ତାଙ୍କ ହସ୍ତରେ ପ୍ରଦାନ କଲେ । ହୁଏନ୍‌ସାଂ ଉକ୍ତ ପୁଷ୍ପଗୁଚ୍ଛ ଗ୍ରହଣ-ପୂର୍ବକ ତାହା ବୁଦ୍ଧଙ୍କ ମୂର୍ତ୍ତି ସମକ୍ଷରେ ଅର୍ପଣ କରି ତାହାଙ୍କ ଉପାସନା କଲେ । ତତ୍ପରେ ମୋକ୍ଷଗୁପ୍ତ ଆସି ତାହାଙ୍କ ସମୀପରେ ଆସନ ଗ୍ରହଣ

କଲେ । ଅଗ୍ରବୃନ୍ଦସ୍ତ ଏହି ପ୍ରକାରେ ଆସନ ଗ୍ରହଣ କଲାରୁ ସମସ୍ତେ ପୁଷ୍ପହସ୍ତରେ ଏକ ପଙ୍କ୍ତିର ରଚନାକଲେ । ତତ୍ପରେ ସେମାନେ ହୁଏନ୍‌ସାଂଙ୍କୁ ଦ୍ରାକ୍ଷାରସ ପ୍ରଦାନ କଲେ । ପ୍ରଥମ ମନ୍ଦିରରେ ତାଙ୍କୁ ଯେପରି ପୁଷ୍ପ ଓ ଦାକ୍ଷାରସ ପ୍ରାପ୍ତ ହୋଇଥିଲା ଅନ୍ୟାନ୍ୟ ମନ୍ଦିରରେ ମଧ୍ୟ ତାଙ୍କୁ ସେ ସମସ୍ତ ପ୍ରାପ୍ତହେଲା । ଏକ ମନ୍ଦିରରୁ ମନ୍ଦିରାନ୍ତରକୁ ଗମନ କରିବାରେ ଦିବସ ଅବସାନ ହେଲା ଓ ଅଗ୍ରବୃନ୍ଦଗଣ କମେ କମେ ସ୍ୱସ୍ଥାନକୁ ପ୍ରତ୍ୟାବୃତ୍ତ ହେଲେ ।

କୋ-ଝ୍ୟାଂ ଅଧିବାସୀ ଅନେକ ବ୍ୟକ୍ତି କୁ୍ୟ-ଚର ଏକ ମନ୍ଦିରରେ ସନ୍ନ୍ୟାସୀ ହୋଇ ରହିଥିଲେ । ଉକ୍ତ ମନ୍ଦିରଟି ସହରର ଦକ୍ଷିଣ-ପର୍ବ ପାର୍ଶ୍ୱରେ ଅବସ୍ଥିତ ଥିଲା । ହୁଏନ୍‌ସାଂଙ୍କୁ ସ୍ୱଦେଶାଧିବାସୀ ଜାଣି ତାହାଙ୍କୁ ସେମାନେ ସର୍ବପ୍ରଥମରେ ଉକ୍ତ ମନ୍ଦିରରେ ରାତ୍ରି ଯାପନ କରିବା ପାଇଁ ଆହ୍ୱାନ କଲେ । ସେମାନଙ୍କ ନିମନ୍ତ୍ରଣ ରକ୍ଷା କରିବା ଯୋଗୁଁ ରାଜା ଓ ସନ୍ନ୍ୟାସିଗଣ ସ୍ୱସ୍ଥାନକୁ ଫେରିଆସିଲେ । ପର ଦିନ ରାଜପ୍ରାସାଦରେ ଦାନ ଗ୍ରହଣ ଓ ତିନ ପ୍ରକାର ବିଶୁଦ୍ଧ ଦ୍ରବ୍ୟ ଭୋଜନ କରିବା ସକାଶେ ରାଜା ତାହାଙ୍କୁ ନିମନ୍ତ୍ରଣ କଲେ । ହୁଏନ୍‌ସାଂ ଏଥିରୁ କିଛି ଗ୍ରହଣ କରିବେ ନାହିଁ ବୋଲି କହିବାରୁ ରାଜା ଅତ୍ୟନ୍ତ ବିରକ୍ତ ହେଲେ । ହୁଏନ୍‌ସାଂ କହିଲେ, "ଏହା କ୍ରମ-ନୀତି * ଅନୁମୋଦିତ; କିନ୍ତୁ ମହାଯାନ ଅନୁମୋଦିତ ନୁହେ । ମୁଁ ଅନ୍ୟ ପ୍ରକାର ଆହାର ଗ୍ରହଣ କରିବି ।"

---

* Gradual system of the land.

# ଓ-ଶି-ଲ-ନ ମନ୍ଦିରକୁ ଗମନ ଓ ମୋକ୍ଷଗୁପ୍ତଙ୍କ ସହିତ ଧର୍ମତତ୍ତ୍ୱ ଆଲୋଚନା

ଆହାର ସମାପନାନ୍ତେ ହୁଏନ୍‌ସାଂ ସହରର ଉତ୍ତର-ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ଓ-ଶି-ଲ-ନ ମନ୍ଦିରକୁ ଗମନ କଲେ । ସେଠାରେ ମୋକ୍ଷଗୁପ୍ତ ଅବସ୍ଥାନ କରୁଥିଲେ । ମୋକ୍ଷଗୁପ୍ତଙ୍କ ପାଣ୍ଡିତ୍ୟ ଓ ଯୋଗ୍ୟତା ଯୋଗୁଁ ସମସ୍ତ ସମ୍ପ୍ରଦାୟର ଲୋକେ ତାହାଙ୍କୁ ସମ୍ମାନ କରୁଥିଲେ । ସେ ବିଂଶ ବର୍ଷକାଳ ଭାରତବର୍ଷର ବିଭିନ୍ନ ସ୍ଥାନରେ ଅବସ୍ଥାନ କରି ଧର୍ମଶାସ୍ତ୍ରସମୂହ ଅଧ୍ୟୟନ କରିଥିଲେ । ସମସ୍ତ ସୂତ୍ର ଅଧ୍ୟୟନ କରିଥିଲେ ହେଁ ସିଂ-ମିଂ (ଶବ୍ଦବିଦ୍ୟା ସୂତ୍ର) ରେ ତାହାଙ୍କର ଜ୍ଞାନ ଅପରିସୀମ ଥିଲା । ଉକ୍ତ ରାଜ୍ୟର ରାଜା ଓ ପ୍ରଜା ସମସ୍ତେ ତାହାଙ୍କୁ ଏତେ ସମ୍ମାନ କରୁଥିଲେ ଯେ, ସେମାନେ ତାହାଙ୍କୁ ଅତୁଲ୍ୟ ( ତୁଃ-ପୋ ) ଆଖ୍ୟା ପ୍ରଦାନ କରିଥିଲେ । ହୁଏନ୍‌ସାଂ ତାଙ୍କ ସମୀପ-ବର୍ତ୍ତୀ ହେଲାରୁ ସେ ତାହାଙ୍କ ପ୍ରତି ଅଭ୍ୟାଗତୋଚିତ ସମ୍ମାନ ପ୍ରଦର୍ଶନ କଲେ । ସେତେବେଳେ ସେ ତାହାଙ୍କ ବିଶାଳ ଧର୍ମଜ୍ଞାନ ସମ୍ବନ୍ଧରେ ଆଦୌ କିଛି ଅବଗତ ନ ଥିଲେ । ହୁଏନ୍‌ସାଂଙ୍କୁ ସେ ସମ୍ବୋଧନ କରି କହିଲେ, "ଏହି ରାଜ୍ୟରେ ସା-ସିନ୍ ( ସଂଯୁକ୍ତାଭିଧର୍ମ ), କୁ-ଶି (କୋଷ), ପି-ଷା (ବିଭାଷା) ଓ ଅନ୍ୟାନ୍ୟ ସୂତ୍ର ପ୍ରଚଳିତ ଅଛି । ଆପଣ ବିପଦସଙ୍କୁଳ ପଶ୍ଚିମ-ଭୂଖଣ୍ଡକୁ ଯିବା ସକାଶେ ପ୍ରୟାସ ନ କରି ଏଠାରେ ଏ ସମସ୍ତ ଅଧ୍ୟୟନ କରି ପାରନ୍ତି ।"

ହୁଏନ୍‌ସାଂ ପଚାରିଲେ, "ଆପଣଙ୍କର ଏଠାରେ ଯୋଗଶାସ୍ତ୍ର ଅଛି ନା ନାହିଁ ?" ମୋକ୍ଷଗୁପ୍ତ ଉତ୍ତର କଲେ, "ସେହି ଧର୍ମବିରୋଧୀ ଗ୍ରନ୍ଥର ନାମ ଆପଣ କାହିଁକି ମୁଖରେ ଉଚ୍ଚାରଣ କରୁଅଛନ୍ତି ? ବୁଦ୍ଧଙ୍କର କୌଣସି ପ୍ରକୃତ ଶିଷ୍ୟ ସେହି ଗ୍ରନ୍ଥ ଅଧ୍ୟୟନ କରନ୍ତି ନାହିଁ ।"

ମୋକ୍ଷଗୁପ୍ତଙ୍କୁ ଦର୍ଶନ କରି ହୁଏନ୍‌ସାଂଙ୍କ ହୃଦୟରେ ତାଙ୍କ ପ୍ରତି ଭକ୍ତି ଉଦୟ ହୋଇଥିଲା; କିନ୍ତୁ ଏହା ଶ୍ରବଣ କଲାମାତ୍ରକେ ତାଙ୍କୁ ଅତ୍ୟନ୍ତ କଳୁଷିତ ଜ୍ଞାନ କଲେ । ତତ୍ପରେ କହିଲେ, "ଆମ୍ଭ ଦେଶରେ ସୁଦ୍ଧା ବହୁ କାଳରୁ ବିଭାଷା ଓ କୋଷସୂତ୍ର ପ୍ରଚଳିତ ଅଛି; କିନ୍ତୁ ଦୁଃଖର ବିଷୟ, ତହିଁର ଯୁକ୍ତିଗୁଡିକ ଅଗଭୀର ଓ ଭାଷା ହୀନପ୍ରାଣ । ଜୀବନର ପରମୋତ୍କର୍ଷ ସମ୍ବନ୍ଧରେ ତହିଁରେ ଶିକ୍ଷଣୀୟ କିଛି ନାହିଁ * । ଏହି ହେତୁରୁ ମୁଁ ଏତେ ଦୂର ଦେଶକୁ ମହାଯାନ ଅନ୍ତର୍ଗତ ଯୋଗଶାସ୍ତ୍ର ଅଧ୍ୟୟନ କରିବାକୁ ଆସିଅଛି । ଆଉ ଯୋଗଶାସ୍ତ୍ର ଶ୍ରେଷ୍ଠ ବୋଧିସତ୍ତ୍ୱ ମୈତ୍ରେୟଙ୍କ ଆତ୍ମପ୍ରକାଶ ବ୍ୟତୀତ ଆଉ କିଅଣ ହୋଇପାରେ ? ଏପରି ଗ୍ରନ୍ଥକୁ ଧର୍ମବିରୋଧୀ ଆଖ୍ୟା ପ୍ରଦାନ କରି ଆପଣ କିପରି ଅତଳସ୍ପର୍ଶ ଗହ୍ୱରକୁ ଭୟ କରୁ ନାହାନ୍ତି ?"

ମୋକ୍ଷଗୁପ୍ତ ଉତ୍ତର କଲେ, "ଆପଣ ଅଦ୍ୟାପି ବିଭାଷା ଓ ଅନ୍ୟାନ୍ୟ ସୂତ୍ରସମୂହର ସାର ଗ୍ରହଣ କରିବାରେ ସମର୍ଥ ହୋଇ ନାହାନ୍ତି । କିପରି ଆପଣ କହି ପାରନ୍ତି ଯେ, ତହିଁରେ ଧର୍ମର ନିଗୂଢ଼ ତତ୍ତ୍ୱ ନାହିଁ ?"

ହୁଏନ୍‌ସାଂ ପ୍ରଶ୍ନ କଲେ, "ସେ ସମସ୍ତ ଆପଣ କି ବୁଝି ଅଛନ୍ତି ?"

ମୋକ୍ଷଗୁପ୍ତ ଉତ୍ତର କଲେ, "ସେ ସମସ୍ତ ମୋର ସମ୍ପୂର୍ଣ୍ଣରୂପେ ଆୟତ୍ତ ହୋଇଅଛି ।"

ତତ୍ପରେ ହୁଏନ୍‌ସାଂ ବିଭାଷାର ଆଦ୍ୟ ସୂତ୍ର ପଠନ ଆରମ୍ଭ କଲେ ଏବଂ ସେହି ସ୍ଥାନରୁ ପରବର୍ତ୍ତୀ ସୂତ୍ରଗୁଡିକର ଆଲୋଚନାରେ

* ବୁଦ୍ଧଙ୍କ ଯୋଗ ଶାସ୍ତ୍ରର 'ପରମୋତ୍କର୍ଷ' ଅର୍ଥାତ୍ ପରମାତ୍ମା ସହ ମିଳନ

ପ୍ରବୃତ୍ତ ହେବାକୁ ତାହାଙ୍କୁ ଅନୁରୋଧ କଲେ । ତତ୍କ୍ଷଣାତ୍ ମୋକ୍ଷ-ଗୁପ୍ତଙ୍କ ଭ୍ରମୋତ୍ପତ୍ତି ହେଲା ଏବଂ ପଦେ ପଦେ ଭ୍ରମରେ ପଡ଼ି ପରି-ଶେଷରେ ସେ ତହିଁରୁ ଏକାବେଳକେ କ୍ଷାନ୍ତ ହେଲେ । ତତ୍ପରେ ରୂପ ପରିବର୍ତ୍ତନପୂର୍ବକ ଧୃଷ୍ଟତ୍ୟ ସହକାରେ କହିଲେ, "ଗ୍ରନ୍ଥର ଅନ୍ୟ ସ୍ଥାନରୁ ମୋତେ ପ୍ରଶ୍ନ କରି ପାରନ୍ତି ।" ହୁଏନ୍‌ସାଂ ସୂତ୍ରର ଅପସଂଶର ଆଲୋଚନା ଆରମ୍ଭ କଲେ । କିନ୍ତୁ ମୋକ୍ଷଗୁପ୍ତ ତାହା ଆବୃତ୍ତି ସୁଦ୍ଧା କରି ପାରିଲେ ନାହିଁ ଏବଂ କହିଲେ, "ଶାସ୍ତ୍ରରେ ଏପରି ସୂତ୍ର ତ ନାହିଁ ।" ଏହି ସମୟର ରାଜାଙ୍କ ପିତୃବ୍ୟ ଶ-ସୁ ସନ୍ନ୍ୟାସଧର୍ମ ଗ୍ରହଣ କରି ସୂତ୍ର ଓ ଶାସ୍ତ୍ରସମୂହ ଅଧିବସାୟ ସହକାରେ ଅଧ୍ୟୟନ କରିଥିଲେ । ଏହି ଶାସ୍ତ୍ରାଲୋଚନା ସମୟରେ ସେ ହୁଏନ୍‌ସାଂଙ୍କ ଦକ୍ଷିଣ ପାର୍ଶ୍ୱରେ ଉପବିଷ୍ଟ ହୋଇଥିଲେ । ତତ୍କ୍ଷଣାତ୍ ସେ ହୁଏନ୍‌ସାଂଙ୍କ ସମର୍ଥନ କରି କହିଲେ, "ନିଶ୍ଚୟ ଏହି ସୂତ୍ର ଶାସ୍ତ୍ରରେ ଅଛି" ଏବଂ ସେ ତନ୍ମୁହୂର୍ତ୍ତରେ ତାହା ମୂଳଗ୍ରନ୍ଥରୁ ପାଠ କରି ଦେଖାଇଦେଲେ । ଏଥିରେ ମୋକ୍ଷଗୁପ୍ତ ନିରତିଶୟ ଲଜ୍ଜିତ ହେଲେ ଏବଂ କହିଲେ, "ମୋର ବାର୍ଦ୍ଧକ୍ୟଜନିତ ବିଭ୍ରମ ଜାତ ହୋଇଅଛି ।" ଅନ୍ୟାନ୍ୟ ସୂତ୍ର ସମ୍ବନ୍ଧରେ ସୁଦ୍ଧା ତାହାଙ୍କୁ ପ୍ରଶ୍ନ କରାହେଲା ; କିନ୍ତୁ ସେ କୌଣସି ବିଷୟର ସନ୍ତୋଷଜନକ ଉତ୍ତର ଦେଇ ପାରିଲେ ନାହିଁ ।

ଲିଂ ପର୍ବତସ୍ଥ ଗିରିବର୍ତ୍ମସମୂହ ତୁଷାରଦ୍ୱାରା ରୁଦ୍ଧ ହୋଇଯାଇ ଥିବାରୁ ହୁଏନ୍‌ସାଂ ଅଗ୍ରସର ହୋଇ ନ ପାରି ଏଠାରେ ଦୁଇ ମାସ କାଳ ଅବସ୍ଥାନ କରିବାକୁ ବାଧ୍ୟ ହେଲେ । ଏହି ସମୟ ମଧ୍ୟରେ ପଥର ଅବସ୍ଥା ପର୍ଯ୍ୟବେକ୍ଷଣ କରିବା ସକାଶେ ବହିର୍ଗତ ହେଲାବେଳେ ଯଦି ମୋକ୍ଷଗୁପ୍ତଙ୍କ ସହିତ ଦୈବାତ୍ ସାକ୍ଷାତ୍ ହେଉଥିଲା, ତାହାହେଲେ ସେ ହୁଏନ୍‌ସାଂଙ୍କ ନିକଟରେ ବସିବା ପାଇଁ ସୁଦ୍ଧା କୁଣ୍ଠିତ ହେଉଥିଲେ । କେବଳ ଠିଆହୋଇ ପଦେ ଅଧେ କଥା କହି ବୁଲିଯିବା ପାଇଁ ବ୍ୟଗ୍ର

ହେଉଥିଲେ । ପୁଣି ସେ ଲୋକଙ୍କୁ କହୁଥିଲେ, "ଏହି ଚୀନ ଦେଶୀୟ ଆଚାର୍ଯ୍ୟଙ୍କ ସହିତ ଶାସ୍ତ୍ରାଲୋଚନା କରିବା ସହଜ ନୁହେଁ । ଏ ବଡ଼ କଠିନ ଲୋକ । ଏ ଯଦି ଭାରତବର୍ଷକୁ ଯାଆନ୍ତି, ତାହାହେଲେ ଯୁବକ ସନ୍ନ୍ୟାସିଗଣ ଶାସ୍ତ୍ରାଲୋଚନା କରିବା ସକାଶେ କଦାପି ଏହାଙ୍କର ସମ୍ମୁଖୀନ ହେବାକୁ ଇଚ୍ଛା କରିବେ ନାହିଁ ।" ମୋକ୍ଷଗୁପ୍ତ ହୁଏନସାଂଙ୍କ ଏହିପରି ଭୟ ଓ ଭକ୍ତି କରୁଥିଲେ । ତାହାଙ୍କ ବିଦାୟ ସକାଶେ ଯେଉଁ ଦିନ ନିର୍ଦ୍ଦିଷ୍ଟ ହେଲା, ସେହିଦିନ ରାଜା ଉଷ୍ଟ୍ର, ଅଶ୍ୱ ଓ ଭୃତ୍ୟ ପ୍ରଦାନ କରି ରାଜଧାନୀସ୍ଥ ଧର୍ମାଚାର୍ଯ୍ୟ ଓ ପ୍ରଜାମାନଙ୍କ ସମଭିବ୍ୟାହାରରେ ତାଙ୍କ ସହିତ କିଛି ଦୂର ଗମନ କଲେ ।

---

## ତୁର୍କୀ ଦସ୍ୟୁଙ୍କୁ ଦର୍ଶନ କରି ଗିରିସଙ୍କଟ ଅତିକ୍ରମ କଲେ

ଦୁଇ ଦିନ ପରେ ମାର୍ଗରେ ସେ ଦୁଇ ସହସ୍ର ଅଶ୍ୱାରୋହୀ ତୁର୍କୀ ଦସ୍ୟୁଙ୍କୁ ଅତିକ୍ରମ କଲେ । ସେମାନେ ଲୁଣ୍ଠିତ ଦ୍ରବ୍ୟସମୂହ ବଣ୍ଟନ କରିବାରେ କଳହ କରି ପରସ୍ପର ମଧ୍ୟରେ ଯୁଦ୍ଧରେ ପ୍ରବୃତ୍ତ ହେଲେ ଓ ଅଳ୍ପ ସମୟ ମଧ୍ୟରେ ଇତସ୍ତତଃ ପଳାୟନ କଲେ ।

ତତ୍ପରେ ଛଅ ଶତ ଲି ପଥ ଚାଲି ହୁଏନସାଂ ଏବଂ ତାହାଙ୍କ ଅନୁଚରବର୍ଗ ଏକ ଅପ୍ରଶସ୍ତ ମରୁଭୂମି ଅତିକ୍ରମ କଲେ ଓ ପୋ-ଲୁ-କ୍ୟା ( ବାଲୁକା ) ରାଜ୍ୟରେ ପ୍ରବିଷ୍ଟ ହୋଇ ସେଠାରେ ଏକ ରାତ୍ରି ଯାପନ କଲେ । ସେଠାରୁ ଉତ୍ତର-ପଶ୍ଚିମ ପାର୍ଶ୍ୱସ୍ଥ ପଥରେ ତିନ ଶତ ଲି ଯାଇ ଆଉ ଏକ ମରୁଭୂମି ଅତିକ୍ରମ କଲେ ଏବଂ ଲିଂ ପର୍ବତରେ ଆସି ଉପନୀତ ହେଲେ । ଏହି ଅଭ୍ରଭେଦୀ ପର୍ବତ ସୁଂ-ଲିଂ ପର୍ବତଶ୍ରେଣୀର ଉତ୍ତର କୋଣରେ ଅବସ୍ଥିତ ହୋଇ ବାରମ୍ବାର ଦର୍ଶକହୃଦୟରେ ଭୀତି ଉତ୍ପାଦନ କରୁଅଛି । ଅନନ୍ତକାଳରୁ ପୁଞ୍ଜୀଭୂତ ତୁଷାରରାଶି ତୁଷାର

ପର୍ବତରେ ପରିଣତ ହୋଇ ରହିଅଛି । ଶୀତ ଅଥବା ଗ୍ରୀଷ୍ମକାଳରେ ତାହା କଣିକା ମାତ୍ର ବିଗଳିତ ହୁଏ ନାହିଁ । ସ୍ଥାନେ ସ୍ଥାନେ ତୁଷାରରୁ ଗଳିତ ଜଳରାଶି ମୃତ୍ତିକା ମଧ୍ୟରେ ବାରିଦପଟଳ ସହି ମିଳିତ ହୋଇ ପ୍ରାତଃ ଓ ସାୟଂକାଳୀନ ପ୍ରତିଫଳିତ ସୂର୍ଯ୍ୟାଲୋକରେ ଦର୍ଶକ-ଚକ୍ଷୁରେ ଅନ୍ଧତା ସମ୍ପାଦନ କରୁଅଛି । କେତେବେଳେ କେତେବେଳେ ପର୍ବତଶୃଙ୍ଗରୁ ପତିତ ତୁଷାରରାଶି ଗିରିବର୍ତ୍ମ ରୁଦ୍ଧ କରି କ୍ଷୁଦ୍ର କ୍ଷୁଦ୍ର ପର୍ବତ ସୃଷ୍ଟି କରି ରହିଅଛି । ଏ ସମସ୍ତ ଆରୋହଣ ବା ଅବରୋହଣ କରିବା ଅତୀବ କଷ୍ଟସାଧ୍ୟ । ବେଳେ ବେଳେ ଶୀତଳ ବାତ୍ୟା ଏଡ଼େ ପ୍ରବଳ ବେଗରେ ପ୍ରବାହିତ ହୁଏ ଯେ, କମ୍ବଳ ଶୀତ ବସ୍ତ୍ରରେ ଆବୃତ ହୋଇଥିଲେ ସୁଦ୍ଧା ଶୀତରୁ ରକ୍ଷା ପାଇବା ଅସମ୍ଭବ ହୋଇଉଠେ । ରନ୍ଧନ କରିବା ସକାଶେ ଶୁଷ୍କ ସ୍ଥାନର ଏକାନ୍ତ ଅଭାବ । ରନ୍ଧନପାତ୍ର ଝୁଲାଇ ରଖିବା ଓ ତୁଷାରୋପରି ଶୟନ କରିବା ଭିନ୍ନ ଉପାୟାନ୍ତର ନାହିଁ ।

ସାତ ଦିନ ପରେ ସେମାନେ ପର୍ବତଶ୍ରେଣୀ ମଧ୍ୟରୁ ବହିର୍ଗତ ହେଲେ । ସେମାନଙ୍କ ମଧ୍ୟରୁ ବାର ଚଉଦ ଜଣ ଅନାହାର ଓ ଶୀତରେ ପ୍ରାଣତ୍ୟାଗ କଲେ । ବଳୀବର୍ଦ୍ଦ ଓ ଅଶ୍ୱମାନଙ୍କ ମୃତ୍ୟୁସଂଖ୍ୟା ଅତ୍ୟଧିକ ।

ପର୍ବତଶ୍ରେଣୀ ପରିତ୍ୟାଗ କରି ସେମାନେ ସିଂ ନାମକ ହ୍ରଦ ନିକଟରେ ଆସି ଉପସ୍ଥିତ ହେଲେ । ଏହି ହ୍ରଦର ପରିଧି ୧୪୦୦ ଲମ୍ବା ୧୫୦୦ ଲି । ପୂର୍ବ-ପଶ୍ଚିମକୁ ପ୍ରଶସ୍ତ ଓ ଉତ୍ତର-ଦକ୍ଷିଣକୁ ଅପରିସର । ପ୍ରବଳ ବାତ୍ୟାପ୍ରବାହ ସମୟରେ ହ୍ରଦଗାତ୍ରରେ ଅଦ୍ଭୁତ ତରଙ୍ଗମାଳା ଉତ୍ଥିତ ହୁଏ ।

---

## ତୁର୍କୀର ଖାଁଙ୍କ ସହିତ ସାକ୍ଷାତ୍

ବୁଦ୍ଧ ଉପକୂଳରେ ପାଞ୍ଚ ଶତ ଲି ପଥ ଅତିକ୍ରମ କରି ହୁଏନ୍‌ସାଂ ସ୍ଥି-ସ୍ୱେ ନାମକ ସହରରେ ଆସି ଉପନୀତ ହେଲେ । ଏହିଠାରେ ସ୍ୱେ-ହ୍ରର ତୁର୍କ ଜାତୀୟ ଖାଁଙ୍କ ସହିତ ତାହାଙ୍କ ସାକ୍ଷାତ୍ ହେଲା । ସେତେବେଳେ ସେ ମୃଗୟାରେ ବ୍ୟାପୃତ ଥିଲେ । ଏହି ବର୍ବର ଜାତୀୟ ଲୋକଙ୍କ ଅଶ୍ୱସମୂହ ଅତ୍ୟନ୍ତ ସୁନ୍ଦର । ଖାଁଙ୍କ ସର୍ବାଙ୍ଗ ହରିଦ୍‌ବର୍ଣ୍ଣ ସାଟିନ ବସ୍ତ୍ରନିର୍ମିତ ପରିଚ୍ଛଦରେ ଆବୃତ ହୋଇଥିଲା । କେଶ ଆଲୁଲାୟିତ,ଦଶ ଫୁଟ ପରିମିତ ଖଣ୍ଡିଏ ରେଶମ ବନ୍ଧନୀ ମସ୍ତକ ଦେଶକୁ ବେଷ୍ଟନ କରି ପଶ୍ଚାଦ୍ଭାଗରେ ଲମ୍ବିତ ହୋଇଥିଲା । ତାହାଙ୍କ ସମଭିବ୍ୟାହାରରେ ଦୁଇ ଶତ ଉଚ୍ଚପଦସ୍ଥ କର୍ମଚାରୀ ସମସ୍ତେ ରେଶମ ପରିଚ୍ଛଦ ପରିଧାନ କରିଥିଲେ ଓ ସେମାନଙ୍କ କେଶ ବେଣୀସମ୍ବଦ୍ଧ । ଖାଁଙ୍କ ଦକ୍ଷିଣ ଓ ବାମ ପାର୍ଶ୍ୱରେ ପଶୁଲୋମନିର୍ମିତ ପରିଚ୍ଛଦରେ ସ୍ୱାଧୀନ ଉଷ୍ଟ୍ର ଓ ଅଶ୍ୱାରୋହୀ ସୈନିକଗଣ ହସ୍ତରେ ବଲ୍ଲମ, ଧନୁଶର ଓ ପତାକା ଧାରଣ କରିଥାଆନ୍ତି ।

ପରସ୍ପର ସାକ୍ଷାତ୍ ହେଲା ପରେ ଖାଁ ଆନନ୍ଦ ସହକାରେ କହିଲେ, "ଆପଣ ଏଠାରେ ଅଳ୍ପ ସମୟ ରହନ୍ତୁ । ମୁଁ ଦୁଇ ତିନି ଦିନ ପରେ ଫେରିଆସିବ ।" ତତ୍ପରେ ସେ ତା-ମୋ-ଚି ନାମକ ତାହାଙ୍କ ଏକ ପ୍ରଧାନ କର୍ମଚାରୀଙ୍କୁ ତମ୍ବୁକୁ ନେଇ, ତାହାଙ୍କ ସକାଶେ ସମସ୍ତ ବ୍ୟବସ୍ଥା କରି ଦେବା ପାଇଁ ଆଦେଶ ପ୍ରଦାନ କଲେ । ତିନି ଦିନ ଉତ୍ତାରେ ଖାଁ ପ୍ରତ୍ୟାବର୍ତ୍ତନ କରି ତାହାଙ୍କ ହସ୍ତଧାରଣପୂର୍ବକ ନିଜ ଶିବିରାଭ୍ୟନ୍ତରକୁ ଘେନିଗଲେ ଓ ଜଣେ ଦୋଭାଷୀ ଲୋକଙ୍କ ସାହାଯ୍ୟରେ ପରସ୍ପର ଶିଷ୍ଟାଚାରପୂର୍ଣ୍ଣ ବାକ୍ୟାଳାପରେ ପ୍ରବୃତ୍ତ ହେଲେ ।

ଖାଁଙ୍କ ପ୍ରଶସ୍ତ ଶିବିରାଭ୍ୟନ୍ତର ସ୍ୱର୍ଣ୍ଣନିର୍ମିତ ପୁଷ୍ପାଳଙ୍କାର ପ୍ରଭୃତିରେ ମଣ୍ଡିତ ହୋଇ ତେଜଃପୁଞ୍ଜରେ ଦର୍ଶକର ଚକ୍ଷୁ ଝଲସାଇ ଦେଉଥିଲା । ତାହାଙ୍କ ସମ୍ମୁଖରେ କର୍ମଚାରୀମାନେ ଦୁଇ ଶ୍ରେଣୀରେ ଭୂମିରେ ଆସନ ରଚନା କରି ଉପବେଶନ କରିଥିଲେ । ସମସ୍ତେ କାରୁକାର୍ଯ୍ୟବିଶିଷ୍ଟ ବହୁମୂଲ୍ୟ ରେଶମ ପରିଚ୍ଛଦରେ ମଣ୍ଡିତ ହୋଇଥିଲେ । ସେମାନଙ୍କ ପଶ୍ଚାଦ୍ଭାଗରେ ଖାଁଙ୍କ ଶରୀର-ରକ୍ଷିଗଣ ଦଣ୍ଡାୟମାନ ହୋଇଥିଲେ । ସେ ଏକ ଭ୍ରମଣଶୀଳ ଜାତିର ଶାସନ କର୍ତ୍ତା; ତଥାପି ତାହାଙ୍କ ଚତୁଃପାର୍ଶ୍ୱସ୍ଥ ବ୍ୟାପାରସମୂହ ଆଡ଼ମ୍ବର ପୂର୍ଣ୍ଣ ଥିଲା ।

ତୁର୍କୀମାନେ ଅଗ୍ନି ଉପାସକ । ସେମାନେ କାଷ୍ଠାସନ ବ୍ୟବହାର କରୁ ନ ଥିଲେ । ଯେହେତୁ କାଷ୍ଠରେ ଅଗ୍ନି ନିହିତ ଥାଏ । ପୂଜା ସମୟରେ ସେମାନେ ବସନ୍ତି ନାହିଁ । କେବଳ ଭୂମିରେ ଆସନ ରଚନା କରି ରଖି ଦେଇଥାଆନ୍ତି ଓ ଦଣ୍ଡାୟମାନ ହୋଇ ପୂଜାଦି ସମ୍ପାଦନ କରନ୍ତି ; କିନ୍ତୁ ସେମାନେ ହୁଏନ୍ ସାଂଙ୍କ ସକାଶେ କୋମଳ ଚର୍ମାବୃତ ଲୌହାସନ ଅଣାଇ ତହିଁରେ ଉପବେଶନ କରିବାକୁ ତାଙ୍କୁ ଅନୁରୋଧ କଲେ । ତତ୍ପରେ କୋ-ଚ୍ୟାଂରୁ ଆଗତ ଦୂତମାନଙ୍କୁ ଉପହାର ଓ ପତ୍ରାଦି ସହ ଖାଁଙ୍କ ସମ୍ମୁଖରେ ଉପସ୍ଥାପିତ କଲାରୁ ଖାଁ ସେ ସମସ୍ତ ସ୍ୱୟଂ ପରିଦର୍ଶନ କରି ଅତ୍ୟନ୍ତ ପ୍ରୀତ ହେଲେ । ତତ୍ପରେ ଦୂତମାନଙ୍କୁ ଆସନ ପ୍ରଦାନପୂର୍ବକ ସେମାନଙ୍କ ସକାଶେ ସୁରା ଆଣିବା ନିମିତ୍ତ ଆଦେଶ କଲେ । ସଙ୍ଗୀତ ସହ ବାଦ୍ୟ ବାଜିଉଠିଲା ।

ଖାଁ ଅମାତ୍ୟବର୍ଗଙ୍କ ସମଭିବ୍ୟାହାରରେ କୋ-ଚ୍ୟାଂର ଦୂତମାନଙ୍କ ସହ ସୁରାପାନ କଲେ ଓ ହୁଏନ୍ ସାଂଙ୍କ ସକାଶେ ଦ୍ରାକ୍ଷାରସ ଅଣାଇଲେ । ତତ୍ପରେ ଉପସ୍ଥିତ ସମସ୍ତେ ସୁରାପାନରେ ପ୍ରବୃତ୍ତ ହେଲେ । ପାତ୍ରଖଦ-ଚୁମ୍ବନ ପରସ୍ପର ସକାଶେ ମଦ୍ୟପାତ୍ର ପୂର୍ଣ୍ଣ କଲେ ଓ କୋଳାହଳ

ସହକାରେ ସୁରା ପାନକଲେ । ଇତି ମଧ୍ୟରେ ବାଦ୍ୟଯନ୍ତ୍ର ସହ ନାନା ପ୍ରକାର ସଙ୍ଗୀତ ଗୀତ ହୋଇ ସମସ୍ତଙ୍କ ମନୋହରଣ କରୁଥିଲା । ଅଳ୍ପ ସମୟ ମଧ୍ୟରେ ମାଂସ ପ୍ରଭୃତି ନାନାବିଧ ଆହାର ସାମଗ୍ରୀ ଆନୀତ ହେଲା; କିନ୍ତୁ ହୁଏନ୍‌ସାଂଙ୍କ ସକାଶେ ତଣ୍ଡୁଲ-ପିଷ୍ଟକ, ସର, ଶର୍କରା, ମଧୁ ଓ ଦ୍ରାକ୍ଷା ପ୍ରଦତ୍ତ ହେଲା; ଆମୋଦ ପ୍ରମୋଦର ଅବସାନରେ ପୁନର୍ବାର ଅତିଥିମାନଙ୍କ ମଧ୍ୟରେ ଦ୍ରାକ୍ଷାରସ ବିତରଣ ହେଲା ଏବଂ ତତ୍ପରେ ଖାଁ ହୁଏନ୍‌ସାଂଙ୍କୁ ଧର୍ମଶାସ୍ତ୍ର ବ୍ୟାଖ୍ୟାନ ଆରମ୍ଭ କରିବା ସକାଶେ ଅନୁରୋଧ କଲେ । ହୁଏନ୍‌ସାଂ ସେମାନଙ୍କୁ ତିରସ୍କାର କରିବା ଅଭିପ୍ରାୟରେ ଦଶଶୀଳ , ଜୀବନ ରକ୍ଷା, ପାରମିତ ଓ ନିର୍ବାଣପ୍ରାପ୍ତି ନିମିତ୍ତ କାର୍ଯ୍ୟାନୁଷ୍ଠାନ ସମ୍ବନ୍ଧରେ ଏକ ଭାଷଣ ଦେଲେ । ରାଜା ହସ୍ତୋତ୍ତୋଳନପୂର୍ବକ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ ପୁରଃସର ତାହାଙ୍କ ଧର୍ମୋପଦେଶ ଗ୍ରହଣ କଲେ ।

କତିପୟ ଦିବସ ଅବସ୍ଥାନ କଲା ଉତ୍ତାରେ ସେଠାରେ ଚିରକାଳ ନିମିତ୍ତ ରହିବା ପାଇଁ ଖାଁ ତାହାଙ୍କୁ ଅନୁରୋଧ କଲେ । ସେ କହିଲେ, "ମହାଶୟ, ଆପଣଙ୍କର ଭାରତବର୍ଷକୁ ଯିବା ପ୍ରୟୋଜନ ନାହିଁ । ସେ ଦେଶ ଅତ୍ୟନ୍ତ ଗରମ । ଆମ୍ଭମାନଙ୍କର ଏଠାରେ ବର୍ଷର ପଞ୍ଚମ ମାସରେ ଯେତେ ଗରମ ସେଠାରେ ଦଶମ ମାସରେ ସେତିକି ଗରମ । ଆପଣଙ୍କୁ ଦେଖି ମୋର ମନେ ହୁଏ ଆପଣ ସେହି ଜଳବାୟୁରେ କଦାପି ପ୍ରାଣରକ୍ଷା କରି ପାରିବେ ନାହିଁ । ଭାରତବର୍ଷର ଅଧିବାସୀମାନେ ଉଲଗ୍ନ, କୃଷ୍ଣକାୟ, ଅସଭ୍ୟ, ଶିଷ୍ଟତା-ଜ୍ଞାନବିହୀନ ଓ ମୁଖଦର୍ଶନର ଅଯୋଗ୍ୟ ।"

---

* Ten Precepts.

ହୁଏନ୍‌ସାଂ ଉତ୍ତର କଲେ, "ଏ ସମସ୍ତ ସତ୍ତ୍ୱେ ମୁଁ ଭାରତବର୍ଷକୁ ଧର୍ମତତ୍ତ୍ୱାନ୍ୱେଷଣାର୍ଥେ ଯିବାକୁ ସଙ୍କଳ୍ପ କରିଅଛି ।"

---

## ଖାଁଙ୍କର ପରିଚ୍ଛଦ ଦାନ ଓ ପିଂସୁରେ ପ୍ରବେଶ

ତତ୍ପରେ ଖାଁ ତାଙ୍କ ସୈନିକମାନଙ୍କ ମଧ୍ୟରେ କେହି ଚୀନ୍ ଓ ଅନ୍ୟ ଦେଶଭାଷାଭିଜ୍ଞ ବ୍ୟକ୍ତି ଅଛନ୍ତି କି ନାହିଁ, ଏହି ବିଷୟରେ ଅନୁସନ୍ଧାନ କରିବା ପାଇଁ ଆଦେଶ କଲେ । ସେମାନଙ୍କ ମଧ୍ୟରେ ଏକ ଯୁବକ ଚୀନରେ ଅନେକ ବର୍ଷ ଅବସ୍ଥାନ କରି ଚୀନ ଦେଶୀୟ ଭାଷା ଶିକ୍ଷା କରିଥିବାର ଅବଗତ ହେଲେ । ଉକ୍ତ ଯୁବକ ଭିନ୍ନ ଭିନ୍ନ ଦେଶକୁ ହୁଏନ୍‌ସାଂଙ୍କ ସମ୍ବନ୍ଧରେ ପତ୍ର ଲେଖିବା ସକାଶେ ଓ ତାହାଙ୍କ ସହିତ କପିଶା ରାଜ୍ୟ ପର୍ଯ୍ୟନ୍ତ ଯିବା ସକାଶେ ନିଯୁକ୍ତ ହେଲେ । ଖାଁ ହୁଏନସାଂଙ୍କୁ ରକ୍ତବର୍ଣ୍ଣ ସାଟିନ୍‌ବସ୍ତ୍ର ନିର୍ମିତ ପରିଚ୍ଛଦ ଓ ପଚିଶ ଖଣ୍ଡ ରେଶମ ବସ୍ତ୍ର ଦାନ କଲେ ଓ ତାହାଙ୍କ କର୍ମଚାରିଗଣଙ୍କ ସମଭିବ୍ୟାହାରରେ ଦଶ ଲି ପର୍ଯ୍ୟନ୍ତ ତାହାଙ୍କ ସହିତ ଗମନ କଲେ ।

ଏଠାରୁ ପଶ୍ଚିମ ଦିଗରେ ଚାରି ଶତ ଲି ପଥ ଅତିକ୍ରମ କରି ସେ ପିଂ-ସୁରେ ଉପନୀତ ହେଲେ । ଏହି ସ୍ଥାନକୁ ମଧ୍ୟ ସହସ୍ର ପ୍ରସ୍ରବଣ * କୁହାଯାଏ । ଏହି ରାଜ୍ୟର ଆୟତନ ଅତି ବୃହତ୍ । ଏଠାରେ ଅନେକ ସରୋବର ଓ ପ୍ରସ୍ରବଣ ଅଛି । ଚତୁର୍ଦ୍ଦିଗ ଘନ ପୁଷ୍ପପତ୍ରଶୋଭିତ ବୃକ୍ଷରାଜି ଓ ଶ୍ୟାମଳ ତୃଣାଚ୍ଛାଦିତ ପ୍ରାନ୍ତରରେ ଶ୍ୟାମାୟମାନ ଏବଂ ଏହା ଖାଁଙ୍କ ଶୀତଳ ଗ୍ରୀଷ୍ମାବାସ ।

* Thousand springs.

## ତୁର୍କମାନେ ଅଗ୍ନି-ଉପାସକ

ଟିଂ-ଯୁ ର ପଶ୍ଚିମକୁ ଦେଡଶତ ଲି ଦୂରରେ ଔ-ଲେ-ନି (ତରସ) ନଗର ଅବସ୍ଥିତ । ତହୁଁର ଦୁଇ ଶତ ଲି ପଶ୍ଚିମକୁ ଚେ-ସି ( ପ୍ରସ୍ତର ରାଜ୍ୟ) ଅବସ୍ଥିତ । ପଶ୍ଚିମରେ ଏହି ରାଜ୍ୟ ସେ୍ୟ-ସେ୍ୟ ନଦୀକୂଳରେ ବିଦ୍ୟମାନ । ତତ୍ପରେ ଏହି ସ୍ଥାନରୁ ଏକ ସହସ୍ର ଲି ଦୂରରେ ସୁ-ତୁ-ଲି-ସି-ନା ରାଜ୍ୟ ସେ୍ୟ-ସେ୍ୟ ନଦୀର ପୂର୍ବକୂଳରେ ଅବସ୍ଥିତ । ଏହି ନଦୀ ସୁଂ-ଲିଂ ପର୍ବତଶ୍ରେଣୀର ଉତ୍ତର ଉପତ୍ୟକାରୁ ନିର୍ଗତ ହୋଇ ଉତ୍ତର ପଶ୍ଚିମ ଦିଗକୁ ପ୍ରବାହିତ ହୋଇଯାଇଅଛି । ଏଠାରୁ ଉତ୍ତର ପଶ୍ଚିମକୁ ଗଲେ ଜଳ ଓ ଉଦ୍ଭିଦଶୂନ୍ୟ ଏକ ବିସ୍ତୀର୍ଣ୍ଣ ମରୁଭୂମି ପଡ଼େ । ସ୍ତୂପୀକୃତ କଙ୍କାଳରାଶି ଏହି ସ୍ଥାନରେ ଏକମାତ୍ର ପଥ-ପ୍ରଦର୍ଶକ । ତତ୍ପରେ ଏହି ସ୍ଥାନରୁ ପାଞ୍ଚଶତ ଲି ଦୂରରେ ସେ-ମୋ-କାନ୍ (ସୁଖୀ ଦେଶ) ଅବସ୍ଥିତ । ଏହି ରାଜ୍ୟର ରାଜା ଓ ପ୍ରଜା ବୁଦ୍ଧଙ୍କ ଧର୍ମରେ ବିଶ୍ୱାସ କରନ୍ତି ନାହିଁ । ସେମାନେ ଅଗ୍ନି-ଉପାସକ । ଏଠାରେ ଦୁଇଗୋଟି ମଠ ଅଛି; କିନ୍ତୁ କୌଣସି ଧର୍ମାର୍ଥୀ ଏଠାରେ ରହନ୍ତି ନାହିଁ । କୌଣସି ବିଦେଶୀୟ ଧର୍ମାର୍ଥୀ ଏଠାରେ ଉପନୀତ ହେଲେ, ଏହି ବର୍ବରମାନେ ସେମାନଙ୍କୁ ଜ୍ୱଳନ୍ତ ଅଗ୍ନି ଦେଖାଇ ବିତାଡ଼ିତ କରନ୍ତି ।

ହୁଏନ୍‌ସାଂ ଆଗମନ କାଲମାତ୍ରକେ ଏହି ରାଜ୍ୟର ରାଜା ତାଙ୍କ ପ୍ରତି ଅତ୍ୟନ୍ତ ଅବଜ୍ଞା ପ୍ରକାଶ କଲେ; କିନ୍ତୁ ପ୍ରଥମ ରାତ୍ରିର ଅବସ୍ଥାନ ପରେ ମନୁଷ୍ୟ ଓ ଦେବତାମାନଙ୍କ ଭାଗ୍ୟ ସମ୍ବନ୍ଧରେ ସେ ବକ୍ତୃତା ପ୍ରଦାନ କରି ଯେତେବେଳେ ବୁଦ୍ଧଙ୍କ ସଦ୍‌ଗୁଣାବଳୀର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ ଏବଂ ଧର୍ମର ସାରବତ୍ତା ସମ୍ବନ୍ଧରେ ଅନୁକୂଳ ମତ ବ୍ୟକ୍ତ କଲେ, ସେତେବେଳେ ରାଜା ତାହା ଶୁଣି ଅତ୍ୟନ୍ତ ପ୍ରୀତ ହେଲେ ଓ ତାଙ୍କ ଶିଷ୍ୟରୂପରେ ଗ୍ରହଣ କରି ଉପଦେଶ ପ୍ରଦାନ କରିବାକୁ

ଅନୁରୋଧ କଲେ । ସେହି ଦିନଠାରୁ ସେ ତାଙ୍କୁ ଅତ୍ୟନ୍ତ ସମ୍ମାନ କରି-ବାକୁ ଲାଗିଲେ । ତାହାଙ୍କର ଦୁଇ ଜଣ ଶିଷ୍ୟ ମଠକୁ ଉପାସନା ସକାଶେ ଗମନ କଲେ; କିନ୍ତୁ ବର୍ବରମାନେ ଜ୍ୱଳନ୍ତ ଅଗ୍ନିଶିଖା-ହସ୍ତରେ ତାହାଙ୍କ ଅନୁସରଣ କଲେ । ଯଥାସମୟରେ ଏହି ବିଷୟ ରାଜାଙ୍କ କର୍ଣ୍ଣଗୋଚର ହେଲାରୁ ସେ ସେମାନଙ୍କୁ ଧରାଇ ଆଣିଲେ ଏବଂ ସର୍ବ-ସମକ୍ଷରେ ସେମାନଙ୍କ ହସ୍ତ ଛେଦନ କରିବାକୁ ଆଦେଶ କଲେ; କିନ୍ତୁ ହୁଏନ୍‌ସାଂ ସେମାନଙ୍କୁ ସାଧୁଭାବରେ ଜୀବନ ଯାପନ କରିବା ସକାଶେ ଉପଦେଶ ପ୍ରଦାନ କରି, ସେମାନଙ୍କ ଅଙ୍ଗ ବ୍ୟବଚ୍ଛେଦର ଆଦେଶ ପ୍ରତ୍ୟାହାର କରାଇଲେ । ଏହି ପ୍ରକାରେ ସେମାନଙ୍କ ପ୍ରାଣ ରକ୍ଷା ହେଲା; କିନ୍ତୁ ରାଜା ସେମାନଙ୍କୁ କଠୋର ଶାସ୍ତି ଦେଇ ନଗରରୁ ବହିଷ୍କୃତ କରାଇଦେଲେ ।

---

## ତୁର୍କମାନେ ସନ୍ନ୍ୟାସଧର୍ମରେ ଦୀକ୍ଷିତ

ଏ ସମସ୍ତ ଘଟନାରୁ ଉଚ୍ଚ ନୀଚ ସମସ୍ତ ଲୋକେ ହୁଏନ୍‌ସାଂଙ୍କ ପ୍ରତି ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ କରି ତାହାଙ୍କଠାରୁ ଉପଦେଶ ଗ୍ରହଣ କରିବାକୁ ଲାଗିଲେ । ତତ୍ପରେ ସେ ଅନେକ ଲୋକଙ୍କୁ ଆହ୍ୱାନ କରି ସନ୍ନ୍ୟାସ ଧର୍ମରେ ଦୀକ୍ଷିତ କଲେ ଏବଂ ଭିନ୍ନ ଭିନ୍ନ ମଠରେ ସେମାନଙ୍କୁ ପ୍ରତିଷ୍ଠିତ କଲେ । ଏହି ପ୍ରକାରେ ସେମାନଙ୍କ ହୃଦୟରୁ ଧର୍ମବିରୁଦ୍ଧ ଭାବ ଦୂରୀଭୂତ କରି, ସେମାନଙ୍କ କୁପ୍ରଥା ଓ ରୀତି ନୀତିସମୂହ ସଂଶୋଧନ କଲେ । ସେ ଯେଉଁଠାକୁ ଯାଉଥିଲେ ସେଠାରେ ଏହିପରି କାର୍ଯ୍ୟ କରୁଥିଲେ ।

ତତ୍ପରେ ସେ ସେଠାରୁ ପଶ୍ଚିମକୁ ତିନି ଶତ ଲି ଯାଇ କ୍ୟୁ-ଶ୍ୱାଂ-ନି-କ୍ୟା (କଶାନିଆ)ରେ ଉପନୀତ ହେଲେ । ସେଠାରୁ ଦୁଇ ଶତ ଲି

ପଶ୍ଚିମକୁ ହୋହାନ୍ ( ପଶ୍ଚିମାଞ୍ଚଳର ବଣ୍ଡାମ ଦେଶ), ତହିଁର ଦୁଇ ଶତ ଲି ପଶ୍ଚିମକୁ ସୁ-ହୁ ( ମଧ୍ୟ ବଣ୍ଡାମ ଦେଶ ), ସେଠାରୁ ଏକ ଶତ ଲି ପଶ୍ଚିମକୁ ଫା-ଓ ଦେଶ ( ପଶ୍ଚିମ ବଣ୍ଡାମ ଦେଶ ) ଏବଂ ସେଠାରୁ ପାଞ୍ଚ ଶତ ଲି ପଶ୍ଚିମକୁ ହେ-ଲି-ସି-ମି-କି-ଆ (ଖ୍ୱାରଜମ) ରାଜ୍ୟ ଅବସ୍ଥିତ । ଶେଷୋକ୍ତ ରାଜ୍ୟ ପୋ-ସୁ ( ଅକ୍ସସ୍ ) ନଦୀକୂଳରେ ଅବସ୍ଥିତ । ଏହାର ତିନି ଶତ ଲି ଦକ୍ଷିଣପଶ୍ଚିମକୁ କି-ଷ୍ୱାଂ-ନା ( କେଶ ) ଦେଶ ଓ ଏହାର ତିନି ଶତ ଲି ଦକ୍ଷିଣପଶ୍ଚିମରେ ପର୍ବତ-ଶ୍ରେଣୀ ବିସ୍ତୃତ ହୋଇ ରହିଅଛି । ଏଠାରେ ଗିରିବର୍ତ୍ମସମୂହ ଗଭୀର ଓ ବିପଦସଂକୁଳ । ଜଣେ ଲୋକ ସୁଦ୍ଧା ସେହି ସଂକୀର୍ଣ୍ଣ ପଥ ମଧ୍ୟରେ ଏକାକୀ ଯାଇପାରେ ନାହିଁ ଓ ଏହା ଉଦ୍ଭିଦ ଏବଂ ଜଳଶୂନ୍ୟ । ପର୍ବତ-ଶ୍ରେଣୀ ମଧ୍ୟରେ ପ୍ରାୟ ତିନି ଶତ ଲି ଚଲେ ଲୌହଦ୍ୱାରରେ ଉପସ୍ଥିତ ହେବାକୁ ହେବ । ପର୍ବତର ଭିତ୍ତିଦେଶ ପ୍ରାଚୀର ତୁଲ୍ୟ ଉଭୟ ପାର୍ଶ୍ୱରେ ଲମ୍ବ ଭାବରେ ଅବସ୍ଥିତ ରହି ପଥ ରୁଦ୍ଧ କରି ଦେଇଅଛି । ଏହି ସ୍ଥାନର ଶିଳାରେ ଲୌହ ପରିମାଣ ଅତ୍ୟଧିକ । ଉଭୟ ପାର୍ଶ୍ୱର ପ୍ରାଚୀରକୁ ଲାଗି ଏକ ଯୁଗ୍ମଦ୍ୱାର ଅଛି ଏବଂ ତହିଁରେ ବହୁ-ସଂଖ୍ୟକ ଲୌହ ଘଣ୍ଟିକା ଲମ୍ବମାନ ହୋଇ ରହିଅଛି; ତେଣୁ ଏହାର ନାମ ଲୌହଦ୍ୱାର । ତୁର୍କୀମାନଙ୍କ ଆକ୍ରମଣର ପ୍ରତିରୋଧ ପାଇଁ ଏହି ଉପାୟ ଅବଲମ୍ବିତ ହୋଇଥିଲା । ଲୌହ ଦ୍ୱାର ଦେଇ ପ୍ରବିଷ୍ଟ ହୋଇ ତୁ-ହୋ-ଲୋ ଦେଶକୁ ଆସିବାକୁ ହୁଏ । ଏଠାରୁ ବହୁ ଶତ ଲି ପରେ ଅକ୍ସସ୍ ନଦୀ ଅତିକ୍ରମ କଲେ ହୋ (କୁଲୁଜ) ରାଜ୍ୟ । ଏହା ଖାଁ ଯେ-ହୁଂଙ୍କ ଜ୍ୟେଷ୍ଠ ପୁତ୍ର ତା-ତୁ ସାହିଙ୍କ ବାସସ୍ଥାନ ଥିଲା । ତା-ତୁଙ୍କ ସହ କୋଚ୍ଙ୍ଗ ନରପତିଙ୍କ ଭଗିନୀଙ୍କର ବିବାହ ହୋଇଥିଲା ।

---

## କୁଳୁତ ରାଜ-ପରିବାରରେ ଷଡ଼ଯନ୍ତ୍ର

ଚୋଙ୍ଗ୍‌ ନରପତି ହୁଏନ୍‌ସାଂଙ୍କ ସମ୍ବନ୍ଧରେ ତାହାଙ୍କ ଭଗିନୀପତିଙ୍କ ନିକଟକୁ ପତ୍ର ପ୍ରେରଣ କରିଥିଲେ । ହୁଏନ୍‌ସାଂଙ୍କ ପହଞ୍ଚିବା ସମୟରେ ରାଜକୁମାରୀ ହୋ-କଆ-ତୁନ ଇହଲୀଳା ସମ୍ବରଣ କରିଥିଲେ ଏବଂ ଯୁବରାଜ ତା-ତୁ-ଶାଦ୍ ରୋଗଶଯ୍ୟାରେ ଶାୟିତ ଥିଲେ । ହୁଏନ୍‌ସାଂ ଚୋଙ୍ଗ୍‌ଠାରୁ ଯୁବରାଜ ଓ ତାଙ୍କ ପତ୍ନୀଙ୍କଠାକୁ ପତ୍ର ନେଇ ଆସିଅଛନ୍ତି ଶୁଣି ଯୁବରାଜଙ୍କ ହୃଦୟ ଦୁଃଖରେ ଅଭିଭୂତ ହେଲା । ତତ୍ପରେ ସେ ହୁଏନ୍‌ସାଂଙ୍କୁ ସମ୍ବୋଧନ କରି କହିଲେ, "ଆପଣଙ୍କ ଏହି ବନୀତ ଭୃତ୍ୟ ଆପଣଙ୍କ ଦର୍ଶନରେ ଦୃଷ୍ଟିଶକ୍ତି ଲାଭ କରିଅଛି । ଦୟା କରି ଆପଣ ଏଠାରେ ଅଳ୍ପ ସମୟ ବିଶ୍ରାମ କରନ୍ତୁ । ମୁଁ ଆରୋଗ୍ୟ ଲାଭକଲେ ନିଜେ ଯାଇ ବ୍ରାହ୍ମଣମାନଙ୍କ ଦେଶରେ ଆପଣଙ୍କୁ ଛାଡ଼ିଦେଇଆସିବି ।

ଏହି ସମୟରେ ଜଣେ ବ୍ରାହ୍ମଣ ପଣ୍ଡିତ ଆସି ମନ୍ତ୍ର ପ୍ରୟୋଗ କଲେ ଏବଂ ଶାଦ୍ କ୍ରମେ କ୍ରମେ ଆରୋଗ୍ୟଲାଭ କଲେ । ତତ୍ପରେ ସେ ପୂର୍ବପତ୍ନୀ ହୋ-କଆ-ତୁନ୍‌ଙ୍କ କନିଷ୍ଠା ଭଗିନୀଙ୍କ ପାଣିଗ୍ରହଣ କଲେ । ମୃତ ଜ୍ୟେଷ୍ଠ ଭଗିନୀପୁତ୍ରଙ୍କ ପ୍ରରୋଚନାରେ ଶାଦ୍‌ଙ୍କ ଦ୍ୱିତୀୟ ପତ୍ନୀ ବିଷ ପ୍ରୟୋଗଦ୍ୱାରା ସ୍ୱାମୀଙ୍କୁ ହତ୍ୟା କଲେ । ଦ୍ୱିତୀୟ ପତ୍ନୀଙ୍କର ଗୋଟିଏ ଶିଶୁ ପୁତ୍ର ଥିଲା । ଶାଦ୍‌ଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠା ଭଗିନୀପୁତ୍ର ପିତାଙ୍କ ସିଂହାସନ ବଳପୂର୍ବକ ଅଧିକାର କରି, ବିମାତାଙ୍କୁ ପତ୍ନୀତ୍ୱରେ ଗ୍ରହଣ କଲେ । ତାହାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ସମସ୍ତେ ବ୍ୟାପୃତ ଥିବା ଯୋଗୁଁ ହୁଏନ୍‌ସାଂଙ୍କୁ ଏଠାରେ ଏକ ମାସ କାଳ ଅବସ୍ଥାନ କରିବାକୁ ହେଲା ।

---

## ଶ୍ରମଣ ଧର୍ମସିଂହ

ଏହି ସମୟରେ ସେ ସ୍ଥାନରେ ତ-ମୋ-ସଂ-ଙ୍ଗ ( ଧର୍ମସିଂହ ) ନାମକ ଜଣେ ଶ୍ରମଣ ବାସ କରୁଥିଲେ । ସେ ଧର୍ମୋପଦେଶ ପ୍ରାପ୍ତି ଉଦ୍ଦେଶ୍ୟରେ ଭାରତବର୍ଷରେ ପରିଭ୍ରମଣ କରୁଥିଲେ ଓ ପଶ୍ଚିମ ଦଗନ୍ତ ସୁଂ-ଲିଂ ପର୍ବତର ଅପର ପାର୍ଶ୍ୱରେ ସେ ଫା-ସ୍ୟାଂ (ଧର୍ମସୂତ୍ର ପ୍ରଣେତା) ନାମରେ ପରିଚିତ ହୋଇଥିଲେ । ସୁ-ଲେ (କାଶଗଡ଼) ଓ ୟୁ-ତନ (ଖୋଟାନ୍) ର ଧର୍ମାଶ୍ରୟୀଗଣ ତାଙ୍କ ସହିତ ଶାସ୍ତ୍ରାଲୋଚନା କରିବାକୁ ସାହସ କରୁ ନ ଥିଲେ । ଧର୍ମାଶ୍ରୟୀ ହୁଏନ୍‌ସାଂ ତାଙ୍କ ଶାସ୍ତ୍ରଜ୍ଞାନର ଗଭୀରତା ଜାଣିବାକୁ ଇଚ୍ଛୁକ ହୋଇ , ସେ କେତେ ସୂତ୍ର ଓ ଶାସ୍ତ୍ର ବ୍ୟାଖ୍ୟାନ କରିବାରେ ସମର୍ଥ ହେବେ ତାଙ୍କୁ ଜଣାଇବା ପାଇଁ ଦୂତ ପ୍ରେରଣ କଲେ । ଏହି ସମ୍ବାଦ ଶ୍ରବଣରେ ତାଙ୍କ ଶିଷ୍ୟବୃନ୍ଦ କ୍ରୋଧାନ୍ୱିତ ହେଲେ ଓ ଧର୍ମସିଂହ ସହାସ୍ୟ ଉତ୍ତର କଲେ, "ତୁମ୍ଭେ ଯେତେ ସୂତ୍ର, ମୁଁ ସେ ସବୁର ବ୍ୟାଖ୍ୟାନ କରିପାରେ ।" ଧର୍ମସିଂହ ମହାଯାନ ସମ୍ବନ୍ଧରେ ଆଦୌ ଅଭିଜ୍ଞ ନୁହନ୍ତି, ଏହା ଅବଗତ ହୋଇ ହୁଏନସାଂ ହୀନଯାନ ଅନ୍ତର୍ଗତ ବିଭାଷା ଓ ଅନ୍ୟାନ୍ୟ ସୂତ୍ର ସମ୍ବନ୍ଧରେ ପ୍ରଶ୍ନୋତ୍ଥାପନ କଲେ ଏବଂ ଏହି ପ୍ରଶ୍ନର ସୁନ୍ଦର ଉତ୍ତର ପ୍ରଦାନରେ ଅସମର୍ଥ ହୋଇ ଧର୍ମସିଂହ ନିଜର ହୀନତା ସ୍ୱୀକାର କଲେ । ଶିଷ୍ୟଗଣ ଏହା ଦେଖି ଲଜ୍ଜାଭିଭୂତ ହେଲେ । ସେହି ଦିନଠାରୁ ଯେତେବେଳେ ଉଭୟଙ୍କର ସାକ୍ଷାତ ହେଉଥିଲା, ସେତେବେଳେ ହୁଏନ୍‌ସାଙ୍କୁ ପ୍ରଶଂସା ସହକାରେ କହୁଥିଲେ ଯେ, ସେ କୌଣସି ଗୁଣରେ ତାହାଙ୍କ ସମକକ୍ଷ ନୁହନ୍ତି ।

ନୂତନ ଶାହ ସିଂହାସନରେ ପ୍ରତିଷ୍ଠିତ ହେବାରୁ ହୁଏନ୍‌ସାଂ ବାହନ ଓ ପଥପ୍ରଦର୍ଶକ ସହ ବ୍ରାହ୍ମଣମାନଙ୍କ ଦେଶକୁ ପ୍ରେରଣ କରିବା ସକାଶେ ତାହାଙ୍କୁ ଅନୁରୋଧ କଲେ । ଶାହ ବିବେଚନା କରି

କହିଲେ, "ଆପଣଙ୍କ ଏହି ଶିଷ୍ୟର ଅଧିକୃତ ଦେଶ ମଧ୍ୟରେ ଅକ୍ସସ୍ ନଦୀର ଉତ୍ତର କୂଳବର୍ତ୍ତୀ ବକ୍ତ୍ର (ଫୋ-ହୋ-ଲେ) ରାଜ୍ୟ ଅବସ୍ଥିତ । ବକ୍ତ୍ରର ରାଜଧାନୀ କ୍ଷୁଦ୍ର ରାଜଗୃହ ନାମରେ ଅଭିହିତ । ଏଠାରେ ଅନେକ ପବିତ୍ର ସ୍ଥାନ ଅଛି । ମୋର ଅନୁରୋଧ, ଆପଣ ଏହି ପୁଣ୍ୟ ଭୂମିରେ ଉପାସନା ସମ୍ପାଦନ କରି କେତେକ ଦିନ ଅତିବାହିତ କରିବେ ଏବଂ ତତ୍ପରେ ଦକ୍ଷିଣାଭିମୁଖରେ ପ୍ରସ୍ଥାନ କରିବେ ।

---

## ନବ ସଂଘାରାମ

ଏହି ସମୟରେ ବକ୍ତ୍ରର ବହୁସଂଖ୍ୟକ ଧର୍ମାଚାର୍ଯ୍ୟ ପିତାଙ୍କ ମୃତ୍ୟୁ ଯୋଗୁଁ ସହାନୁଭୂତି ପ୍ରକାଶ କରିବା ସକାଶେ ନୂତନ ଖାନ୍‌ଙ୍କ ନିକଟକୁ ଆସିଥିଲେ । ହୁଏନ୍‌ସାଂ ସେମାନଙ୍କୁ ଦେଖି ସେମାନଙ୍କ ସହିତ ଯିବା ସକାଶେ ଇଚ୍ଛା ପ୍ରକାଶ କଲେ । ଆଚାର୍ଯ୍ୟଗଣ କହିଲେ, "ଆପଣ ଅବିଳମ୍ବରେ ଆମ୍ଭମାନଙ୍କ ସଙ୍ଗେ ଚାଲନ୍ତୁ । ବର୍ତ୍ତମାନ ପଥ ମୁକ୍ତ ଅଛି, ଆଉ ବିଳମ୍ବ କଲେ ପଥ ଦୁର୍ଗମ ହୋଇଯିବ ।" ହୁଏନ୍‌ସାଂ ଖାନ୍‌ଙ୍କ-ଠାରୁ ବିଦାୟ ଗ୍ରହଣ କରି ସେମାନଙ୍କ ସହିତ ପ୍ରସ୍ଥାନ କଲେ । ତତ୍ପରେ ସେ ବଲଖରେ ଉପନୀତ ହେଲେ । ବଲଖ ନଗର ଓ ଉପ-କଣ୍ଠର ଅନୁର୍ବରତା ଦର୍ଶନରେ ସେ ବ୍ୟଥିତ ହେଲେହେଁ ଚତୁର୍ଦ୍ଦିଗସ୍ଥ ରମଣୀୟତାରେ ଅତ୍ୟନ୍ତ ମୁଗ୍ଧ ହେଲେ । ଏଠାରେ ପ୍ରାୟ ଏକ ଶତ ସଂଘାରାମ ଥିଲା ଓ ତହିଁରେ ହୀନ ଯାନାବଲମ୍ବୀ ତିନି ସହସ୍ର ଶ୍ରମଣ ଅବସ୍ଥାନ କରୁଥିଲେ ।

ନଗରୋପକଣ୍ଠସ୍ଥ ଦକ୍ଷିଣ-ପଶ୍ଚିମ ପାର୍ଶ୍ୱରେ ନବ ସଂଘାରାମ ଅବସ୍ଥିତ ଥିଲା । ତହିଁର କାରୁକାର୍ଯ୍ୟବିଶିଷ୍ଟ ଅଟ୍ଟାଳିକାସମୂହ ଅତ୍ୟନ୍ତ ଚିତ୍ତ-

କର୍ଷକ । ସଙ୍ଘାଗ୍ରମର ଅଭ୍ୟନ୍ତରରେ ବୁଦ୍ଧଙ୍କର ଜଳପାତ୍ର ବିଦ୍ୟମାନ ଥିଲା । ଏଠାରେ ବୁଦ୍ଧଙ୍କର ଗୋଟିଏ ଦନ୍ତ ମଧ୍ୟ ରକ୍ଷିତ ହୋଇଥିଲା । ତାହାର ଦୈର୍ଘ୍ୟ ଏକ ଇଞ୍ଚ ଓ ପ୍ରସ୍ଥ ½ ଇଞ୍ଚ । ବର୍ଣ୍ଣ ଈଷତ୍ ପୀତ ଏବଂ ତହିଁରୁ ଏକ ପ୍ରକାର ଆଶ୍ଚର୍ଯ୍ୟଜନକ ଉଜ୍ଜ୍ୱଳ ଆଲୋକ ନିର୍ଗତ ହେଉଥିଲା । ଏଠାରେ ବୁଦ୍ଧଙ୍କ କୁଶସମ୍ମାର୍ଜନୀ ମଧ୍ୟ ରକ୍ଷିତ ହୋଇଥିଲା । ତାହା ତିନି ଫୁଟ ଦୀର୍ଘ ଓ ସାତ ଇଞ୍ଚ ଗୋଲ । ତାହାର ମୁଠାଟି କାରୁ-କାର୍ଯ୍ୟବିଶିଷ୍ଟ ଓ ବହୁମୂଲ୍ୟ ପ୍ରସ୍ତର-ଖଚିତ ଥିଲା । ଏହି ତିନିଗୋଟି ଦ୍ରବ୍ୟ ପର୍ବ ଦିବସମାନଙ୍କରେ ଆନୀତ ହେଉଥିଲା ଓ ଶ୍ରମଣ ପ୍ରଭୃତି ସମସ୍ତେ ତାହା ପୂଜା କରୁଥିଲେ ଓ ଭକ୍ତବୃନ୍ଦ ତହିଁରୁ ନିର୍ଗତ ଆଧ୍ୟାତ୍ମିକ ଆଲୋକ ଦର୍ଶନ କରି କୃତାର୍ଥ ହେଉଥିଲେ ।

---

## ପୋର୍ଲ୍ଷ୍ଟିତ ସ୍ତୂପଦ୍ୱୟ

ଏହି ସଙ୍ଘାଗ୍ରମର ଉତ୍ତରରେ ଦୁଇ ଶହ ଫୁଟ ଉଚ୍ଚ ଗୋଟିଏ ସ୍ତୂପ ଓ ଦକ୍ଷିଣ-ପଶ୍ଚିମ ପାର୍ଶ୍ୱରେ ଗୋଟିଏ ପ୍ରାଚୀନ ବିହାର ବିଦ୍ୟମାନ ଥିଲା । ଯେଉଁ ଆଚାର୍ଯ୍ୟଗଣ ବହୁବର୍ଷ କାଳ ତପସ୍ୟା କରି ପରିଣତାର ଚତୁର୍ଥାବସ୍ଥାରେ ଉପନୀତ ହୋଇ ନିର୍ବାଣ ପ୍ରାପ୍ତି ଉଦ୍ଦେଶ୍ୟରେ ଏଠାରେ ଅବସ୍ଥାନ କରୁଥିଲେ, ସେମାନଙ୍କର ଶତ ଶତ ସ୍ମାରକ-ସ୍ତମ୍ଭ ନଗରର ଚତୁଃପାର୍ଶ୍ୱରେ ନିର୍ମିତ ହୋଇଥିଲା । ରାଜଧାନୀର ପଶ୍ଚିମ ଲ ଉତ୍ତର-ପଶ୍ଚିମକୁ ପୋ-ଲି ସହର ଅବସ୍ଥିତ । ପୋ-ଲିରେ ତିନି ଶ୍ୱଂ ଉଚ୍ଚତା-ବିଶିଷ୍ଟ ଦୁଇଗୋଟି ସ୍ତୂପ ଥିଲା । ପୂର୍ବକାଳରେ ଯେତେବେଳେ ବୁଦ୍ଧ-ଦେବ ପରମାଲୋକ ପ୍ରାପ୍ତ ହେଲେ, ସେ ଏହି ସ୍ଥାନନିବାସୀ ଦୁଇଜଣ ବଣିକଙ୍କ ହସ୍ତରୁ ମଧୁ ଓ ଆହାର ଗ୍ରହଣ କରିଥିଲେ । ଏହି ବଣିଗ୍‌ଦ୍ୱୟ ତାହାଙ୍କଠାରୁ ଧର୍ମୋପଦେଶ ଶ୍ରବଣପୂର୍ବକ ଶିଷ୍ୟତ୍ୱ ଗ୍ରହଣ କଲେ

ଉତ୍ତରରେ ସେମାନଙ୍କଠାରୁ କିଛି ଉପହାର ଗ୍ରହଣ କରିବା ସକାଶେ ବୁଦ୍ଧଙ୍କୁ ଅନୁରୋଧ କରିଥିଲେ; କିନ୍ତୁ କେବଳ ବୁଦ୍ଧଦେବ ତାହାଙ୍କ ନଖ ଓ କେଶରୁ କିୟଦଂଶ ଦାନ କରି ତାହାଙ୍କ ଉଦ୍ଦେଶ୍ୟରେ ଏକ ସ୍ତୂପ ନିର୍ମାଣ କରିବା ପାଇଁ ଅନୁରୋଧ କଲେ ଓ ତହିଁର ଆଦର୍ଶ ସମ୍ବନ୍ଧରେ ତାହାଙ୍କୁ ଉପଦେଶ ପ୍ରଦାନ କରିଥିଲେ । ଉକ୍ତ ବଣିକ୍‌ଦ୍ୱୟ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ଉକ୍ତ ସ୍ତୂପଦ୍ୱୟ ନିର୍ମାଣ କଲେ । ସହରର ସତୁରି ଲି ପଶ୍ଚିମକୁ ଦୁଇ ଫୁ° ଉଚ୍ଚ ଏକ ସ୍ତୂପ ଥିଲା । ତାହା ବହୁକାଳ ପୂର୍ବେ କାଶ୍ୟପ ବୁଦ୍ଧଙ୍କ ସମୟରେ ନିର୍ମିତ ହୋଇଥିଲା । ନବ ସଂଘାରାମରେ ଚେଖ୍ ରାଜ୍ୟନିବାସୀ ଏକ ସନ୍ନ୍ୟାସୀ ବାସ କରୁଥିଲେ । ସେ ହୀନଯାନାନ୍ତର୍ଗତ ତ୍ରିପିଟକ ଅଧ୍ୟୟନ କରିଥିଲେ । ତାହାଙ୍କ ନାମ ପ୍ରଜ୍ଞାକର । ବକ୍ଷୁରେ ଅନେକ ପବିତ୍ର ସ୍ଥାନ ଥିବା ଶ୍ରବଣ କରି ସେ ସେଠାକୁ ଉପାସନା ଓ ଶିକ୍ଷା କରିବା ସକାଶେ ଆସିଥିଲେ । ଏହି ସନ୍ନ୍ୟାସୀ ଅତ୍ୟନ୍ତ ଜ୍ଞାନବାନ୍ । ଯୌବନରେ ବିଚକ୍ଷଣତା ସକାଶେ ସେ ଅଶେଷ ଖ୍ୟାତି ଅର୍ଜ୍ଜନ କରିଥିଲେ । ସେ ବୌଦ୍ଧ ନବାଙ୍ଗ ଓ ଚତୁରାଗମ ସମ୍ପୂର୍ଣ୍ଣରୂପେ ଅଧ୍ୟୟନ କରିଥିଲେ । ତାହାଙ୍କ ଏ ସମସ୍ତ ଶାସ୍ତ୍ରର ବ୍ୟାଖ୍ୟାନକୌଶଳ ଭାରତବର୍ଷରେ ଖ୍ୟାତିଲାଭ କରିଥିଲା । ଅଧିକନ୍ତୁ ସେ ହୀନଯାନାନ୍ତର୍ଗତ ଅଭିଧର୍ମ, କାତ୍ୟାୟନଙ୍କ କୋଷ, ଷଟ୍‌ପଦାଭିଧର୍ମ୍ମ ଓ ଅନ୍ୟାନ୍ୟ ଶାସ୍ତ୍ର ସମ୍ପୂର୍ଣ୍ଣରୂପେ ଆୟତ୍ତ କରିଥିଲେ ।

ବହୁ ଦୂରାଗତ ଏକ ସନ୍ନ୍ୟାସୀ ଧର୍ମ୍ମଶାସ୍ତ୍ରାନ୍ୱେଷଣରେ ଆସିଥିବା ଶୁଣି ସେ ତାହାଙ୍କ ସହିତ ହର୍ଷୋତ୍‌ଫୁଲ୍ଲ ହୃଦୟରେ ସାକ୍ଷାତ୍ କଲେ । ହୁଏନ୍‌ସାଂ କୋଷ, ବିଭାଷା ଓ ଅନ୍ୟାନ୍ୟ ଶାସ୍ତ୍ରରେ ତାହାଙ୍କର ଯେ ସମସ୍ତ ସନ୍ଦେହ ଥିଲା, ସେ ସମ୍ବନ୍ଧରେ ତାହାଙ୍କୁ ଅନେକ ପ୍ରଶ୍ନ ପଚାରିଲେ ଏବଂ ସନ୍ନ୍ୟାସୀ ସମସ୍ତ ବିଷୟର ଯଥାଯଥ ଉତ୍ତର ପ୍ରାଞ୍ଜଳଭାବରେ

ପ୍ରଦାନ କଲେ । ସେ ତାହାଙ୍କ ନିକଟରେ ଏକମାସ କାଳ ଅବସ୍ଥାନ କରି ବିଭିଷା ଶାସ୍ତ୍ର ଅଧ୍ୟୟନ କଲେ । ତାହାଙ୍କ ସଂଘାରାମରେ ଆଉ ଦୁଇଜଣ ସନ୍ନ୍ୟାସୀ ଥିଲେ । ସେମାନେ ସ୍ଥାନଯାନାନ୍ତର୍ଗତ ତ୍ରିପିଟକରେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରିଥିଲେ । ତହିଁରୁ ଜଣକର ନାମ ଧର୍ମ-ପ୍ରିୟ (ତୋ-ମୋ-ପି-ଲି) ଓ ଅପରଙ୍କର ନାମ ଧର୍ମକର (ତୋ-ମୋ-କି-ଲି) ସେମାନେ ସର୍ବତ୍ର ସମ୍ମାନିତ ହେଉଥିଲେ । ହୁଏନ୍‌ସାଂଙ୍କ ଅବାଧ କମନୀୟ ରୂପ ଓ ବିଚକ୍ଷଣତାରେ ଆକୃଷ୍ଟ ହୋଇ ସେମାନେ ତାହାଙ୍କୁ ନାନା ଭାବରେ ସମ୍ମାନିତ କଲେ ।

---

## କୁମଧ ଓ କଙ୍କାନ

ଏହି ସମୟରେ ବକ୍ଷ୍ରର ଦକ୍ଷିଣ-ପଶ୍ଚିମରେ କୁମଧ କୁ-ମୋ-ତୋ ଓ କଙ୍କାନ ହୁ-ଶୀ-ଜାନ ନାମରେ ଦୁଇଗୋଟି ଦେଶ ଥିଲା । ବହୁ ଦୂରବର୍ତ୍ତୀ ଦେଶରୁ ଏକ ସନ୍ନ୍ୟାସୀଙ୍କ ଆଗମନ-ବାର୍ତ୍ତା ଶ୍ରବଣ କରି ଉଭୟ ଦେଶର ନରପତିଦ୍ୱୟ ସେମାନଙ୍କ ଅଭିବାଦନ ଓ ଉପହାର ଗ୍ରହଣ କରିବା ସକାଶେ, ତାହାଙ୍କୁ ଅନୁରୋଧ କରିବା ପାଇଁ ସେମାନଙ୍କ ଅମାତ୍ୟମାନଙ୍କୁ ପ୍ରେରଣ କରିଥିଲେ; କିନ୍ତୁ ହୁଏନ୍‌ସାଂ ସେମାନଙ୍କ ଦେଶ ମଧ୍ୟରୁ ଯିବାକୁ ଅନିଚ୍ଛା ପ୍ରକାଶ କଲେ । କିନ୍ତୁ ରାଜା ମନ୍ତ୍ରୀମାନଙ୍କୁ ବାରମ୍ବାର ପ୍ରେରଣ କଲେ ଓ ପରିଶେଷରେ ଶାହ୍ର ଅଗତ୍ୟା ସମ୍ମତ ହେଲେ । ନୃପତିଦ୍ୱୟ ତାହାଙ୍କୁ ସାଦରେ ଗ୍ରହଣ କରି ସ୍ୱର୍ଣ୍ଣ, ବହୁମୂଲ୍ୟ ରତ୍ନ, ଖାଦ୍ୟ ଓ ପେୟ ପ୍ରଦାନ କଲେ; କିନ୍ତୁ ହୁଏନ୍‌ସାଂ ତହିଁରୁ କିଛି ମାତ୍ର ସ୍ପର୍ଶ ନ କରି ଚାଲିଗଲେ ।

---

## ତୁଷାରଗିରି ଲଙ୍ଘନ ଓ ବାମିୟାନରେ ପ୍ରବେଶ

ତତ୍ପରେ ପ୍ରଜ୍ଞାକରଙ୍କ ସମଭିବ୍ୟାହାରରେ ବଲଖର ଦକ୍ଷିଣକୁ ଯାଇ ହୁଏନ୍‌ସାଂ କି-ଚି (ଗଜ) ରାଜ୍ୟରେ ପ୍ରବିଷ୍ଟ ହେଲେ । ଏହି ରାଜ୍ୟର ଦକ୍ଷିଣ-ପୂର୍ବରେ ଅବସ୍ଥିତ ତୁଷାରାବୃତ ପର୍ବତଶ୍ରେଣୀଠାରୁ ଛଅ ଶତ ଲି ପଥ ଅତିକ୍ରମ କରି ତୁଖାର (ତୁ-ହୋ-ଲୋ) ଦେଶର ସୀମାନ୍ତ ଦେଇ ବାମିୟାନ (ଫାନ୍-ୟେନ୍-ନା) ରାଜ୍ୟରେ ପ୍ରବିଷ୍ଟ ହେଲେ । ଏହି ରାଜ୍ୟର ବିସ୍ତୃତି ପୂର୍ବ-ପଶ୍ଚିମରେ ପ୍ରାୟ ଦୁଇ ହଜାର ଲି । ଏହା ଘନ ତୁଷାରାଚ୍ଛନ୍ନ ପର୍ବତଶ୍ରେଣୀ ମଧ୍ୟରେ ଅବସ୍ଥିତ ଓ ଏହାର ଚିର କର୍ଦ୍ଦମମୟ ପଥସମୂହ ତୁଷାରାବୃତ ଏବଂ ମରୁଭୂମି ଅପେକ୍ଷା ଅଧିକ ବିପଦ୍-ସଙ୍କୁଳ । ଏହା ଝଞ୍ଜିକା ଓ କରକାପାତର ଆବାସଭୂମି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଗିରିବର୍ତ୍ମସମୂହ ବକ୍ର ଓ କୁଟିଳ, ସମତଳ ଭୂମି ଅତ୍ୟନ୍ତ କର୍ଦ୍ଦମମୟ; ଶୁଂ-ୟୁ ପଶ୍ଚିମଭୂଖଣ୍ଡର ଯେଉଁ ସ୍ଥାନକୁ ବିପଦ୍-ସଙ୍କୁଳ ବୋଲି କହିଥିଲେ ତାହା ଏହି ।

ବାମିୟାନର ରାଜଧାନୀରେ ଦଶଗୋଟି ମଠ ଥିଲା ଏବଂ ତହିଁରେ ସହସ୍ର ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏମାନେ ସମସ୍ତେ ଲୋକୋତ୍ତରବାଦୀଙ୍କ ମତରେ ହୀନଯାନ ସମ୍ପ୍ରଦାୟଭୁକ୍ତ ଥିଲେ । ବାମିୟାନ ନରପତି ହୁଏନ୍‌ସାଂଙ୍କ ସହିତ ସାକ୍ଷାତ୍ କରି ରାଜପ୍ରାସାଦରେ ପଦାର୍ପଣପୂର୍ବକ ଉପହାର ଗ୍ରହଣ କରିବା ସକାଶେ ସମ୍ମାନପୁରଃସର ତାହାଙ୍କୁ ଅନୁରୋଧ କଲେ । ହୁଏନ୍‌ସାଂ ତାହାଙ୍କ ଅନୁରୋଧ ରକ୍ଷା କରି ଦୁଇ ତିନି ଦିନ ପରେ ସେଠାକୁ ଯାଇ ସମସ୍ତ ଦର୍ଶନ କଲେ । ସେଠାରେ ଆର୍ଯ୍ୟଦାସ ଓ ଆର୍ଯ୍ୟସେନ ନାମକ ଦୁଇଜଣ ସର୍ବଶାସ୍ତ୍ରଜ୍ଞ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ହୁଏନ୍‌ସାଂଙ୍କ ଦର୍ଶନରେ ସେମାନେ ଆନନ୍ଦରେ ଅଭିଭୂତ ହୋଇ ତାହାଙ୍କ ପାଣ୍ଡିତ୍ୟର ଭୂୟସୀ ପ୍ରଶଂସା

କଲେ ଓ ତାହାଙ୍କ ସେବାରେ ନିଯୁକ୍ତ ରହି ତାହାଙ୍କୁ ପ୍ରସିଦ୍ଧ ତଥା ପବିତ୍ର ସ୍ଥାନମାନ ପରିଦର୍ଶନ କରାଇଲେ ।

ରାଜଧାନୀର ଉତ୍ତର-ପୂର୍ବ ପାର୍ଶ୍ୱସ୍ଥ ଏକ ପର୍ବତର ନିମ୍ନଦେଶରେ ଏକ ଶହ ପଚାଶ ଫୁଟ ଉଚ୍ଚ ଏକ ପ୍ରସ୍ତର-ମୂର୍ତ୍ତି ଥିଲା । ଏହି ମୂର୍ତ୍ତିର ପୂର୍ବକୁ ଏକ ସଙ୍ଘାରାମ ଓ ଏହି ସଙ୍ଘାରାମର ପୂର୍ବରେ ଏକ ଶତ ଫୁଟ ଉଚ୍ଚ ଶାକ୍ୟମୁନିଙ୍କ ଏକ ଦଣ୍ଡାୟମାନ ପ୍ରସ୍ତର-ମୂର୍ତ୍ତି ବିଦ୍ୟମାନ ରହିଥିଲା । ସଙ୍ଘାରାମ ମଧ୍ୟରେ ଏକ ହଜାର ଫୁଟ ଦୀର୍ଘ ବୁଦ୍ଧଙ୍କ ମୂର୍ତ୍ତି ଦେଖି ବୋଧହେଉଥିଲା, ସତେ ଯେପରି ନିର୍ବାଣ ପ୍ରାପ୍ତି ଉତ୍ତାରେ ସେ ନିଦ୍ରାରେ ଅଭିଭୂତ ହୋଇ ରହିଥିଲେ । ମୂର୍ତ୍ତିଗୁଡିକ ଅତ୍ୟନ୍ତ ରମଣୀୟ ।

---

## ଶନକବାସଙ୍କ ସ୍ତୂପ-ଚକ୍ର

ଏହି ସ୍ଥାନରୁ ଦୁଇ ଶତ ଲି ଦକ୍ଷିଣ-ପୂର୍ବକୁ ତୁଷାର ପର୍ବତ-ଶ୍ରେଣୀର ଅପର ପାର୍ଶ୍ୱରେ ଏକ କ୍ଷୁଦ୍ର ଉପତ୍ୟକା । ସେଠାରେ ଏକ ସଙ୍ଘାରାମ ଓ ତନ୍ମଧ୍ୟରେ ବୁଦ୍ଧଙ୍କର ଗୋଟିଏ ଦନ୍ତ ରକ୍ଷିତ ହୋଇଥିଲା । ଚଳିତ କଳ୍ପାରମ୍ଭରେ ପ୍ରତ୍ୟେକ ବୁଦ୍ଧଙ୍କର ଗୋଟିଏ ଗୋଟିଏ ଦନ୍ତ ମଧ୍ୟ ଏଠାରେ ରକ୍ଷିତ ହୋଇଥିଲା । ଏହି ଦନ୍ତଗୁଡିକ ପାଞ୍ଚ ଇଞ୍ଚ ଦୀର୍ଘ ଓ ଚାରି ଇଞ୍ଚ ପ୍ରସ୍ଥ, ପୁଣି ତିନି ଇଞ୍ଚ ଦୀର୍ଘ ଓ ଦୁଇ ଇଞ୍ଚ ପ୍ରସ୍ଥ; କୌଣସି ରାଜ-ଚକ୍ରବର୍ତ୍ତୀଙ୍କର (ସ୍ୱସ୍ତିଚକ୍ର ନରପତି) ମଧ୍ୟ ଗୋଟିଏ ଦନ୍ତ ସେଠାରେ ରକ୍ଷିତ ହୋଇଥିଲା । ତହିଁରେ ଏକ ଲୌହ ପାତ୍ର ମଧ୍ୟ ଥିଲା । ଉକ୍ତ ପାତ୍ର ଚାରି ପାଞ୍ଚ ସେର ଜଳ ଧାରଣ କରିପାରୁଥିଲା । ଶାଣକବାସ (ଶାଂ-ନୋ-କ୍ୟା-ଫୋ-ଶା) ଏହି ପାତ୍ର ଓ ତାହାଙ୍କ

ଉଜ୍ଜ୍ୱଳ ରକ୍ତବର୍ଣ୍ଣ ସଂହିତ ପରିଚ୍ଛଦ ଘେନି ଭ୍ରମଣ କରୁଥିଲେ । ଏହି ବ୍ୟକ୍ତି ଏହି ସଂସାରରେ ପଞ୍ଚ ଶତବାର ଏହି ପରିଚ୍ଛଦ ଧାରଣ କରି ଜନ୍ମଗ୍ରହଣ କରିଥିଲେ । ପରେ ଏହି ପରିଚ୍ଛଦର ରକ୍ତବର୍ଣ୍ଣ କଷାୟ ରଙ୍ଗରେ ପରିଣତ ହୋଇଥିଲା । ଏହାଙ୍କ ବିଷୟରେ ଏକ ଦୀର୍ଘ ଗଳ୍ପ ପ୍ରଚଳିତ ଅଛି । ତାହା ପରେ ବର୍ଣ୍ଣିତ ହେବ ।

ବାମିୟାନରେ ପଞ୍ଚଦଶ ଦିବସ ଅବସ୍ଥାନ କରି ହୁଏନ୍‌ସାଂ ଏହି ସ୍ଥାନ ପରିତ୍ୟାଗ କଲେ । ଯାତ୍ରାର ଦ୍ୱିତୀୟ ଦିବସରେ ପଥରେ ଉଭୟ ବହୁ ଝଞ୍ଜିକାକ୍ରାନ୍ତ ହୋଇ ସେ ବିପଥରେ ଗମନ କରିବାକୁ ଲାଗିଲେ । ପଥରେ ଏକ ବାଲୁକା ସ୍ତୂପ ଉପରେ କେତେକ ଜଣ ବ୍ୟାଧ ତାହାଙ୍କୁ ପଥ ଦେଖାଇଦେଲେ । ତତ୍ପରେ ସେ କୋ-ବା-ବା ପର୍ବତ ଅତିକ୍ରମ କରି କପିଶାର ସୀମାନ୍ତରେ ଉପନୀତ ହେଲେ ।

କପିଶାର ବିସ୍ତୃତ ପ୍ରାୟ ଚାରି ସହସ୍ର ଲି । ଏହାର ଉତ୍ତରରେ ତୁଷାରବୃତ ପର୍ବତଶ୍ରେଣୀ ବିସ୍ତୃତ । କପିଶା ନରପତି କ୍ଷତ୍ରିୟ । ସେ ବିଚକ୍ଷଣ ଓ ନୀତିନିପୁଣ । ସେ ଦଶଗୋଟି ରାଜ୍ୟ ତାହାଙ୍କ ଅଧିକାରଭୁକ୍ତ କରିଥିଲେ । ଯେତେବେଳେ ହୁଏନ୍‌ସାଂ କପିଶାର ରାଜଧାନୀରେ ଉପନୀତ ହେଲେ ସ୍ୱୟଂ ନୃପତି ଓ ସନ୍ନ୍ୟାସିଗଣ ଯାଇ ତାହାଙ୍କୁ ଅଭିବାଦନ କଲେ । ଏଠାରେ ପ୍ରାୟ ଏକ ଶତ ମଠ ଥିଲା । ପ୍ରତ୍ୟେକ ମଠାଧ୍ୟକ୍ଷ ହୁଏନ୍‌ସାଂଙ୍କୁ ତାହାଙ୍କ ମଠରେ ରଖିବା ସକାଶେ ପରସ୍ପର ମଧ୍ୟରେ କଳହ ଆରମ୍ଭ କଲେ ।

---

## ଶା-ଲୋ-କ୍ୟା ମନ୍ଦିର

ଏଠାରେ ହୀନଯାନାନ୍ତର୍ଗତ ଶା-ଲୋ-କ୍ୟା ନାମକ ଏକ ମନ୍ଦିର ଥିଲା । କଥିତ ଅଛି ଯେ, ଯେଉଁ ସମୟରେ ଏହି ମନ୍ଦିର ନିର୍ମିତ ହେଉ-

ଥିଲା, ହ୍ୱାନ୍ ସମ୍ରାଟଙ୍କ ପୁତ୍ର ସେଠାରେ ପ୍ରତିଭୂସ୍ୱରୂପ ଅବରୁଦ୍ଧ ହୋଇଥିଲେ । ଉକ୍ତ ମନ୍ଦରର ସନ୍ନ୍ୟାସିଗଣ ହୁଏନ୍‌ସାଂଙ୍କୁ କହିଲେ,ଏହି ମନ୍ଦର ହ୍ୱାନ୍ ରାଜପୁତ୍ରଙ୍କଦ୍ୱାରା ପ୍ରତିଷ୍ଠିତ । ଆପଣ ତାହାଙ୍କ ଦେଶରୁ ଆସିଅଛନ୍ତି; ସୁତରାଂ ଏଠାରେ ଆପଣଙ୍କ ଅବସ୍ଥାନ ସର୍ବଥା ସମୀଚୀନ । ଏଥିରେ ହୁଏନ୍‌ସାଂଙ୍କ ହୃଦୟ ବିଗଳିତ ହେଲା । ତାହାଙ୍କ ସହଚର ପ୍ରଜ୍ଞାକର ହୀନଯାନ ସମ୍ପ୍ରଦାୟଭୁକ୍ତ ଥିଲେ; ସୁତରାଂ ସେ ମହାଯାନ ସମ୍ପ୍ରଦାୟ ଅଧିକୃତ ମନ୍ଦରରେ ରହିବାକୁ ଅନଚ୍ଛୁକ ହେବାରୁ ଉଭୟେ ଯାଇ ଉପର୍ଯ୍ୟୁକ୍ତ ମନ୍ଦରରେ ଅବସ୍ଥାନ କଲେ । ଏହି ମନ୍ଦରର ପୂର୍ବଦ୍ୱାର ସନ୍ନିକଟବର୍ତ୍ତୀ ଏକ ପ୍ରକୋଷ୍ଠରେ ବୁଦ୍ଧଦେବଙ୍କ ଓ ତତ୍ସମୀ-ପରେ ବୈଶ୍ରବଣ ନରପତିଙ୍କ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲା । ବୈଶ୍ରବଣ ମୂର୍ତ୍ତିର ପାଦଦେଶରେ ବହୁ ପରିମିତ ମଣିମାଣିକ୍ୟ ମନ୍ଦରର ଜୀର୍ଣ୍ଣ ସଂସ୍କାର ନିମିତ୍ତ ହ୍ୱାନ୍ ରାଜପୁତ୍ର ପ୍ରୋଥିତ କରି ରଖିଯାଇଥିଲେ । ଏହି ସତ୍କାର୍ଯ୍ୟ ଯୋଗୁଁ ସନ୍ନ୍ୟାସିଗଣ ମନ୍ଦର ପ୍ରାଚୀରର ଭିନ୍ନ ଭିନ୍ନ ସ୍ଥାନରେ ରାଜପୁତ୍ରଙ୍କ ପ୍ରତିକୃତି ଅଙ୍କନ କରିଥିଲେ । ବର୍ଷାଋତୁରେ ରାଜପୁତ୍ରଙ୍କ ଉପଲକ୍ଷରେ ସନ୍ନ୍ୟାସିମଣ୍ଡଳୀ ଏକ ବିରାଟ ଉତ୍ସବ ଅନୁଷ୍ଠାନ କରୁଥିଲେ ଏବଂ ଉକ୍ତ ଉତ୍ସବରେ ନାନା ଧର୍ମଶାସ୍ତ୍ର ଆଲୋଚିତ ହେଉଥିଲା । ପୁରୁଷାନୁକ୍ରମେ ଏହି ଉତ୍ସବ ଅଦ୍ୟାପି ପ୍ରତିପାଳିତ ହୋଇ ଆସୁଅଛି । ଅଳ୍ପ ଦିବସ ପୂର୍ବେ ଏକ ଦୁରାତ୍ମା ଲୋଭାସକ୍ତ ନରପତି ଉଲ୍ଲିଖିତ ଧନରତ୍ନ ଅପହରଣ କରିବା ଉଦ୍ଦେଶ୍ୟରେ ସେଗୁଡିକ ଉପର୍ଯ୍ୟୁକ୍ତ ମୂର୍ତ୍ତିର ପାଦଦେଶରୁ ଖନନ କରିବା ପାଇଁ ବହୁସଂଖ୍ୟକ ଲୋକ ପ୍ରେରଣ କଲେ । ତତ୍ପରେ ତତ୍ସଂଲଗ୍ନ ଭୂମି ଭୀଷଣଭାବରେ କମ୍ପିତ ହେବାକୁ ଲାଗିଲା । ମୂର୍ତ୍ତିର ଶିରୋପରି ଏକ ଶୁକପକ୍ଷୀର ମୂର୍ତ୍ତି ଚିତ୍ରିତ ହୋଇଥିଲା । ଉକ୍ତ ବ୍ୟକ୍ତିଗଣ ଭୂମି ଖନନ କରିବା ମାତ୍ରକେ ପକ୍ଷୀ ପକ୍ଷତାଡ଼ନପୂର୍ବକ ଭୀଷଣ ଭାବରେ ଚିତ୍କାର କରିବାକୁ ଲାଗିଲା ।

ତଦ୍ଦର୍ଶନରେ ରାଜା ଓ ତାଙ୍କ ସୈନ୍ୟବର୍ଗ ଭୀତ ହୋଇ ସେଠାରୁ ପଳାୟନ କଲେ ।

---

## ଜା-ଲେ-ଡ୍ୟା ମନ୍ଦିରରେ ଗୁପ୍ତଧନ

ଏହି ମନ୍ଦିରରେ ଏକ ସ୍ତୂପ ଥିଲା । ସ୍ତୂପର ବେଷ୍ଟନୀଚକ୍ରସମୂହ ଭୂପତିତ ହେଲାରୁ ସେଗୁଡ଼ିକର ଜୀର୍ଣ୍ଣସଂସ୍କାର ସକାଶେ ସନ୍ନ୍ୟାସିଗଣ ଯେତେବେଳେ ଉକ୍ତ ମଣିମାଣିକ୍ୟ ଖନନ କରିବାକୁ ଆରମ୍ଭ କଲେ, ସେତେବେଳେ ଉକ୍ତ ସ୍ଥାନ ମଧ୍ୟ ଭୟଙ୍କର ଭାବରେ କମ୍ପିତ ହେବାକୁ ଲାଗିଲା ଓ ତନ୍ମଧ୍ୟରୁ ଭୀଷଣ ଗର୍ଜନ ଉତ୍ଥିତ ହେଲା; ସୁତରାଂ ତତ୍‌ସମୀପକୁ ଯିବାକୁ ବୃଥା କେହି ସାହସୀ ହେଲେ ନାହିଁ ।

ହୁଏନ୍‌ସାଂ ସେଠାରେ ଉପନୀତ ହେଲାରୁ ମଠାଧିକାରୀ ଓ ଅନ୍ୟାନ୍ୟ ସନ୍ନ୍ୟାସିଗଣ ଉକ୍ତ ସମସ୍ତ ବିଷୟ ତାହାଙ୍କୁ ଜ୍ଞାପନ କଲେ । ହୁଏନ୍‌ସାଂ ସେମାନଙ୍କ ସହିତ ମୂର୍ତ୍ତି ସନ୍ନିକଟକୁ ଯାଇ ତତ୍‌ସମ୍ମୁଖରେ ଧୂପ ଦାନପୂର୍ବକ କହିଲେ, "ପ୍ରଭୁ ରାଜପୁତ୍ର ପୂର୍ବେ ଏହି ମନ୍ଦିରର ଜୀର୍ଣ୍ଣ ସଂସ୍କାରରୂପ ସତ୍କାର୍ଯ୍ୟ ସାଧନ ସକାଶେ ଏଠାରେ ଏତେଗୁଡ଼ିଏ ମଣି ମାଣିକ୍ୟ ପ୍ରୋଥିତ କରିଗଲେ । ଉକ୍ତ କାର୍ଯ୍ୟ ସମ୍ପାଦନ ନିମିତ୍ତ ସେ ସମସ୍ତ ବ୍ୟବହାର କରିବା ସକାଶେ ଖନନ କରିବା ସମୟ ଉପସ୍ଥିତ ହୋଇଅଛି । ଆମ୍ଭମାନଙ୍କର ଇଚ୍ଛା ଯେ, ଆପଣ ଆମ୍ଭମାନଙ୍କର ଉଦ୍ଦେଶ୍ୟର ସତ୍ୟାସତ୍ୟ ପରୀକ୍ଷା କରନ୍ତୁ । ଆଉ ଆପଣଙ୍କ ଏହି ଅସାଧାରଣ କ୍ଷମତାର ବ୍ୟବହାର ସ୍ଥଗିତ ରଖି, ଆମ୍ଭମାନଙ୍କୁ କାର୍ଯ୍ୟାରମ୍ଭ କରିବା ସକାଶେ ସୁଯୋଗ ପ୍ରଦାନ କରନ୍ତୁ । ମୁଁ ହୁଏନ୍‌ସାଂ ନିଜେ ଏହି ଖନନ କାର୍ଯ୍ୟର ତତ୍ତ୍ୱାବଧାନ କରିବି ଓ ଯଥାଯଥଭାବରେ ମଣି ମାଣିକ୍ୟର ଓଜନ ପରିମାଣାଦି ସ୍ଥିର କରି ପ୍ରୟୋଜନାନୁଯାୟୀ

ପ୍ରଧାନ ଶିଳ୍ପୀ ହସ୍ତରେ ବ୍ୟୟସ୍ୱରୂପ ନ୍ୟସ୍ତ କରିବ ଏବଂ ତହିଁର ଅପବ୍ୟୟ କୌଣସିମତେ କରାଇଦେବ ନାହିଁ । ଆମ୍ଭମାନଙ୍କର ଏତିକି ପ୍ରାର୍ଥନା ଯେ, ପ୍ରଭୁଙ୍କ ଏହି ଶକ୍ତି ଏଥିର ସତ୍ୟାସତ୍ୟ ନିରୂପଣପୂର୍ବକ ଏହି ସତ୍କାର୍ଯ୍ୟ ସାଧନରେ ଆମ୍ଭମାନଙ୍କୁ ପ୍ରବୃତ୍ତ କରୁ ।"

ଏହା କହି ସେ ଉପସ୍ଥିତ ଲୋକଙ୍କୁ ଉକ୍ତ ସ୍ଥାନ ଖନନ କରିବା ସକାଶେ ଆଦେଶ କଲେ । କାର୍ଯ୍ୟ ଧୀରଭାବରେ ଓ ନିର୍ବିଘ୍ନରେ ଅଗ୍ରସର ହେଲା । ସେମାନେ ସାତ ଆଠ ଫୁଟ ଗଭୀରରେ ରକ୍ଷିତ ସ୍ୱର୍ଣ୍ଣ ଓ ମୁକ୍ତାପୂର୍ଣ୍ଣ ଏକ ତାମ୍ରପାତ୍ର ଖନନ କରି ଆଣିଲେ । ଏହା ଦେଖି ଉପସ୍ଥିତ ସମସ୍ତେ ଆନନ୍ଦରେ ଅଭିଭୂତ ହୋଇ ହୁଏନ୍‌ସାଂଙ୍କ ସେବାରେ ନିଯୁକ୍ତ ହେଲେ । ହୁଏନ୍‌ସାଂ ସେଠାରେ ଉଲ୍ଲିଖିତ ଉତ୍ସବରେ ବର୍ଷାଋତୁ ଅତିବାହିତ କଲେ ।

ଏହି ଦେଶର ରାଜା ଶିଷ୍ଟବିଦ୍ୟାରେ ଏକାନ୍ତ ଅନଭିଜ୍ଞ ଥିଲେ । ସେ ମହାଯାନାନ୍ତର୍ଗତ ନୀତିସମୂହ ପାଳନ କରୁଥିଲେ । ସେ ସନ୍ନ୍ୟାସୀମାନଙ୍କ ସମ୍ମିଳନୀ ଓ ଧର୍ମଶାସ୍ତ୍ରାଲୋଚନା ସନ୍ଦର୍ଶନରେ ପ୍ରୀତିଲାଭ କରୁଥିଲେ । ତେଣୁ ସେ ହୁଏନସାଂ ଓ ପ୍ରଜ୍ଞାକରଙ୍କୁ ମହାଯାନ ମନ୍ଦିରରେ ବସୁଥିବା ଧର୍ମସମ୍ମିଳନୀକୁ ଆହ୍ୱାନ କଲେ । ଉକ୍ତ ମନ୍ଦିରରେ ତ୍ରିପିଟକ ନିପୁଣ ମନୋଜ୍ଞ ଘୋଷ, ସର୍ବାସ୍ତିବାଦ ମତାବଲମ୍ବୀ ଆର୍ଯ୍ୟବର୍ମ ଓ ମହୀଶାସକ ସମ୍ପ୍ରଦାୟସ୍ଥ ଗୁଣଭଦ୍ର ନାମକ ସନ୍ନ୍ୟାସିଗଣ ଅବସ୍ଥାନ କରୁଥିଲେ ଓ ଉକ୍ତ ମନ୍ଦିରସ୍ଥ ସମସ୍ତ ସନ୍ନ୍ୟାସୀଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଖ୍ୟାତି ଅର୍ଜନ କରିଥିଲେ; କିନ୍ତୁ ସେମାନଙ୍କ ଉପାର୍ଜିତ ଜ୍ଞାନ ସର୍ବଶାସ୍ତ୍ରବ୍ୟାପକ ନ ଥିଲା । କେହି ମହାଯାନ, କେହି ବା ହୀନଯାନର କିୟଦଂଶ ଅଧ୍ୟୟନ କରିଥିଲେ । ତହିଁରେ ମଧ୍ୟ କାହାରି କାହାରି ଜ୍ଞାନ ପ୍ରଶସ୍ତ, କାହାରି ବା ସୀମାବଦ୍ଧ ଥିଲା; କିନ୍ତୁ ହୁଏନ୍‌ସାଂ

ସମସ୍ତ ଶାସ୍ତ୍ର ପୁଙ୍ଖାନୁପୁଙ୍ଖଭାବରେ ଅଧ୍ୟୟନ କରି ଆୟତ୍ତ କରିଥିଲେ ଏବଂ ଯେ ଯେଉଁ ପ୍ରଶ୍ନ ତାହାଙ୍କୁ ପଚାରୁଥିଲା, ତାହାକୁ ତହିଁର ଉପଯୁକ୍ତ ଉତ୍ତର ପ୍ରଦାନ କରୁଥିଲେ । ସମସ୍ତେ ମୁକ୍ତକଣ୍ଠରେ ତାହାଙ୍କ ଶ୍ରେଷ୍ଠତା ସ୍ୱୀକାର କଲେ ।

ପାଞ୍ଚ ଦିନକାଳ ଶାସ୍ତ୍ରାଲୋଚନା ଉତ୍ତାରେ ସଭା ଭଙ୍ଗ ହେଲା । ରାଜା ଅତ୍ୟନ୍ତ ପ୍ରୀତ ହୋଇ ହୁଏନ୍‌ସାଂଙ୍କୁ ପାଞ୍ଚଖଣ୍ଡ କାରୁକାର୍ଯ୍ୟବିଶିଷ୍ଟ ରେଶମ ବସ୍ତ୍ର ଓ ଅନ୍ୟାନ୍ୟ ସନ୍ନ୍ୟାସୀମାନଙ୍କୁ ଯଥୋଚିତ ଉପହାର ପ୍ରଦାନ କଲେ ।

---

## ଲଘାନରେ ଉପନୀତ

ବର୍ଷାଋତୁର ଉତ୍ତରକାଳେ ପ୍ରଜ୍ଞାକର ତୁଖାର ନରପତିଙ୍କ ଅନୁରୋଧା-ନୁସାରେ ବଲ୍‌ଖକୁ ପ୍ରତ୍ୟାବୃତ୍ତ ହେଲେ । ହୁଏନ୍‌ସାଂ ତାହାଙ୍କଠାରୁ ବିଦାୟ ଗ୍ରହଣ କରି ପୂର୍ବାଭିମୁଖରେ ଯାତ୍ରା କଲେ ଏବଂ ଛଅ ଶତ ଲି ପଥ ଅତିକ୍ରମ କରି ଭାରତବର୍ଷର ସୀମାନ୍ତରେ ପ୍ରବିଷ୍ଟ ହେଲେ ଓ ତତ୍ପରେ ଲନ୍-ପୋ (ଲଘାନ) ରାଜ୍ୟରେ ଉପନୀତ ହେଲେ ।

ଲଘାନ ରାଜ୍ୟର ବିସ୍ତୃତି ଏକ ସହସ୍ର ଲି । ଏଠାରେ ଦଶଗୋଟି ସଙ୍ଘାରାମ ଥିଲା । ଏହି ସ୍ଥାନର ସନ୍ନ୍ୟାସିଗଣ ସମସ୍ତେ ମହାଯାନ-ଭୁକ୍ତ । ଏହି ସ୍ଥାନରେ ତିନି ଦିନ ଅବସ୍ଥାନ କରି ହୁଏନ୍‌ସାଂ ଦକ୍ଷିଣା-ଭିମୁଖରେ ଯାତ୍ରା କଲେ ଓ ତତ୍ପରେ ଏକ ପର୍ବତରେ ଆସି ଉପନୀତ ହେଲେ । ଉକ୍ତ ପର୍ବତଶିଖରରେ ଏକ ସ୍ତୂପ ଦଣ୍ଡାୟମାନ ଥିଲା । ବୁଦ୍ଧ ଦକ୍ଷିଣରୁ ଆସି ଏହି ପର୍ବତରେ କେତେକ ଦିବସ ଅବସ୍ଥାନ କରିଥିଲେ । ତେଣୁ ତାଙ୍କ ପଦ ଚିହ୍ନ ପ୍ରଦର୍ଶନ ନିମିତ୍ତ ଏହି ସ୍ତୂପ

ତନ୍ନତ୍ୟ ଅଧିବାସୀମାନେ ନିର୍ମାଣ କରିଥିଲେ । ଏହି ସ୍ଥାନରୁ ଉତ୍ତରସ୍ଥ ସମସ୍ତ ଭୂଖଣ୍ଡ ମ୍ଲେଚ୍ଛଦେଶ ନାମରେ ଅଭିହିତ । ତଥାଗତ ଏହି ଦେଶବାସୀଙ୍କୁ ଉପଦେଶ ପ୍ରଦାନ ଓ ସ୍ୱମତରେ ଦୀକ୍ଷିତ କରିବା ସକାଶେ ଏହି ଦେଶ ମଧ୍ୟରେ ଯାତାୟାତ କରୁଥିବା ସମୟରେ ଭୂମି ଉପରେ ପଦ ନିକ୍ଷେପ ନ କରି ଶୂନ୍ୟରେ ବିଚରଣ କରୁଥିଲେ । ଯେହେତୁ ତାହାଙ୍କ ପଦଭରରେ ଭୂମି କମ୍ପିତ ହେଉଥିଲା ।

---

## ଦୀପାଙ୍କର ବୁଦ୍ଧ

ଏହିଠାରୁ କୋଡ଼ିଏ ଲି ଦକ୍ଷିଣକୁ ଯାଇ ପର୍ବତ ଆରୋହଣ ଓ ନଦୀ ଲଙ୍ଘନପୂର୍ବକ ସେ ନ-କୀ-ଲେ-ହୋ (ନଗରହାର) * ଦେଶରେ ଉପନୀତ ହେଲେ । ରାଜଧାନୀର ଦୁଇ ଲି ଦକ୍ଷିଣ-ପୂର୍ବକୁ ତିନି ଶତ ଫୁଟ ଉଚ୍ଚ ଏକ ସ୍ତୂପ ଥିଲା । ତାହା ରାଜା ଅଶୋକ ନିର୍ମାଣ କରାଇଥିଲେ । ଏହି ସ୍ଥାନରେ ଶାକ୍ୟ ବୋଧିସତ୍ତ୍ୱ ଦୀପାଙ୍କର ବୁଦ୍ଧଙ୍କ ସହିତ ଦ୍ୱିତୀୟ ଅସଂଖ୍ୟ ବର୍ଷରେ ସାକ୍ଷାତ୍ କରିଥିଲେ ଏବଂ ଅଜିନ ପରିଧାନ ଓ ଜଟା ବନ୍ଧନ କରି ବୁଦ୍ଧତ୍ୱ ପ୍ରାପ୍ତି ବିଷୟରେ ନିଶ୍ଚିତ ଦୈବବାଣୀ ପ୍ରାପ୍ତ ହୋଇଥିଲେ । ସେହିଦିନଠାରୁ ବହୁ କଳ୍ପ ଅତୀତ ହୋଇଅଛି; ତଥାପି ଏହି ଘଟଣାର ସଙ୍କେତ ଅଦ୍ୟାପି ବିଦ୍ୟମାନ ରହିଅଛି । ଦେବତାମାନେ ଏଠାରେ ପୁଷ୍ପବୃଷ୍ଟି କରି ସେମାନଙ୍କ କାର୍ଯ୍ୟ ସାଧନ କରନ୍ତି । ହୁଏନ୍‌ସାଂ ଏହି ସ୍ଥାନରେ ଉପନୀତ ହୋଇ ଭକ୍ତିସହକାରେ ଏହି ସ୍ତୂପ ପ୍ରଦକ୍ଷିଣ କରିଥିଲେ ।

ଏହି ସ୍ତୂପ ନିକଟରେ ଏକ ବୃଦ୍ଧ ସନ୍ନ୍ୟାସୀ ବାସ କରୁଥିଲେ । ସେ ହୁଏନ୍‌ସାଂଙ୍କ ସମ୍ମୁଖରେ ଉକ୍ତ ସ୍ତୂପ ନିର୍ମାଣ ବିଷୟ ବର୍ଣ୍ଣନା କଲେ ।

* ନଗରହାର—ଜଲାଲବାଦ

ହୁଏନ୍‌ସାଂଙ୍କ ମନରେ ଏହି ପ୍ରଶ୍ନ ଉଦିତ ହେଲା, "ବୋଧିସତ୍ତ୍ୱଙ୍କ ଜୀବନ କାର୍ଯ୍ୟ ଦ୍ୱିତୀୟ ଅସଂଖ୍ୟ ବର୍ଷ ମଧ୍ୟରେ ସମ୍ପାଦିତ ହୋଇଅଛି ଓ ତତ୍ପରେ ବହୁ କଳ୍ପ ଅତୀତ ହୋଇ ଯାଇଅଛି । ଏହି କଳ୍ପସମୂହ ମଧ୍ୟରେ ବିଶ୍ୱବ୍ରହ୍ମାଣ୍ଡ ବାରମ୍ବାର ପୂର୍ଣ୍ଣତା ପ୍ରାପ୍ତ ହୋଇ ଧ୍ୱଂସ ହୋଇ-ଅଛି । ଅଗ୍ନ୍ୟୁତ୍ପାତ ହେଲେ ସୁମେରୁ ପର୍ବତ ସୁଦ୍ଧା ଭସ୍ମୀଭୂତ ହୁଏ । ତାହା ହେଲେ ଏହି ସ୍ତୂପ କିପରି ଅକ୍ଷୁଣ୍ଣ ରହିଅଛି ?"

ସନ୍ନ୍ୟାସୀ ଉତ୍ତର କଲେ, "ବିଶ୍ୱ ବ୍ରହ୍ମାଣ୍ଡର ବିଲୟ କାଳରେ ଏହି ସ୍ତୂପ ମଧ୍ୟ ବିନାଶ ପ୍ରାପ୍ତ ହୋଇଥିଲା; କିନ୍ତୁ ତାହାର ପୁନରୁତ୍ଥାନ ସମୟରେ ସ୍ତୂପ ତାହାର ପୂର୍ବାବସ୍ଥା ପ୍ରାପ୍ତ ହେଲା । ସୁମେରୁ ପର୍ବତର ବିଲୟ ପ୍ରାପ୍ତି ଉତ୍ତାରେ ତାହା ପୁନରୁଦ୍ଭୂତ ହୁଏ । ଏହି ପବିତ୍ର ସ୍ତୂପର ଚିର ବିଲୟ ସାଧିତ ହୋଇ ନ ପାରେ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।"

ଏହାର ଦଶ ଲି ଦକ୍ଷିଣ-ପଶ୍ଚିମକୁ ଆଉ ଏକ ସ୍ତୂପ ଥିଲା । ଦୀପାଙ୍କର ଜୀବିତ ଥିବା ସମୟରେ ବୁଦ୍ଧ ଏହି ସ୍ଥାନରେ ପୁଷ୍ପ କ୍ରୟ କରିଥିଲେ ।

ପୁଣି ଦକ୍ଷିଣ-ପୂର୍ବରେ ଏକ ବାଲୁକାସ୍ତୂପ ଅତିକ୍ରମ କରି ସେ ବୁଦ୍ଧଙ୍କ ମସ୍ତକ-କଙ୍କାଳ ନଗରରେ ପ୍ରବିଷ୍ଟ ହେଲେ । ଏହି ନଗରରେ ଏକ ଦ୍ୱିତଳ ପ୍ରାସାଦ ଥିଲା ଏବଂ ଊର୍ଦ୍ଧ୍ୱତଳରେ ସପ୍ତବିଧ ବହୁମୂଲ୍ୟ ପଦାର୍ଥରେ ଏକ ସ୍ତୂପ ନିର୍ମିତ ହୋଇଥିଲା ଓ ତନ୍ମଧ୍ୟରେ ତଥାଗତଙ୍କ ମସ୍ତକାଗ୍ରସ୍ଥର ଅସ୍ଥି ରକ୍ଷିତ ହୋଇଥିଲା । ଏହି ଅସ୍ଥିର ପରିଧିର ପରିମାଣ ଚଉଦ ଇଞ୍ଚ । ତଦୁପରି ଲୋମକୂପସମୂହ ସୁସ୍ପଷ୍ଟ ଭାବରେ ପରିସ୍ଫୁଟ ହେଉଥିଲା । ଅସ୍ଥି ଈଷତ୍ ପୀତବର୍ଣ୍ଣ ଓ ତାହା ଏକ ମଣିମୟ ଆଧାର ମଧ୍ୟରେ ରକ୍ଷିତ ହୋଇଥିଲା । ଯଦି କେହି ନିଜର ଗୁଣ ବା ଦୋଷ ଜାଣିବାକୁ ଇଚ୍ଛା କରୁଥିଲା, ତାହା ହେଲେ ସେ ଖଣ୍ଡିଏ ପଟ୍ଟ-

ବସ୍ତ୍ରରେ ଧୂପଚୂର୍ଣ୍ଣ ଲେପନ କରି ଉକ୍ତ ଅସ୍ଥି ସହିତ ବାନ୍ଧିନ କଲେ ତାହାର ସୌଭାଗ୍ୟ ଅଥବା ଦୁର୍ଭାଗ୍ୟ ସ୍ପଷ୍ଟରୂପେ ସୂଚିତ ହେଉଥିଲା ।

ହୁଏନ୍‌ସାଂ ବୋଧିଦ୍ରୁମର ଏକ ପ୍ରତିକୃତି ଗ୍ରହଣ କଲେ । ତାହାଙ୍କ ସହଚର ଶ୍ରମଣକଦ୍ୱୟଙ୍କ ମଧ୍ୟରୁ ଜଣେ ବୁଦ୍ଧଙ୍କର ଓ ଅନ୍ୟ ଜଣକ ଗୋଟିଏ ପଦ୍ମର ପ୍ରତିକୃତି ଗ୍ରହଣ କଲେ । ଅସ୍ଥିରକ୍ଷୀ ବ୍ରାହ୍ମଣ ହୁଏନ୍‌ସାଂ ମୁଦ୍ରାବଦ୍ଧ ଅଙ୍ଗୁଳିହସ୍ତରେ କୁସୁମ ବର୍ଷଣ କରୁଥିବା ଦେଖି ହର୍ଷୋତ୍ଫୁଲ୍ଲ-ହୃଦୟରେ ତାହାଙ୍କୁ କହିଲେ, "ଆପଣଙ୍କ ଶର୍ଷୀସ୍ଥିତ ସୂଚନାସମୂହ କ୍ୱଚିତ୍ ଅନ୍ୟଠାରେ ଦୃଷ୍ଟିଗୋଚର ହୁଏ । ଆପଣ ଯେ ପ୍ରକୃତ ବୋଧି-ପ୍ରାପ୍ତ ହୋଇଅଛନ୍ତି, ଏହା ତହିଁର ନିଦର୍ଶନ ।"

ଏହିଠାରେ ପଦ୍ମପଦାକୃତି ଏକ ସ୍ତୂପ ନିର୍ମିତ ହୋଇଥିଲା ଏବଂ ତନ୍ମଧ୍ୟରେ ବୁଦ୍ଧଙ୍କ ମସ୍ତକାସ୍ଥିର ଅପର ଅସ୍ଥିଖଣ୍ଡ ଓ ଚକ୍ଷୁଗୋଲକଦ୍ୱୟ ମଧ୍ୟ ରକ୍ଷିତ ହୋଇଥିଲା ଓ ତନ୍ମଧ୍ୟରୁ ଅତ୍ୟୁଜ୍ଜ୍ୱଳ କିରଣ ବହୁ ଦୂର ପର୍ଯ୍ୟନ୍ତ ବିକୀର୍ଣ୍ଣ ହେଉଥିଲା । ତହିଁ ସମୀପରେ ବୁଦ୍ଧଙ୍କ ସୂକ୍ଷ୍ମ ପଟ୍ଟବସ୍ତ୍ର-ନିର୍ମିତ ସଙ୍ଘାଟି ପରିଚ୍ଛଦ ମଧ୍ୟ ରକ୍ଷିତ ହୋଇଥିଲା । ପୁଣି ବୁଦ୍ଧଙ୍କ ଦଣ୍ଡ ମଧ୍ୟ ସେହିଠାରେ ବିଦ୍ୟମାନ ଥିଲା । ତାହା ଟିଣମୁଦ୍ରାବଦ୍ଧ ଓ ତାହାର ଊର୍ଦ୍ଧ୍ୱାଂଶ ଚନ୍ଦନକାଷ୍ଠନିର୍ମିତ । ହୁଏନ୍‌ସାଂ ଏ ସମସ୍ତ ଭକ୍ତିସହକାରେ ପୂଜା କଲେ । ତତ୍ପରେ ଏହି ପ୍ରକାର ଭକ୍ତିପୂର୍ଣ୍ଣ ଉପାସନାର ସୁଯୋଗ ପ୍ରାପ୍ତ ହୋଇଥିବା ଯୋଗୁଁ ସେ ବିଭିନ୍ନ ମଠରେ ପଚାଶଖଣ୍ଡ ସ୍ୱର୍ଣ୍ଣ, ଏକ ସହସ୍ରଖଣ୍ଡ ରୌପ୍ୟ,ଚାରିଖଣ୍ଡ ରେଶମ ଧ୍ୱଜା, ଦୁଇଖଣ୍ଡ କାରୁକାର୍ଯ୍ୟ-ବିଶିଷ୍ଟ ରେଶମବସ୍ତ୍ର ଓ ଦୁଇଖଣ୍ଡ ସନ୍ନ୍ୟାସି-ପରିଚ୍ଛଦ ପ୍ରଦାନ କଲେ ଏବଂ ପୁନର୍ବାର ସାଷ୍ଟାଙ୍ଗ ପ୍ରଣିପାତପୁରଃସର କୁସୁମ ବର୍ଷଣ କରି ସେହି ସ୍ଥାନରୁ ପ୍ରସ୍ଥାନ କଲେ ।

---

## ନାଗରାଜ ଗୋପାଳଙ୍କ ଗୁମ୍ଫା

ସେ ଶୁଣିଲେ ଯେ, ଧୀପାଙ୍କର ନଗରର କୋଡ଼ିଏ ଲି ଦକ୍ଷିଣ-ପଶ୍ଚିମକୁ ଏକ ଗୁମ୍ଫା ଅଛି ଓ ତନ୍ମଧ୍ୟରେ ନାଗରାଜ ଗୋପାଳ ଅବସ୍ଥାନ କରୁଅଛନ୍ତି । ପୂର୍ବକାଳରେ ବୁଦ୍ଧ ଏହି ନାଗରାଜଙ୍କୁ ପାଳନ କରୁଥିଲେ ଏବଂ ଉକ୍ତ ଗୁମ୍ଫାଭ୍ୟନ୍ତରରେ ରହିବା ସକାଶେ ତାହାଙ୍କୁ ଛାୟାଦାନ କରିଯାଇଥିଲେ । ହୁଏନ୍‌ସାଂ ପୂଜା କରିବା ସକାଶେ ସେହି ସ୍ଥାନକୁ ଯିବାକୁ ଇଚ୍ଛା କଲେ ; କିନ୍ତୁ ଶୁଣିଲେ ଯେ, ପଥସମୂହ ଜନଶୂନ୍ୟ, ଶ୍ୱାପଦସଙ୍କୁଳ ଓ ଦସ୍ୟୁମାନଙ୍କଦ୍ୱାରା ଅଧିକୃତ । ବିଗତ ଦୁଇ ତିନି ବର୍ଷ ମଧ୍ୟରେ ଉପର୍ଯ୍ୟୁକ୍ତ ଛାୟା ଦର୍ଶନ କରିବା ଉଦ୍ଦେଶ୍ୟରେ ଯାଇ କେହି ସଫଳ-ମନୋରଥ ହୋଇ ନାହାନ୍ତି ଓ ସେହିଦିନଠାରୁ କେହି ସେଠାକୁ ଯାଇ ନାହାନ୍ତି । ହୁଏନ୍‌ସାଂ ସେଠାକୁ ପୂଜା କରିବା ସକାଶେ ଯିବାକୁ ଦୃଢ଼ସଙ୍କଳ୍ପ ହେଲେ । ସେତେବେଳେ ତାହାଙ୍କ ସହ କପିଶା ନରପତି ପ୍ରେରିତ ଭୃତ୍ୟଗଣ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବାକୁ ଇଚ୍ଛୁକ ହୋଇ ଆଉ କାଳ ବିଳମ୍ବ ନ କରିବାକୁ ଓ ଉକ୍ତ ଗୁମ୍ଫାକୁ ନ ଯିବା ସକାଶେ ବାରମ୍ବାର ଅନୁରୋଧ କଲେ । ଏହା ଶୁଣି ହୁଏନ୍‌ସାଂ କହିଲେ, "ତଥାଗତଙ୍କ ଶରୀରର ପ୍ରକୃତ ପ୍ରତିବିମ୍ବ ଶତସହସ୍ର କଳ୍ପ ପର୍ଯ୍ୟନ୍ତ ଦୃଷ୍ଟିଗୋଚର ହେବା କଷ୍ଟସାଧ୍ୟ । ଏତେ ଦୂରକୁ ଆସି ତାହାଙ୍କ ଉପାସନା ନ କରିବା ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ହେବ ନାହିଁ କି ? ତୁମ୍ଭେମାନେ ତୁମ୍ଭର ଯାତ୍ରାରେ ଅଗ୍ରସର ହୁଅ, ଅଳ୍ପ ସମୟ ପରେ ମୁଁ ଯାଇ ତୁମ୍ଭମାନଙ୍କ ସହିତ ମିଳିତ ହେବ ।"

---

## ଛାୟା ଗୁମ୍ଫା

ତତ୍ପରେ ସେ ଏକାକୀ ଦୀପାଙ୍କର ନଗରକୁ ଗମନ କରି ଏକ ମଠରେ ପ୍ରବିଷ୍ଟ ହେଲେ ଏବଂ ମଠାଧିବାସୀମାନଙ୍କୁ ସେହି ଗୁମ୍ଫାକୁ ଯାଇଥିବା ପଥ ସମ୍ବନ୍ଧରେ ପ୍ରଶ୍ନ କଲେ । କିନ୍ତୁ ତାହାଙ୍କୁ ପଥ ଦେଖାଇ-ଦେବା ସକାଶେ କେହି ଇଚ୍ଛୁକ ହେଲେ ନାହିଁ । ଅଳ୍ପ ସମୟ ପରେ ସେ ଏକ କ୍ଷୁଦ୍ର ବାଳକକୁ ଦେଖିଲେ । ବାଳକ କହିଲା, "ଅନତି-ଦୂରରେ ମଠର ଖମାର ଗୃହ ଅଛି । ମୁଁ ଆପଣଙ୍କୁ ସେଠାକୁ ଘେନିଯିବି ।" ସେହି ବାଳକ ସଙ୍ଗରେ ଯାଇ ସେ ସେଠାରେ ରାତ୍ରି ଯାପନ କଲେ । ସେ ସ୍ଥାନରେ ଏକ ବୃଦ୍ଧ ସହିତ ତାହାଙ୍କର ସାକ୍ଷାତ ହେଲା । ସେ ତାହାଙ୍କୁ ସେଠାକୁ ଘେନିଯିବାକୁ ଇଚ୍ଛା ପ୍ରକାଶ କଲେ । ସେମାନେ ଅଳ୍ପ ଦୂର ଅଗ୍ରସର ହୋଇଅଛନ୍ତି, ଏହି ସମୟରେ ପାଞ୍ଚ ଜଣ ଦସ୍ୟୁ ଉନ୍ମୁକ୍ତ ତରବାରିହସ୍ତରେ ସେମାନଙ୍କୁ ଆକ୍ରମଣ କଲେ । ହୁଏନ୍‌ସାଂ ତତ୍କ୍ଷଣାତ୍ ତାହାଙ୍କ ବହିଃପରିଚ୍ଛଦ ଉନ୍ମୋଚନ କଲେ । ତାହାଙ୍କ ସନ୍ନ୍ୟାସୀ ପରିଚ୍ଛଦ ଦର୍ଶନ କରି ଦସ୍ୟୁମାନେ ତାହାଙ୍କୁ ପ୍ରଶ୍ନ କଲେ, "ଆପଣ କେଉଁଠାକୁ ଯାଉ-ଅଛନ୍ତି ?" ହୁଏନ୍‌ସାଂ ଉତ୍ତର କଲେ, "ମୁଁ ବୁଦ୍ଧଙ୍କ ଛାୟାମୂର୍ତ୍ତି ପୂଜା କରିବା ଅଭିପ୍ରାୟରେ ଯାଉଅଛି ।" ଦସ୍ୟୁମାନେ କହିଲେ, "ଆପଣ କଅଣ ଜାଣନ୍ତି ନାହିଁ ଯେ, ଏହି ପଥ ଦସ୍ୟୁସଙ୍କୁଳ ?" ହୁଏନ୍‌ସାଂ ଉତ୍ତର କଲେ, "ଦସ୍ୟୁମାନେ ମଧ୍ୟ ମନୁଷ୍ୟ । ମୁଁ ବୁଦ୍ଧଙ୍କୁ ପୂଜା କରିବା ସକାଶେ ଯାଉଅଛି । ପଥ ଶ୍ୱାପଦସଙ୍କୁଳ ହେଉ ପଛକେ ମୋର ଭୟ ନାହିଁ । ଆପଣମାନେ ତ ମୋର ରକ୍ଷକ । ଆପଣମାନଙ୍କୁ ମୁଁ ଭୟ କରିବି କାହିଁକି ?" ଏହି ଉକ୍ତିରେ ଦସ୍ୟୁମାନଙ୍କ ପାଷାଣ-ହୃଦୟ ଶ୍ରଦ୍ଧା ବିଗଳିତ ହେଲା । ସେମାନେ ତାହାଙ୍କୁ ଛାଡିଦେଲେ ଓ ହୁଏନ୍‌ସାଂ ନିର୍ବିଘ୍ନରେ ଗୁମ୍ଫାଦ୍ୱାରରେ ଆସି ଉପସ୍ଥିତ ହେଲେ ।

## ଜ୍ୟୋତି ଦର୍ଶନ

ଗୁମ୍ଫାଟି ଗୋଟିଏ କ୍ଷୁଦ୍ର ପ୍ରସ୍ତରମୟ ଜଳଧାରର ପୂର୍ବ ପାର୍ଶ୍ୱରେ ଅବସ୍ଥିତ ଏବଂ ତାହାର ଦ୍ୱାର ପଶ୍ଚିମ ପାର୍ଶ୍ୱସ୍ଥ ପ୍ରାଚୀରରେ ସନ୍ନିବିଷ୍ଟ । ଗୁମ୍ଫାଭ୍ୟନ୍ତର ଗାଢ ଅନ୍ଧକାରାଚ୍ଛନ୍ନ, ତନ୍ମଧ୍ୟସ୍ଥ କୌଣସି ବସ୍ତୁ ଦୃଷ୍ଟିଗୋଚର ହେଉ ନାହିଁ । ବୃଦ୍ଧ ହୁଏନ୍‌ସାଂଙ୍କୁ କହିଲେ, "ଆପଣ ଏହା ମଧ୍ୟକୁ ଯାଇ ଏକାବେଳକେ ପୂର୍ବ ପାର୍ଶ୍ୱସ୍ଥ ପ୍ରାଚୀର ନିକଟକୁ ଚାଲିଯାଆନ୍ତୁ । ଯେତେବେଳେ ହସ୍ତରେ ଏହି ପ୍ରାଚୀର ସ୍ପର୍ଶ କରିବେ, ସେହିଠାରୁ ପଚାଶ ପାଦ ପଶ୍ଚାଦ୍‌ଭାଗକୁ ପ୍ରତ୍ୟାବର୍ତ୍ତନ କରିବେ । ତତ୍ପରେ ପୂର୍ବ ପ୍ରାଚୀର ପ୍ରତି ମୁଖ କରି ନିରୀକ୍ଷଣ କରିବେ । ସେହି ସ୍ଥାନରେ ପ୍ରତିବିମ୍ବ ଦୃଷ୍ଟିଗୋଚର ହେବ ।" ହୁଏନ୍‌ସାଂ ଗୁମ୍ଫା ଭିତରକୁ ପ୍ରବେଶ କଲେ ଏବଂ ପ୍ରାୟ ପଚାଶ ପାଦ ଅଗ୍ରସର ହୋଇ ପୂର୍ବପାର୍ଶ୍ୱସ୍ଥ ପ୍ରାଚୀର ସ୍ପର୍ଶ କଲେ । ତତ୍ପରେ ବୃଦ୍ଧଙ୍କ ଉପଦେଶାନୁଯାୟୀ ପଶ୍ଚାଦ୍‌ଗମନପୂର୍ବକ ସେହିଠାରେ ସ୍ଥିର ଭାବରେ ଦଣ୍ଡାୟମାନ ହୋଇ ରହିଲେ । ତତ୍ପରେ ଗଭୀର ଭକ୍ତିରେ ଅନୁପ୍ରାଣିତ ହୋଇ ଶତାଧିକ ବାର ସାଷ୍ଟାଙ୍ଗ ପ୍ରଣିପାତପୁରଃସର ଧ୍ୟାନ କରିବାକୁ ଲାଗିଲେ । ନିଜର ଅପରାଧ ସକାଶେ ନିଜକୁ ଶତ ଧିକ୍କାର କଲେ ଓ କରୁଣସ୍ୱରରେ ବିଳାପ କରି ନିଜର ଦୁଃଖ ପ୍ରକାଶ କରିବାକୁ ଲାଗିଲେ । ତତ୍ପରେ ପୁନର୍ବାର ସର୍ବାନ୍ତଃକରଣରେ ଧ୍ୟାନ କରି ସିଂ-କ୍ୱାଂ ଓ ଅନ୍ୟାନ୍ୟ ସୂତ୍ର ଏବଂ ବୁଦ୍ଧଙ୍କ ଗାଥାସମୂହ ଆବୃତ୍ତି କରିବାକୁ ଲାଗିଲେ । ପ୍ରତି ସୂତ୍ର ଆବୃତ୍ତି କଲା ଉତ୍ତାରେ ସେ ଭୂମିରେ ନିପତିତ ହୋଇ ସାଷ୍ଟାଙ୍ଗ ପ୍ରଣାମ କଲେ । ଏହି ପ୍ରକାରରେ ଶତବାର ପ୍ରଣାମ ଉତ୍ତାରେ ସେ ପୂର୍ବପାର୍ଶ୍ୱସ୍ଥ ପ୍ରାଚୀର ଗାତ୍ରରେ ଏକ ବୃହତ୍ ମଣ୍ଡଳାକାର ଜ୍ୟୋତି ଦର୍ଶନ କଲେ; କିନ୍ତୁ ମୁହୂର୍ତ୍ତିକ ପରେ ତାହା ଅଦୃଶ୍ୟ ହୋଇଗଲା । ଦୁଃଖ ଓ ଆନନ୍ଦରେ

ଅଭିଭୂତ ହୋଇ ପୁନର୍ବାର ସେ ଉକ୍ତ ଜ୍ୟୋତି ଧ୍ୟାନ କରିବାକୁ ଲଗିଲେ ଏବଂ ପୁନର୍ବାର ଉକ୍ତ ମଣ୍ଡଳାକାର ଜ୍ୟୋତି ତାହାଙ୍କ ଚକ୍ଷୁ ସମ୍ମୁଖରେ ଆବିର୍ଭୂତ ହୋଇ ପୂର୍ବ ପରି ମୁହୂର୍ତ୍ତି ମଧ୍ୟରେ ଅଦୃଶ୍ୟ ହେଲା । ତତ୍ପରେ ପୁନରୁତ୍ସାହିତ ଓ ଦର୍ଶନାକାଙ୍କ୍ଷୀ ହୋଇ ସେ ମନେ ମନେ ପ୍ରତିଜ୍ଞା କଲେ ଯେ, ବିଶ୍ୱକର୍ତ୍ତା ପରମେଶ୍ୱରଙ୍କୁ ପୁନର୍ବାର ଦର୍ଶନ ନ କଲେ ସେ ଉକ୍ତ ସ୍ଥାନ କଦାପି ପରିତ୍ୟାଗ କରିବେ ନାହିଁ । ସେ ପୁନର୍ବାର ଦୁଇ ଶତ ବାର ତାହାଙ୍କ ଉପାସନା କଲେ । ତତ୍କ୍ଷଣାତ୍ ଗୁମ୍ଫାଭ୍ୟନ୍ତର ଆଲୋକିତ ହୋଇଉଠିଲା ଏବଂ ବାଦଲ ପଟଳାଭ୍ୟନ୍ତରରୁ ସମୁଜ୍ଜ୍ୱଳ ବର୍ଣ୍ଣସମନ୍ୱିତ ହେମ ପର୍ବତ ଆବିର୍ଭୂତ ହେଲା ପରି ତଥାଗତଙ୍କ ଶୁଭ୍ରୋଜ୍ଜ୍ୱଳ ପ୍ରତିବିମ୍ବ ପ୍ରାଚୀରଗାତ୍ରରେ ଉଦ୍ଭୂତ ହେଲା । ତାହାଙ୍କ ମୁଖମଣ୍ଡଳ ସ୍ୱର୍ଗୀୟ ଜ୍ୟୋତିରେ ଉଦ୍ଭାସିତ ହେଉଥିଲା ଏବଂ ସେହି ଅତୁଳନୀୟ ମୂର୍ତ୍ତି ଦର୍ଶନରେ ହୁଏନ୍‌ସାଂଙ୍କ ହୃଦୟ ପବିତ୍ର ଭକ୍ତି ଓ ସ୍ୱର୍ଗୀୟ ଭବରେ ପରିପୂର୍ଣ୍ଣ ହୋଇଉଠିଲା । ବୁଦ୍ଧଙ୍କ ଶରୀର ପୀତ ଓ ଓ ରକ୍ତବର୍ଣ୍ଣ କଷାୟ ବସ୍ତ୍ରରେ ଶୋଭିତ ହୋଇଥିଲା ଓ ଆପାଦମସ୍ତକ ଶରୀରର ଚିହ୍ନସମୂହ ଉଜ୍ଜ୍ୱଳ ଭବରେ ପ୍ରତିଭତ ହେଉଥିଲା । କିନ୍ତୁ ତାହାଙ୍କ ପଦ୍ମାସନ ଈଷତ୍ ଅନ୍ଧକାରାବୃତ ହୋଇ ରହିଥିଲା । ପ୍ରତିବିମ୍ବର ଦକ୍ଷିଣ, ବାମ ଏବଂ ପଶ୍ଚାଦ୍‌ଭଗରେ ବୋଧିସତ୍ତ୍ୱ ଓ ପବିତ୍ର ସନ୍ନ୍ୟାସିଗଣଙ୍କ ପ୍ରତିବିମ୍ବ ବେଷ୍ଟନ କରି ରହିଥିଲା । ଏହି ମୂର୍ତ୍ତି ଦର୍ଶନ କରି ସେ ବହିର୍ଦ୍ୱାରରେ ଥିବା ଛଅ ଜଣ ଲୋକଙ୍କୁ ଧୂପ ସକାଶେ ଅଗ୍ନି ଆନୟନ କରିବାକୁ ଆଦେଶ ଦେଲେ । ଅଗ୍ନି ତନ୍ମଧ୍ୟକୁ ଆସିବା ମାତ୍ରକେ ବୁଦ୍ଧଙ୍କ ପ୍ରତିବିମ୍ବ ଅଦୃଶ୍ୟ ହୋଇଗଲା । ତାହାଙ୍କ ଆଦେଶରେ ଅଗ୍ନି ତତ୍କ୍ଷଣାତ୍ ନିର୍ବାପିତ ହେଲା ଓ ଉକ୍ତ ପ୍ରତିବିମ୍ବ ପୁନର୍ବାର ଆବିର୍ଭୂତ ହେଲା । ଉପର୍ଯ୍ୟୁକ୍ତ ଛଅ ଜଣଙ୍କ ମଧ୍ୟରୁ ପାଞ୍ଚ ଜଣ ବୁଦ୍ଧଙ୍କ ପ୍ରତିବିମ୍ବ ସ୍ପଷ୍ଟ ଭବରେ ଦେଖି ପାରିଲେ । ଅନ୍ୟ ଜଣକ କିଛି ଦେଖି ପାରିଲା

ନାହିଁ । ତାହା ଅତ୍ୟଳ୍ପ ସମୟ ମାତ୍ର ଅବସ୍ଥାନ କରି ପରମୁହୂର୍ତ୍ତରେ ଅଦୃଶ୍ୟ ହୋଇଗଲା । ଇତିମଧ୍ୟରେ ସେମାନେ ତନ୍ମଧ୍ୟରେ କୁସୁମ ବିକିରଣ, ଧୂପ ପ୍ରଦାନ ଓ ଉପାସନା କରୁଥିଲେ ।

ସେମାନଙ୍କ ଗୁମ୍ଫା ପରିତ୍ୟାଗ କରିଆସିଲା ଉତ୍ତାରେ ବୃଦ୍ଧ ବ୍ରାହ୍ମଣ ଆନନ୍ଦରେ ଅଭିଭୂତ ହୋଇ ଉକ୍ତ ଅଲୌକିକ ବ୍ୟାପାରର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ପୁଣି ସେ କହିଲେ, "ହୁଏନ୍‌ସାଂଙ୍କ ସରଳ ବିଶ୍ୱାସ," ଅଚଳା ଭକ୍ତି ଓ ପ୍ରାର୍ଥନା ବ୍ୟତୀତ କଦାପି ଏହା ସମ୍ଭବପର ନ ଥିଲା । ଏହି ଗୁମ୍ଫାର ବହିର୍ଭାଗରେ ବହୁସଂଖ୍ୟକ ପବିତ୍ର ସଙ୍କେତମାନ ବିଦ୍ୟମାନ ଅଛି ।

ସେମାନେ ସେ ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ଉପର୍ଯ୍ୟୁକ୍ତ ପାଞ୍ଚ ଜଣ ଦସ୍ୟୁ ସେମାନଙ୍କ ହସ୍ତସ୍ଥିତ ଅସ୍ତ୍ରସମୂହ ପରିହାର-ପୂର୍ବକ ହୁଏନ୍‌ସାଂଙ୍କଠାରୁ ଧର୍ମୋପଦେଶ ଗ୍ରହଣ କରି ପ୍ରସ୍ଥାନ କଲେ ।

ଏହି ସ୍ଥାନରୁ ପାଞ୍ଚଶତ ଲି ଦୂରବର୍ତ୍ତୀ ଦକ୍ଷିଣ-ପୂର୍ବ ପାର୍ଶ୍ୱସ୍ଥ ପର୍ବତମାଳା ଅତିକ୍ରମ କରି ହୁଏନ୍‌ସାଂ ତାହାଙ୍କ ସହଯାତ୍ରୀମାନଙ୍କ ସହିତ ମିଳିତ ହେଲେ ଏବଂ ତତ୍ପରେ ଗାନ୍ଧାର ଦେଶରେ ଉପସ୍ଥିତ ହେଲେ । ଏହି ଦେଶ ସିଂ-ତୁ (ସିନ୍ଧୁ) ନଦୀର ପଶ୍ଚିମ କୂଳରେ ଅବସ୍ଥିତ ପୋ-ଲୁ-ଷ-ପୋ-ଲୋ ( ପୁରୁଷପୁର ବା ପେଶାବାର ) ଏହାର ରାଜଧାନୀ । ଏହି ରାଜ୍ୟରେ ପୁରାକାଳରୁ ଋଷିମାନେ ଶାସ୍ତ୍ର ପ୍ରଣୟନ କରୁଥିଲେ । ଏହା ନାରାୟଣ ଦେବ, ଅସଙ୍ଗ ବୋଧିସତ୍ତ୍ୱ, ବସୁବନ୍ଧୁ ବୋଧିସତ୍ତ୍ୱ, ଧର୍ମତ୍ରାତା, ମନୋହିତ ଓ ପାର୍ଶ୍ୱିକ ପ୍ରଭୃତି ଋଷିମାନଙ୍କର ଜନ୍ମସ୍ଥାନ ।

ରାଜଧାନୀର ଉତ୍ତର-ପୂର୍ବ ପାର୍ଶ୍ୱରେ ବୁଦ୍ଧଙ୍କ ଭିକ୍ଷାପାତ୍ର ପ୍ରୋଥିତ ହୋଇଥିଲା ଏବଂ ତଦୁପରି ଗୋଟିଏ ବହୁମୂଲ୍ୟ ସ୍ତୂପ ନିର୍ମିତ ହୋଇ-

ଥିଲା । ପରବର୍ତ୍ତୀ କାଳରେ ଏହି ପାତ୍ର ଭିନ୍ନ ଭିନ୍ନ ଦେଶକୁ ସ୍ଥାନାନ୍ତରିତ ହୋଇଥିଲା । ବର୍ତ୍ତମାନ ଏହା ବାରାଣସୀରେ ରକ୍ଷିତ ହେଉଅଛି ।

---

## କନିଷ୍କଙ୍କ ଦ୍ୱାରା ନିର୍ମିତ ସ୍ତୂପ—ଶ୍ୱେତପ୍ରସ୍ତର ବୁଦ୍ଧମୂର୍ତ୍ତି

ରାଜଧାନୀରୁ ଆଠ ନଅ ଲି ଦକ୍ଷିଣ-ପୂର୍ବରେ ଏକଶତ ଫୁଟ ଉଚ୍ଚ ଏକ ଅଶ୍ୱତ୍ଥ ବୃକ୍ଷ ଥିଲା । ଅତୀତ ବୁଦ୍ଧଚତୁଷ୍ଟୟ ଏହି ବୃକ୍ଷ ତଳରେ ଉପବେଶନ କରିଥିଲେ । ସେମାନଙ୍କ ପ୍ରତିମୂର୍ତ୍ତି ଏହି ସ୍ଥାନରେ ରକ୍ଷିତ ହୋଇଥିଲା । ଆଗାମୀ ନଅ ଶହ ଛୟାନବେ ଜଣ ବୁଦ୍ଧ ମଧ୍ୟ ଏହି-ଠାରେ ଉପବେଶନ କରିବେ ବୋଲି ବିଶ୍ୱାସ । ଏହି ବୃକ୍ଷ ସମୀପରେ ଏକ ସ୍ତୂପ ଥିଲା । ତାହା ରାଜା କନିଷ୍କ ନିର୍ମାଣ କରିଥିଲେ । ଏହା ଚାରି ଶତ ଫୁଟ ଉଚ୍ଚ । ଏହାର ପତ୍ତନ ମଣ୍ଡଳ ଦେଢ ଲି ଓ ତାହାର ଉଚ୍ଚତା ଦେଢଶତ ଫୁଟ । ସ୍ତୂପଶିଖରରେ ପଚିଶଟି ଅକ୍ଷୟ ସ୍ମାରକ-ଚକ୍ର ସନ୍ନିବିଷ୍ଟ ହୋଇଥିଲା । ସ୍ତୂପ ମଧ୍ୟରେ ଦଶ ପେକ୍ ପରିମିତ ବୁଦ୍ଧଙ୍କର ଦେହାବଶେଷ ରକ୍ଷିତ ହୋଇଥିଲା । ଏହି ବୃହତ୍ ସ୍ତୂପର ଏକଶତ ପଦ ଦକ୍ଷିଣ-ପଶ୍ଚିମରେ ଶ୍ୱେତ ପ୍ରସ୍ତର ଦେହରେ ଖୋଦିତ ଏକ ମୂର୍ତ୍ତି ଥିଲା । ତାହା ଅଠର ଫୁଟ ଉଚ୍ଚ ଓ ଉତ୍ତରାଭିମୁଖ ହୋଇ ଦଣ୍ଡାୟମାନ ଥିଲା । ଏଠାରେ ଅନେକ ଅଦ୍ଭୁତ ଲକ୍ଷଣ ଦେଖାଯାଏ । ଉକ୍ତ ମୂର୍ତ୍ତିକୁ ସ୍ତୂପର ଚତୁର୍ଦ୍ଦିଗରେ ବିଚରଣ କରୁଥିବାର ଅନେକେ ଦେଖୁଥିଲେ ।

କନିଷ୍କ ସଂଘାରାମର ଏକଶତ ଲି ଦକ୍ଷିଣ-ପୂର୍ବକୁ ଏକ ବୃହତ୍ ନଦୀର ଅପର ପାର୍ଶ୍ୱରେ ପୁଷ୍କଲାବତୀ ( ପୋ-ଷି-କ-ଲୋ-ଫା-ତୀ ) ନଗରୀ ଅବସ୍ଥିତ । ନଗରୀର ପୂର୍ବ ପାର୍ଶ୍ୱରେ ରାଜା ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଏଠାରେ ଅତୀତ ଚାରି ବୁଦ୍ଧ ତତ୍ତ୍ୱ ପ୍ରଚାର କରି-ଥିଲେ ।

ନଗରୀର ବୃଦ୍ଧ ପାଞ୍ଚ ଲି ଉତ୍ତରରେ ଆଉ ଏକ ସଂଘାରାମ ଥିଲା । ତନ୍ମଧ୍ୟରେ ଅଶୋକଙ୍କ ନିର୍ମିତ ଦୁଇଶତ ଫୁଟ ଉଚ୍ଚ ଏକ ସ୍ତୂପ ଥିଲା । ଏହି ସ୍ଥାନରେ ଶାକ୍ୟମୁନି ବୁଦ୍ଧ ତାହାଙ୍କ ବୋଧିସତ୍ତ୍ୱାବସ୍ଥାରେ ଧର୍ମକାର୍ଯ୍ୟ ସମ୍ପାଦନ କରି ଆନନ୍ଦ ଅନୁଭବ କରୁଥିଲେ ଓ ଏକ ସହସ୍ର ଜନ୍ମ ପର୍ଯ୍ୟନ୍ତ ସେ ଏହି ଦେଶର ନରପତି ହୋଇ ଜନ୍ମଗ୍ରହଣ କରିଥିଲେ । ବୌଦ୍ଧ ଧର୍ମ ଗ୍ରନ୍ଥରେ ଲିଖିତ ଅଛି ଯେ, ଏହି ସ୍ଥାନରେ ପ୍ରତ୍ୟେକ ଜନ୍ମରେ ସେ ସ୍ୱୀୟ ଚକ୍ଷୁଦ୍ୱୟ ଉତ୍ପାଟନ କରି ବିତରଣ କରୁଥିଲେ । ଏହି ସମସ୍ତ କାର୍ଯ୍ୟର ବହୁସଂଖ୍ୟକ ପବିତ୍ର ଚିହ୍ନ ଅଦ୍ୟାପି ବିଦ୍ୟମାନ ଅଛି । ହୁଏନ୍‌ସାଂ ଏହି ସମସ୍ତ ସ୍ଥାନ ଦର୍ଶନ କରି ତାହାଙ୍କୁ ଉପାସନା କରିଥିଲେ । ଯେତେବେଳେ ସେ କୌଣସି ସଂଘାରାମ ବା ସ୍ତୂପକୁ ଦର୍ଶନ କରିବାକୁ ଆସୁଥିଲେ, କୋ-ଚ୍ୟୁଂ ନରପତିଙ୍କଠାରୁ ପ୍ରାପ୍ତ ସ୍ୱର୍ଣ୍ଣ, ରୌପ୍ୟ ଓ ପରିଚ୍ଛଦରୁ କେତେକାଂଶ ବିତରଣ କରୁଥିଲେ ଏବଂ ସେହି ସ୍ଥାନରେ କିଛି କାଳ ଏହି ପ୍ରକାର ଧର୍ମକାର୍ଯ୍ୟରେ ବ୍ୟାପୃତ ରହି ତାହାଙ୍କ ଧର୍ମାନୁରାଗ ପ୍ରଦର୍ଶନପୂର୍ବକ ସେ ସ୍ଥାନରୁ ପ୍ରସ୍ଥାନ କରୁଥିଲେ ।

---

## ଉଦ୍‌ଖଣ୍ଡ ଓ ଉ-ଚ୍ୟୁଂ-ନ ରେ ପ୍ରବେଶ—ଶୁଭବାସ୍ତୁ ନଦୀ ଅପଲାଲ ସର

ଏହି ସ୍ଥାନରୁ ଯାଇ ସେ ଉଦ୍‌ଖଣ୍ଡ * (ଉ-ଟ-କି-ଆ-ହାଂ-ଚି) ନଗରରେ ଉପନୀତ ହେଲେ । ତତ୍ପରେ ଏହି ନଗରର ଛଅ ଶତ ଲି ଉତ୍ତର ଦିଗରେ ପର୍ବତ ଓ ଉପତ୍ୟକା ଅତିକ୍ରମ କରି ସେ ଉଦ୍ୟାନ (ଉ-ଚ୍ୟୁଂ-ନ) ଦେଶରେ ପ୍ରବିଷ୍ଟ ହେଲେ । ପୂର୍ବକାଳରେ ଶୁଭବାସ୍ତୁ

* ଉଦ୍‌ଖଣ୍ଡ—ଆଧୁନିକ ନାମ ଓହିନ୍ଦ । ଆଟକଠାରୁ ୧୫ ମାଇଲ ଉତ୍ତରରେ

( ଶୁ-ପୋ-ଷା-ତୁ ) ନଦୀର ଉଭୟ ପାର୍ଶ୍ୱରେ ଚଉଦ ଶତ ସଂଘାରାମ ଥିଲା ଓ ତନ୍ମଧ୍ୟରେ ଅଠର ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ଅଧୁନା ସେ ସମସ୍ତ ପରିତ୍ୟକ୍ତ ଓ ଜନଶୂନ୍ୟ ହୋଇଅଛି । ଏହି ସମୃଦ୍ଧିଶାଳୀ ଦେଶକୁ ମିହିର କୁଳ ଧ୍ୱଂସ କରିଥିଲେ । ମାତ୍ରଙ୍କ ସନ୍ନ୍ୟାସିଗଣ ପଞ୍ଚ ସମ୍ପ୍ରଦାୟଭୁକ୍ତ ଓ ତଦନୁସାରେ ସେମାନେ ଧର୍ମଗୁପ୍ତ, ମହୀଶାସକ, କାଶ୍ୟପୀୟ, ସର୍ବାସ୍ତିବାଦ ଓ ମହାସଂଘିକ ନାମରେ ଅଭିହିତ । ରାଜା ଅଧିକ ସମୟ ମୁଖୋଲି (ମୁଂ-କ-ଲି) ନଗରରେ ଅବସ୍ଥାନ କରୁଥିଲେ । ଏହା ଜନାକୀର୍ଣ୍ଣ ଓ ସମୃଦ୍ଧିଶାଳୀ ଥିଲା । ନଗରର ଚ୍ଚା ପାଞ୍ଚ ଲି ପୂର୍ବରେ ଏକ ସୁବୃହତ୍ ସ୍ତୂପ ଥିଲା । ତାହା ଅତ୍ୟଦ୍ଭୁତ ଗୁଣବିଶିଷ୍ଟ । ଏ ସ୍ଥାନରେ ବୁଦ୍ଧ କ୍ଷାନ୍ତି ଋଷି ରୂପରେ ଜନ୍ମଗ୍ରହଣ କରି ପରେ କଳିରାଜଙ୍କ ଉଦ୍ଦେଶ୍ୟରେ ଶରୀରକୁ ଖଣ୍ଡବିଖଣ୍ଡ କରି ପକାଇଥିଲେ ।

ଏହି ନଗରର ଦୁଇ ଶହ ପଚିଶ ଲି ଉତ୍ତର-ପୂର୍ବରେ ଏକ ପାର୍ବତ୍ୟ ପ୍ରଦେଶ ମଧ୍ୟରେ ନାଗ-ଅପଲାଲ ନାମରେ ଗୋଟିଏ ପ୍ରସ୍ରବଣ ଥିଲି । ସେହିଠାରୁ ସୁବାସ୍ତୁ ନଦୀ ନିର୍ଗତ ହୋଇ ଦକ୍ଷିଣ-ପୂର୍ବକୁ ପ୍ରବାହିତ ହେଉଥିଲି । ଏହି ଦେଶ ଅତ୍ୟନ୍ତ ଶୀତପ୍ରଧାନ ଏବଂ ବସନ୍ତ ଓ ଗ୍ରୀଷ୍ମକାଳରେ ମଧ୍ୟ ପ୍ରାତଃ ଓ ସନ୍ଧ୍ୟା ସମୟରେ ପ୍ରବଳ ତୁଷାରପାତ ଓ ଜଳ ବୃଷ୍ଟି ହୁଏ ଓ ସମୟ ସମୟରେ ବିବିଧ ବର୍ଣ୍ଣବିଶିଷ୍ଟ ପୁଷ୍ପ ବିକଶିତ ହୋଇ ଅପରୂପ ସୌନ୍ଦର୍ଯ୍ୟ ସୃଷ୍ଟି କରେ । ଏହି ପ୍ରସ୍ରବଣର ତିରିଶ ଲି ଦକ୍ଷିଣ-ପଶ୍ଚିମରେ ଏକ ଅନୁଚ୍ଚ ପ୍ରସ୍ତରୋପରି ବୁଦ୍ଧଙ୍କ ପଦଚିହ୍ନ ଥିଲି । ଦର୍ଶକଙ୍କ ପାପ ଓ ପୁଣ୍ୟାନୁଯାୟୀ ତାହା ସେମାନଙ୍କ ଚକ୍ଷୁରେ ଦୀର୍ଘ ଓ ହ୍ରସ୍ୱରୂପେ ଦୃଷ୍ଟିଗୋଚର ହେଉଥିଲି । ପୂର୍ବକାଳରେ ବୁଦ୍ଧ ନାଗ-ଅପଲାଲ ଜୟ କରି ଏହି ସ୍ଥାନରେ ସୌଭାଗ୍ୟସୂଚକ ପଦଚିହ୍ନ ରଖିଯାଇଥିଲେ । ଏହି ପ୍ରସ୍ରବଣର ତିରିଶ ଲି ତଳକୁ ଏକ ପ୍ରସ୍ତର ଅଛି । ତହିଁରେ ତଥାଗତ ତାହାଙ୍କ ପରିଚ୍ଛଦ

ପ୍ରକ୍ଷାଳନ କରୁଥିଲେ । ଉକ୍ତ ପ୍ରସ୍ତରୋପରି ତାହାଙ୍କ କଷାୟ ବସ୍ତ୍ରର ଚିହ୍ନମୟ ଚିହ୍ନସମୂହ ଅଦ୍ୟାପି ସ୍ପଷ୍ଟଭାବରେ ବିଦ୍ୟମାନ ରହିଅଛି ।

ନଗରର ଚାରିଶତ ଲି ଦକ୍ଷିଣକୁ ହି-ଲୋ ପର୍ବତ ଅବସ୍ଥିତ । ଏହିଠାରେ ତଥାଗତ ପୂର୍ବକାଳରେ ଏକ ଅର୍ଦ୍ଧଗାଥା ଶ୍ରବଣ କରି ଯକ୍ଷ ପ୍ରତି କୃତଜ୍ଞତାର ନିଦର୍ଶନସ୍ୱରୂପ ତାହାର ଆହାର ସକାଶେ ସ୍ୱୀୟ ଶରୀର ପ୍ରଦାନ କରିଥିଲେ ( ଗୋଟିଏ ଗାଥା ୩୨ ଶବ୍ଦବିଶିଷ୍ଟ ) ।

ମୁଙ୍ଗାଲୀ ନଗରୀର ପଚାଶ ଲି ପଶ୍ଚିମକୁ ଏକ ବୃହତ୍ ନଦୀର ଅପର ପାର୍ଶ୍ୱରେ ରୋହିତକ ( ଲୁ-ହି-ତ-କ ) ନାମକ ସ୍ତୂପ ଦଣ୍ଡାୟମାନ । ଏହା ଏକଶତ ଫୁଟ ଉଚ୍ଚ ଓ ଅଶୋକଙ୍କ ସମୟରେ ନିର୍ମିତ ହୋଇଥିଲା । ଏହିଠାରେ ପୂର୍ବକାଳରେ ତଥାଗତ ମୈତ୍ରୀବଳ ରାଜରୂପରେ ଜନ୍ମଗ୍ରହଣ କରି ପରେ ପାଞ୍ଚ ଯକ୍ଷଙ୍କ ଆହାର ସକାଶେ ସ୍ୱଶରୀର ଛୁରିକାଦ୍ୱାରା ଖଣ୍ଡବିଖଣ୍ଡ କରି ଦାନ କରିଥିଲେ ।

ନଗରୀର ଚାରିଶ ଲି ଉତ୍ତର-ପୂର୍ବକୁ 'ଅଦ୍ଭୁତ' ନାମକ ପ୍ରସ୍ତର-ସ୍ତୂପ ବିଦ୍ୟମାନ । ଏହା ତିରିଶ ଫୁଟ ଉଚ୍ଚ । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ଦେବ ଓ ମାନବଙ୍କ ସକାଶେ ତତ୍ତ୍ୱ ପ୍ରଚାର କରିଥିଲେ । ଏହି ସ୍ତୂପ ଭୂଗର୍ଭରୁ ସ୍ୱେଚ୍ଛାକ୍ରମେ ଉଦ୍ଭୂତ ହୋଇଥିଲା ।

ଏହି ସ୍ତୂପର ତିନି ଚାରି ଲି ପଶ୍ଚିମକୁ ଏକ ବୃହତ୍ ନଦୀର ଅପର ପାର୍ଶ୍ୱରେ ଏକ ବିହାର ବିଦ୍ୟମାନ ଓ ତନ୍ମଧ୍ୟରେ ଅତ୍ୟନ୍ତ ଆଧ୍ୟାତ୍ମିକ-ଶକ୍ତିସମ୍ପନ୍ନ ଅବଲୋକିତ ବୋଧିସତ୍ତ୍ୱଙ୍କ ଏକ ମୂର୍ତ୍ତି ଥିଲା । କଥିତ ଅଛି ଯେ,ନଗରୀର ଉତ୍ତର-ପୂର୍ବରେ ବହୁସଂଖ୍ୟକ ପର୍ବତ, ଉପତ୍ୟକା, ଖରସ୍ରୋତା ନଦୀ, କର୍ଦ୍ଦମମୟ ପଥ ଓ ଭୀଷଣ ବିପଦସଙ୍କୁଳ ଗିରିସଙ୍କଟ ଅତିକ୍ରମ କରି ପ୍ରାୟ ଏକ ସହସ୍ର ଲି ପର୍ଯ୍ୟନ୍ତ କେଉଁଠାରେ ଲୌହ ଶୃଙ୍ଖଳ, କେଉଁଠାରେ ଅବା ଶୂନ୍ୟରେ ନିର୍ମିତ ସେତୁ ସାହାଯ୍ୟରେ

ଦାରେଲ ( ତା-ଲି-ଲୋ ) ଉପତ୍ୟକାକୁ ଆସିବାକୁ ହେଉଥିଲା । ଏହା ହିଁ ଉଦ୍ୟାନ ରାଜ୍ୟର (ଉ-ଚ୍ୟାଂ-ନ) ପ୍ରାଚୀନ ରାଜଧାନୀ ଥିଲା । *

---

## ମୈତ୍ରେୟ ବୋଧିସତ୍ତ୍ୱଙ୍କ କାଷ୍ଠମୂର୍ତ୍ତି

ଏହିଠାରେ ଏକ ବୃହତ୍ ସଂଘାରାମ ଥିଲା ଏବଂ ତତ୍ପାର୍ଶ୍ୱରେ ମୈତ୍ରେୟ ବୋଧିସତ୍ତ୍ୱଙ୍କର କାଷ୍ଠରେ ଖୋଦିତ ଗୋଟିଏ ମୂର୍ତ୍ତି ଥିଲା । ତାହାର ବର୍ଣ୍ଣ ସ୍ୱର୍ଣ୍ଣ ତୁଲ୍ୟ ଏବଂ ଦେଖିଲେ ମହା ମହିମାନ୍ୱିତ ପ୍ରତୀୟମାନ ହେଉଥିଲା । ଏହା ଏକଶତ ଫୁଟ ଉଚ୍ଚ ଓ ଅର୍ହତ ମାଧାନ୍ତିକଙ୍କଦ୍ୱାରା ନିର୍ମିତ ହୋଇଥିଲା । ଅର୍ହତ ମାଧାନ୍ତିକ ଦୈବୀ ଶକ୍ତି ସାହାଯ୍ୟରେ ତୁଷିତନାମକ ସ୍ୱର୍ଗକୁ ନେଇ କରି ସେଠାରୁ ମୈତ୍ରେୟଙ୍କ ଶରୀରସ୍ଥ ବଶିଷ୍ଟ ଚିହ୍ନସମୂହ ପର୍ଯ୍ୟବେକ୍ଷଣ କରିବା ସକାଶେ ଏକ ଶିଳ୍ପୀଙ୍କୁ ପ୍ରେରଣ କରିଥିଲେ ଓ ଉକ୍ତ ଶିଳ୍ପୀ ତିନିଥର ସେହି ସ୍ଥାନକୁ ଗମନ କରି ସେହି କାର୍ଯ୍ୟ ସମ୍ପାଦନ କରିଥିଲେ ।

ଉଣ୍ଡଖଣ୍ଡ ନଗରର ଦକ୍ଷିଣରେ ସ୍ୱଚ୍ଛସଲିଳା, ଖରସ୍ରୋତା ସିନ୍-ତୁ (ସିନ୍ଧୁ) ନଦୀ ପ୍ରବାହିତା । ଏହି ସ୍ଥାନରେ ଏହାର ପ୍ରସ୍ଥ ତିନି ଗୋଟି ଲି ଓ ଏହାର ଜଳରେ ଅସଂଖ୍ୟ ବିଷାକ୍ତ ଜୀବ ଓ ଦୁଷ୍ଟ ପିଶାଚଗଣ ବାସ କରୁଥିଲେ । ଯେଉଁମାନେ ଭାରତବର୍ଷର ମଣିମାଣିକ୍ୟ ଓ ମନୋମୁଗ୍ଧକର ପୁଷ୍ପ ପ୍ରଭୃତି ଘେନି ଏହି ନଦୀ ନୌକାରେ ଲଙ୍ଘନ କରୁଥିଲେ, ଉକ୍ତ ନୌକା ତତ୍କ୍ଷଣାତ୍ ଭୀଷଣ ତରଙ୍ଗାକୁଳିତ ଓ ବିପଦ୍‌ଗ୍ରସ୍ତ ହେଉଥିଲା ।

ଏହି ନଦୀର ଅପର ପାର୍ଶ୍ୱରେ ତକ୍ଷଶିଳା ( ତ-ଚ୍ୟା-ଶି-ଲୋ ) ଅବସ୍ଥିତ । ତକ୍ଷଶିଳାର ବାର ତେର ଲି ଉତ୍ତରକୁ ଅଶୋକଙ୍କ ନିର୍ମିତ

* ଉଦ୍ୟାନ—ଆଧୁନିକ ସ୍ୱାତ୍

ଏକ ସ୍ତୂପ ଥିଲା । ତହିଁରୁ ଅବିରତ ଏକପ୍ରକାର ଅପୂର୍ବ ଜ୍ୟୋତି ନିର୍ଗତ ହେଉଥିଲା ।

---

## ଚନ୍ଦ୍ରପ୍ରଭ ରୂପରେ ବୋଧିସତ୍ତ୍ୱଙ୍କ ଅବିର୍ଭାବ

ପୂର୍ବକାଳରେ ତଥାଗତ ବୋଧିସତ୍ତ୍ୱଙ୍କ କାର୍ଯ୍ୟ ସମ୍ପାଦନ କରୁଥିବା ସମୟରେ ଏହି ସ୍ଥାନରେ ସ୍ୱୀୟ ମସ୍ତକ ଛେଦନ କରିଥିଲେ । ସେତେବେଳେ ସେ ଏକ ବସ୍ତୀର୍ଣ୍ଣ ଭୂଖଣ୍ଡରେ ଚନ୍ଦ୍ରପ୍ରଭ ନାମ ଧାରଣ କରି ରାଜା ହୋଇଥିଲେ । ସେ ବୋଧିଙ୍କ ପରମଜ୍ଞାନ ଲାଭ ଉଦ୍ଦେଶ୍ୟରେ ସ୍ୱୀୟ ମସ୍ତକ ସହସ୍ର ଜନ୍ମ ପର୍ଯ୍ୟନ୍ତ ଛେଦନ କରିଥିଲେ ।

ଏହି ସ୍ତୂପ ସନ୍ନିକଟରେ ଏକ ସଂଘାରାମ ଥିଲା । ପୂର୍ବକାଳରେ ଏକ ସୌତ୍ରାନ୍ତିକ ସମ୍ପ୍ରଦାୟଭୁକ୍ତ କୁମାର ଲବ୍ଧ ( କୁ-ମା-ଲୋ-ତୋ ) ନାମକ ଏକ ସନ୍ନ୍ୟାସୀ ଏହି ସ୍ଥାନରେ ବହୁ ଶାସ୍ତ୍ର ପ୍ରଣୟନ କରିଥିଲେ ।

ଏହି ସ୍ଥାନରୁ ସାତ ଶତ ଲି ଦକ୍ଷିଣ-ପୂର୍ବ ଦିଗରୁ ସିଂହପୁର ( ସାଂ-ହୋ-ପୋ-ଲୋ ) ରାଜ୍ୟ ଅବସ୍ଥିତ ଥିଲା ।

ତକ୍ଷଶିଳାର ଉତ୍ତର ସୀମାନ୍ତ ପରିତ୍ୟାଗପୂର୍ବକ ଦୁଇଶତ ଲି ଦକ୍ଷିଣ-ପୂର୍ବରେ ସିନ୍ଧୁନଦୀ ଅତିକ୍ରମ କଲେ ଏକ ପ୍ରସ୍ତରମୟ ଗିରିସଙ୍କଟ ପଡ଼େ । ପୂର୍ବକାଳରେ ଏହି ସ୍ଥାନରେ ରାଜକୁମାର ରୂପରେ ମହାସତ୍ତ୍ୱ, କ୍ଷୁଧିତ ବ୍ୟାଘ୍ରଶାବକଙ୍କ ସମ୍ମୁଖରେ ସ୍ୱଶରୀର ବିସର୍ଜନ କରିଥିଲେ । ତେଣୁ ଏହି ସ୍ଥାନର ମୃତ୍ତିକା ତାହାଙ୍କ ରକ୍ତରେ ରଞ୍ଜିତ ହୋଇଥିବାରୁ ମୃତ୍ତିକା, ବୃକ୍ଷ, ପତ୍ର ସମସ୍ତ ରକ୍ତବର୍ଣ୍ଣ ଧାରଣ କରିଥିଲା ।

ଏହି ସ୍ଥାନରୁ ପାର୍ବତ୍ୟ ପ୍ରଦେଶୋପରି ପଞ୍ଚଶତ ଲି ଦକ୍ଷିଣ-ପୂର୍ବକୁ ଗଲେ ଉରଶ ( ଉ-ଲା-ଶ ) ରାଜ୍ୟ ପଡେ । ତତ୍ପରେ ଏକ ସହସ୍ର ଲି ପର୍ଯ୍ୟନ୍ତ ଲୌହ ସେତୁ ସାହାଯ୍ୟରେ ସମୁଚ ଗିରିଶୃଙ୍ଗ ଅବରୋହଣ କରି ହୁଏନ୍‌ସାଂ କାଶ୍ମୀର ଦେଶରେ ଉପନୀତ ହେଲେ ।

କାଶ୍ମୀରର ରାଜଧାନୀ ଏକ ବୃହତ୍ ନଦୀର ପଶ୍ଚିମ କୂଳରେ ଅବସ୍ଥିତ ଥିଲା । ଏଠାରେ ପାଞ୍ଚଶତ ମଠ ସ୍ଥାପିତ ହୋଇ ତନ୍ମଧ୍ୟରେ ପାଞ୍ଚ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ପୁଣି ଏଠାରେ ଚାରିଗୋଟି ଅତ୍ୟୁଚ୍ଚ ସୁନ୍ଦର ସ୍ତୂପ ଥିଲା । ସେ ସବୁ ଅଶୋକଙ୍କ ସମୟରେ ନିର୍ମିତ ହୋଇଥିଲା । ପ୍ରତ୍ୟେକ ସ୍ତୂପ ମଧ୍ୟରେ ତଥାଗତଙ୍କ ଶରୀରର କିୟଦଂଶ ରକ୍ଷିତ ହୋଇଥିଲା ।

---

## ହୁଷ୍କର ମନ୍ଦିର

ହୁଏନ୍‌ସାଂ କାଶ୍ମୀର ଦେଶରେ ଉପସ୍ଥିତ ହୋଇ ପଶ୍ଚିମ ସୀମାନ୍ତ-ବର୍ତ୍ତୀ ପ୍ରସ୍ତରନିର୍ମିତ ଦ୍ୱାର ଦେଇ ତନ୍ମଧ୍ୟରେ ପ୍ରବିଷ୍ଟ ହେଲେ । ତାହାଙ୍କୁ ପାଛୋଟି ଆଣିବା ସକାଶେ ରାଜା ରଥରେ ତାହାଙ୍କ ଜନନୀ ଓ କନିଷ୍ଠ ଭ୍ରାତାଙ୍କୁ ପ୍ରେରଣ କଲେ । ସେ ପ୍ରସ୍ତରଦ୍ୱାର ମଧ୍ୟରେ ପ୍ରବିଷ୍ଟ ହୋଇ ଭିନ୍ନ ଭିନ୍ନ ସଙ୍ଘାରାମ ପରିଦର୍ଶନପୂର୍ବକ ସେଠାରେ ଉପାସନା କଲେ ଏବଂ ହୁଷ୍କର (ହୁ-ଷେ-କି-ଆ-ଲୋ) ନାମକ ମନ୍ଦିରକୁ ଯାଇ ସେଠାରେ ରାତ୍ରି ଯାପନ କଲେ । ଏହି ମନ୍ଦିରର ସନ୍ନ୍ୟାସିଗଣ ସେହି ରାତ୍ରିରେ ସ୍ୱପ୍ନରେ ଦେଖିଲେ ଯେ, ଏକ ସ୍ୱର୍ଗୀୟ ପୁରୁଷ ସେମାନଙ୍କୁ କହୁଅଛନ୍ତି, "ମହାଚୀନ ଦେଶରୁ ଜଣେ ବିଦେଶୀୟ ସନ୍ନ୍ୟାସୀ ଧର୍ମ-ଶାସ୍ତ୍ର ଅଧ୍ୟୟନ ଓ ଭାରତବର୍ଷର ପବିତ୍ର ସ୍ଥାନସମୂହରେ ବୁଦ୍ଧଙ୍କର

ଉପାସନା କରିବା ସକାଶେ ଆସିଅଛନ୍ତି ।' ସନ୍ନ୍ୟାସିଗଣ ବିନୟ ପୁରଃସର କହିଲେ, 'ଆମ୍ଭେମାନେ ଏହି ବ୍ୟକ୍ତିଙ୍କ ବିଷୟରେ ଅଦ୍ୟାପି କିଛି ଶୁଣି ନାହୁଁ ।' ସ୍ୱର୍ଗୀୟ ପୁରୁଷ କହିଲେ, 'ଏହି ତତ୍ତ୍ୱାନ୍ୱେଷୀ ବିଦେଶୀୟ ସନ୍ନ୍ୟାସୀ ଅସଂଖ୍ୟ ମଙ୍ଗଳମୟ ଭୂତଗଣ ପରିବେଷ୍ଟିତ ହୋଇ ରହିଅଛନ୍ତି ଏବଂ ଉକ୍ତ ଭୂତଗଣ ସର୍ବଦା ତାହାଙ୍କ ଅନୁସରଣ କରୁଅଛନ୍ତି; ଉକ୍ତ ସନ୍ନ୍ୟାସୀ ଆଜି ରାତିରେ ତୁମ୍ଭମାନଙ୍କ ସହିତ ଏହି ମନ୍ଦିରରେ ଆଶ୍ରୟ ଗ୍ରହଣ କରିଅଛନ୍ତି; ଦୂରଦେଶାଗତ ଅତିଥିଙ୍କର ସତ୍କାର ଅତି ପୁଣ୍ୟମୟ । ତୁମ୍ଭେମାନେ ବର୍ତ୍ତମାନ ଧର୍ମଗ୍ରନ୍ଥ ଆବୃତ୍ତି କରି ତାହାଙ୍କ ହୃଦୟରେ ଭକ୍ତି ଉଦ୍ରେକ କରିବା ବିଧେୟ । ଏହି କର୍ତ୍ତବ୍ୟ ପାଳନ ନ କରି ତୁମ୍ଭେମାନେ କାହିଁକି ନିଦ୍ରିତ ହୋଇ ରହିଅଛ ?'

ଏହି ବାକ୍ୟ ଶ୍ରବଣ କରି ସନ୍ନ୍ୟାସିଗଣ ନିଦ୍ରା ପରିହାର କଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ଇତସ୍ତତଃ ଭ୍ରମଣ କରି, କେହି କେହି ବା ଧ୍ୟାନରେ ନିମଗ୍ନ ହୋଇ ଶାସ୍ତ୍ରାବୃତ୍ତି କରିବାକୁ ଲାଗିଲେ । ରଜନୀ ପ୍ରଭାତ ହେବାରୁ ସନ୍ନ୍ୟାସିଗଣ ଉପର୍ଯ୍ୟୁକ୍ତ ସ୍ୱପ୍ନବାର୍ତ୍ତା ସମ୍ବନ୍ଧରେ ପରସ୍ପର ସହିତ କଥୋପକଥନ କଲେ ଏବଂ ତତ୍ପରେ ଆସି ଭକ୍ତିପୂର୍ଣ୍ଣ ହୃଦୟରେ ସେମାନଙ୍କ କର୍ତ୍ତବ୍ୟରେ ବ୍ୟାପୃତ ହେଲେ । ଏହି ପ୍ରକାରେ ବହୁଦିବସ ଅତୀତ ହେଲା । ଅଳ୍ପ ଦିବସ ଉତ୍ତାରେ ହୁଏନସାଂ କାଶ୍ମୀରର ରାଜଧାନୀରେ ଉପସ୍ଥିତ ହୋଇ ଏକ ଲି ଦୂରବର୍ତ୍ତୀ ଏକ ଧର୍ମଶାଳାରେ ଆଶ୍ରୟ ଗ୍ରହଣ କଲେ । ମନ୍ତ୍ରୀ, ସନ୍ନ୍ୟାସୀ ଓ ଅନ୍ୟାନ୍ୟ ଏକ ସହସ୍ର ଲୋକଙ୍କ ସମଭିବ୍ୟାହାରରେ ରାଜା ଧର୍ମଶାଳା ନିକଟକୁ ଆସି ତାହାଙ୍କୁ ଅଭିବାଦନ କଲେ । ତାହାଙ୍କ ଗମନ ମାର୍ଗରେ ଧ୍ୱଜ ଓ ଛତ୍ର ଉତ୍ତୋଳିତ ହୋଇଥିଲା ଓ ସେମାନେ ସମସ୍ତେ ହୁଏନ୍‌ସାଂଙ୍କ ଉଦ୍ଦେଶ୍ୟରେ ଧୂପଦାନ ଓ ରାଜ-

ମାର୍ଗରେ କୁସୁମ ବର୍ଷଣ କରୁଥିଲେ । ପୁଣି ଯେତେବେଳେ ତାହାଙ୍କ ସମ୍ମୁଖୀନ ହେଲେ, ସମସ୍ତେ ତାହାଙ୍କୁ ବିନୀତ ଭାବରେ ପ୍ରଣାମ କରି ତାହାଙ୍କ ପଦତଳରେ ଅସଂଖ୍ୟ ପୁଷ୍ପ ଉପହାର ପ୍ରଦାନ କଲେ । ତତ୍ପରେ ତାହାଙ୍କୁ ହସ୍ତିପୃଷ୍ଠରେ ରାଜଧାନୀ ମଧ୍ୟକୁ ନେଇଗଲେ ଓ ସେଠାରେ ସେ ଜୟେନ୍ଦ୍ର (ଚେ-ୟେ-ନ-ଚୋ-ଲୋ) ମଠରେ ଅବସ୍ଥାନ କଲେ ।

ପରଦିନ ପ୍ରାତଃକାଳରେ ରାଜପ୍ରାସାଦକୁ ଯାଇ ତାଙ୍କଠାରୁ ପୂଜା ଗ୍ରହଣ କରିବା ସକାଶେ ରାଜା ତାହାଙ୍କୁ ଅନୁରୋଧ କଲେ ଓ ରାଜ୍ୟର ପ୍ରସିଦ୍ଧ ସନ୍ନ୍ୟାସୀମାନଙ୍କୁ ସେଠାରେ ଉପସ୍ଥିତ ହେବା ସକାଶେ ଆଦେଶ କଲେ । ଭୋଜନାନ୍ତେ ସମ୍ମିଳନୀ ଉଦ୍‌ଘାଟନପୂର୍ବକ ଶାସ୍ତ୍ରସମୂହର କଠିନ ତତ୍ତ୍ୱାଦି ସମ୍ବନ୍ଧେ ଆଲୋଚନା କରିବା ସକାଶେ ରାଜା ହୁଏନ୍‌ସାଂଙ୍କୁ ଆହ୍ୱାନ କଲେ । ଏଥିରେ ହୁଏନ୍‌ସାଂ ଅତିଶୟ ଆନନ୍ଦ ପ୍ରକାଶ କଲେ । ରାଜା ଦେଖିଲେ ଯେ, ହୁଏନ୍‌ସାଂଙ୍କଠାରେ କୌଣସି ମୌଳିକ ଚିନ୍ତା ନାହିଁ ଅଥଚ ସେ ଶିକ୍ଷା କରିବା ସକାଶେ ବଳବତୀ ଇଚ୍ଛାଦ୍ୱାରା ପ୍ରଣୋଦିତ ହୋଇ ଏତେ ଦୂର ଦେଶରୁ ଆସିଅଛନ୍ତି । ତେଣୁ ସେ ଧର୍ମଗ୍ରନ୍ଥ ଓ ଶାସ୍ତ୍ରଗୁଡ଼ିକର ପ୍ରତିଲିପି ପ୍ରସ୍ତୁତ କରିବା ସକାଶେ କୋଡ଼ିଏ ଜଣ ଲୋକ ନିଯୁକ୍ତ କଲେ । ପୁଣି ତାହାଙ୍କ ପରିଚର୍ଯ୍ୟା ଓ ବିନାମୂଲ୍ୟରେ ପ୍ରୟୋଜନୀୟ ଦ୍ରବ୍ୟ ଯୋଗାଇବା ସକାଶେ ପାଞ୍ଚ ଜଣ ଲୋକ ନିଯୁକ୍ତ କଲେ ।

ଉପର୍ଯ୍ୟୁକ୍ତ ଜୟେନ୍ଦ୍ରମଠର ଅଧ୍ୟକ୍ଷ ଉନ୍ନତଚରିତ୍ରବିଶିଷ୍ଟ ସନ୍ନ୍ୟାସୀ ଥିଲେ । ସେ ଧର୍ମାନୁଷ୍ଠାନ ପଦ୍ଧତି ଓ ନୀତିସମୂହ କଠୋର ଭାବରେ ପାଳନ କରୁଥିଲେ । ତାହାଙ୍କର ବୋଧଶକ୍ତି ଅତ୍ୟନ୍ତ ତୀକ୍ଷ୍ଣ ଥିଲା ଓ ସେ ପ୍ରକୃତ ଶିକ୍ଷାର୍ଥୀର ଲକ୍ଷଣାଦି ବିଷୟରେ ଯଥେଷ୍ଟ ଅଭିଜ୍ଞତା ଅର୍ଜ୍ଜନ

କରିଥିଲେ । ସେ ଅତ୍ୟନ୍ତ ପ୍ରତିଭାଶାଳୀ, ସମୁନ୍ନତ ଆଧ୍ୟାତ୍ମିକ ଶକ୍ତି-ସମ୍ପନ୍ନ ଓ ସ୍ନେହମୟ ପ୍ରକୃତିବିଶିଷ୍ଟ ଥିଲେ । ସେ ହୁଏନ୍‌ସାଂଙ୍କୁ ନିମନ୍ତ୍ରଣ କରି ସମୁଚିତ ସତ୍କାରଦ୍ୱାରା ତାହାଙ୍କୁ ସମ୍ମାନିତ କଲେ । ହୁଏନ୍‌ସାଂ ମଧ୍ୟ ସର୍ବାନ୍ତଃକରଣରେ ବିନୟପୂର୍ବକ ବହୁବିଧ ପ୍ରଶ୍ନ ଜିଜ୍ଞାସା କଲେ ଓ ଅହୋରାତ୍ର ବିଭିନ୍ନ ଶାସ୍ତ୍ରାନ୍ତର୍ଗତ ତତ୍ତ୍ୱ ବ୍ୟାଖ୍ୟାନ କରିବା ନିମନ୍ତେ ତାହାଙ୍କୁ ଅନୁରୋଧ କଲେ ।

---

## ବିଭିନ୍ନ ଶାସ୍ତ୍ର-ବ୍ୟାଖ୍ୟାନ

ଉକ୍ତ ସନ୍ନ୍ୟାସୀଙ୍କର ବୟସ ସତୁରି ବର୍ଷ ହୋଇଥିଲା । ତାହାଙ୍କର ସ୍ୱାଭାବିକ ଶକ୍ତି କିଛିଟା ହ୍ରାସ ହୋଇପଡିଥିଲା ; ତଥାପି ହୁଏନ୍‌ସାଂଙ୍କ ଦର୍ଶନରେ ଉତ୍ସାହିତ ହୋଇ ସେ ଶାସ୍ତ୍ର-ବ୍ୟାଖ୍ୟାନ କରିବାରେ ତାହାଙ୍କର ସମସ୍ତ ଶକ୍ତି ନିୟୋଜିତ କଲେ । ସେ ପୂର୍ବାହ୍ଣରେ କୋଷ ଶାସ୍ତ୍ର, ଅପରାହ୍ଣରେ ନ୍ୟାୟ-ଅନୁସାର-ଶାସ୍ତ୍ର ଓ ରାତ୍ରି ଏକ ପ୍ରହର ସମୟରେ ହେତୁବିଦ୍ୟା ଶାସ୍ତ୍ରର ବ୍ୟାଖ୍ୟା ସମାପ୍ତ କଲେ । ଏହି ସମୟରେ ରାଜ୍ୟର ସମସ୍ତ ସନ୍ନ୍ୟାସୀ ଓ ପଣ୍ଡିତଗଣ ଶାସ୍ତ୍ର-ବ୍ୟାଖ୍ୟାନ ଶ୍ରବଣ କରିବା ନିମନ୍ତେ ସମବେତ ହୋଇଥିଲେ । ହୁଏନ୍‌ସାଂ ତାହାଙ୍କ ମୁଖନିଃସୃତ ବାକ୍ୟାବଳୀ ଅଭିନିବେଶ ସହକାରେ ଅନୁସରଣ କରି ସମସ୍ତ ବିଷୟ ସମ୍ୟକ୍ ଆୟତ୍ତ କଲେ ଓ ଉକ୍ତ ଶାସ୍ତ୍ରସମୂହର ଦୁର୍ବୋଧ ବାକ୍ୟ ଓ ଗୂଢ ତତ୍ତ୍ୱ ମଧ୍ୟରେ ସମ୍ପୂର୍ଣ୍ଣରୂପେ ପ୍ରବେଶ କଲେ ।

ତତ୍ପରେ ଉକ୍ତ ସନ୍ନ୍ୟାସୀ ଅସୀମ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉପସ୍ଥିତ ସନ୍ନ୍ୟାସିମଣ୍ଡଳୀଙ୍କ ସମ୍ମୁଖରେ କହିଲେ, "ଏହି ଚୀନ ଦେଶୀୟ ସନ୍ନ୍ୟାସୀଙ୍କ ଜ୍ଞାନଶକ୍ତି ଅସୀମ; ଏହି ସନ୍ନ୍ୟାସିମଣ୍ଡଳୀରେ ଏହାଙ୍କ ସମକକ୍ଷ କେହି ନାହାନ୍ତି । ଏହାଙ୍କର ଜ୍ଞାନ ଓ ପୁଣ୍ୟବଳରେ ଏ ବସୁବନ୍ଧୁ

ଭ୍ରାତାଙ୍କ (ଅସଙ୍ଗ ବୋଧିସତ୍ତ୍ୱ) କୀର୍ତ୍ତି ଅର୍ଜ୍ଜନ କରିବାରେ ସମ୍ପୂର୍ଣ୍ଣ ଯୋଗ୍ୟ ଅଟନ୍ତି । କିନ୍ତୁ ଦୁଃଖର ବିଷୟ, ବୈଦେଶିକ ହୋଇଥିବା ଯୋଗୁଁ ଏ ଏକାବେଳକେ ଋଷିମାନଙ୍କ ପରମ୍ପରାଗତ ସୌଭାଗ୍ୟ ଭୋଗ କରିବାରେ ସମର୍ଥ ହୋଇ ପାରୁ ନାହାନ୍ତି ।

ସନ୍ନ୍ୟାସିମଣ୍ଡଳୀ ମଧ୍ୟରେ ମହାଯାନତତ୍ତ୍ୱଜ୍ଞ ବିଶୁଦ୍ଧ ସିଂହ (ପି-ଶୁ-ତ-ସଂ-ହ୍) ଓ ଧୀନବନ୍ଧୁ (ଚି-ନ-ଫନ୍-ତୁ) ସର୍ବାସ୍ତିବାଦୀ ମତାଭିଜ୍ଞ ସୁଗତ ମିତ୍ର (ସୁ-କିଅ-ମି-ତୋ-ଲୋ) ଓ ବସୁମିତ୍ର (ପ-ସୁ-ମି-ତୋ-ଲୋ) ଓ ମହାସଂଘିକ ମତାବଲମ୍ବୀ ସୂର୍ଯ୍ୟଦେବ (ସୁ-ଲି-ୟେ-ତି-ପୋ) ଓ ଜିନତ୍ରାତ (ଚି-ନ-ତ-ଲୋ-ତୋ) ଉପସ୍ଥିତ ଥିଲେ ।

ଏହି ଦେଶ ପୁରାକାଳରୁ ବିଦ୍ୟା ଓ ପାଣ୍ଡିତ୍ୟରେ ପ୍ରସିଦ୍ଧି ଲାଭ କରିଥିଲା । ଏହି ସନ୍ନ୍ୟାସିବୃନ୍ଦ ଅତ୍ୟନ୍ତ ଧର୍ମପରାୟଣ, ପୁଣ୍ୟାତ୍ମା, ଅଲୌକିକ ପ୍ରତିଭାଶାଳୀ, ଧର୍ମତତ୍ତ୍ୱ-ବ୍ୟାଖ୍ୟାନରେ ଅସାମାନ୍ୟ ଶକ୍ତିସମ୍ପନ୍ନ ଓ ଅନ୍ୟ ଦେଶବାସୀ ସନ୍ନ୍ୟାସିଗଣଙ୍କ ଅତୁଳନୀୟ ଥିଲେ । ହୁଏନ୍‌ସାଂ ଏତଦ୍ଦେଶୀୟ ଋଷିମାନଙ୍କ ପ୍ରତି ଭକ୍ତିପରାୟଣ ହୋଇ-ଥିଲେ ହେଁ ତାହାଙ୍କ ସହିତ ପ୍ରଥମ ସାକ୍ଷାତରେ ସେମାନେ କଠିନ ପ୍ରଶ୍ନସମୂହ ପଚାରି ତାହାଙ୍କୁ ବିବ୍ରତ କରିବାରୁ କଦାପି କ୍ଷାନ୍ତ ହେଲେ ନାହିଁ; କିନ୍ତୁ ସେ ନିର୍ମଳ ଦୃଷ୍ଟି ଓ ଅବକ୍ରତ ଭାଷା ସାହାଯ୍ୟରେ ଅକୁଣ୍ଠିତ ଭାବରେ ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ପ୍ରଦାନ କଲେ । ଏହିଦିନଠାରୁ ସନ୍ନ୍ୟାସୀ ଓ ଋଷିଗଣ ତାହାଙ୍କ ସମ୍ମୁଖରେ ସଙ୍କୁଚିତ ହୋଇ ରହିବାକୁ ଲାଗିଲେ ।

---

## ରାଜା କନିଷ୍କଙ୍କ ମନ୍ତ୍ରିପରିଷଦ୍

ଏହି ଦେଶ ପୂର୍ବକାଳରେ 'ନାଗହ୍ରଦ' ନାମରେ ଅଭିହିତ ଥିଲା । ବୁଦ୍ଧଙ୍କ ନିର୍ବାଣ-ପ୍ରାପ୍ତିର ପଚାଶ ବର୍ଷ ଉତ୍ତାରେ ଆନନ୍ଦଙ୍କ ଶିଷ୍ୟ ମାଧ୍ୟାନ୍ତିକ ଏଠାର ନାଗରାଜାଙ୍କୁ ସ୍ୱମତରେ ଦୀକ୍ଷିତ କରିଥିଲେ । ତତ୍ପରେ ସେ ଏହି ହ୍ରଦ ପରିତ୍ୟାଗ କରି ପାଞ୍ଚଶତ ସଙ୍ଘାରାମ ସ୍ଥାପନ କଲେ ଏବଂ ସେଠାରେ ଅବସ୍ଥାନ କରି ନାଗଗଣଙ୍କ ପୂଜା ଗ୍ରହଣ କରିବା ସକାଶେ ଋଷିମାନଙ୍କୁ ଆହ୍ୱାନ କଲେ । ତତ୍ପରେ ତଥାଗତଙ୍କ ନିର୍ବାଣ-ପ୍ରାପ୍ତିର ଚାରିଶତ ବର୍ଷ ଉତ୍ତାରେ ଗାନ୍ଧାର ନରପତି କନିଷ୍କ ପାର୍ଶ୍ୱିକଙ୍କ ଅନୁରୋଧରେ ତ୍ରିପିଟକର ନିଗୂଢ଼ତତ୍ତ୍ୱଙ୍କ ଓ ପଞ୍ଚବିଦ୍ୟାର ପ୍ରକାଶ୍ୟ ତତ୍ତ୍ୱଜ୍ଞ ଋଷିମାନଙ୍କର ଏକ ସମ୍ମିଳନୀ ଆହ୍ୱାନ କଲେ । ଏହାଙ୍କ ନିମନ୍ତ୍ରଣରେ ୪୯୯ ଜଣ ଋଷି ଉପସ୍ଥିତ ହେଲେ ଓ ଭିକ୍ଷୁରାଜନ ବସୁମିତ୍ର **ଆସି** ସେମାନଙ୍କ ସହିତ ମିଳିତ ହେଲେ । ଏହି ପ୍ରକାରେ ପାଞ୍ଚ ଶତ ଋଷି ସମ୍ମିଳିତ ହୋଇ ଏକସ୍ୱରରେ ତ୍ରିପିଟକ ସୂତ୍ର ଆବୃତ୍ତି କଲେ । ପ୍ରଥମରେ ସେମାନେ ସୂତ୍ରପିଟକର ବ୍ୟାଖ୍ୟା ସକାଶେ ଏକ ଲକ୍ଷ ଶ୍ଳୋକବିଶିଷ୍ଟ ଉପଦେଶ-ଶାସ୍ତ୍ର ପ୍ରଣୟନ କଲେ । ତତ୍ପରେ ବିନୟ ବ୍ୟାଖ୍ୟା ସକାଶେ ଏକଲକ୍ଷ ଶ୍ଳୋକବିଶିଷ୍ଟ ବିନୟ ବିଭାଷା ଶାସ୍ତ୍ର ଓ ତତ୍‌ସଂଖ୍ୟକ ଶ୍ଳୋକବିଶିଷ୍ଟ ଅଭିଧର୍ମ ବିଭାଷା ଶାସ୍ତ୍ର ରଚନା କଲେ । ଏହି ପ୍ରକାରେ ସେମାନେ ୯୬୦ ସହସ୍ର ଶବ୍ଦବିଶିଷ୍ଟ ତିନି ଲକ୍ଷ ଶ୍ଳୋକ ରଚନା କରିଥିଲେ ।

ଏହି ସମସ୍ତ ଶାସ୍ତ୍ରକୁ ତାମ୍ରଫଳକରେ ଖୋଦିତ କରିବା ପାଇଁ ରାଜା ଆଦେଶ ପ୍ରଦାନ କଲେ । ଏହି ତାମ୍ରଫଳକସମୂହ ଏକ ପ୍ରସ୍ତରାଧାରରେ ରକ୍ଷିତ ହୋଇ ତାହାର ମୁଖ ମୁଦ୍ରିତ ହେଲା । ତତ୍ପରେ ରାଜା ଏକ ବୃହତ୍ ସ୍ତୂପ ନିର୍ମାଣ କରାଇ ତନ୍ମଧ୍ୟରେ ଉକ୍ତ

ପ୍ରସ୍ତରାଧାର ସ୍ଥାପନ କଲେ ଓ ତାହାର ରକ୍ଷଣାବେକ୍ଷଣ ସକାଶେ ଯକ୍ଷମାନଙ୍କୁ ନିଯୁକ୍ତ କଲେ । ନିଗୂଢ଼ ତତ୍ତ୍ୱୋପରି ଉପର୍ଯ୍ୟୁପରି ଯେଉଁ ଆଲୋକ ନିପତିତ ହେବାକୁ ଲାଗିଲା, ତାହା ଏହି ଶୁଭକର୍ମର ପରିଣାମ ବୋଲିବାକୁ ହେବ ।

ହୁଏନ୍‌ସାଂ ଏହି ସ୍ଥାନରେ ଦୁଇ ବର୍ଷକାଳ ଅବସ୍ଥାନ କଲେ । ସୂତ୍ର ଓ ଶାସ୍ତ୍ରାଧ୍ୟୟନ ସମାପ୍ତ କରି ପୁଣ୍ୟକ୍ଷେତ୍ରମାନ ପରିଦର୍ଶନ-ପୂର୍ବକ ବିଦାୟ ଗ୍ରହଣ କଲେ । ତତ୍ପରେ ସାତ ଶତ ଲି ଦକ୍ଷିଣ-ପଶ୍ଚିମ ଦିଗରେ ପର୍ବତ ଓ ନଦୀ ଅତିକ୍ରମ କରି ପୁନାଚ (ପୁନ୍-ନୁ-ସୋ) ଦେଶରେ ଉପସ୍ଥିତ ହେଲେ । ସେଠାରୁ ଚାରି ଶତ ଲି ପୂର୍ବକୁ ରାଜପୁରୀରେ (ହୋ-ଲୋ-ଶି-ପୁ-ଲୋ) ଓ ପୁନଶ୍ଚ ସେଠାରୁ ସାତ ଶତ ଲି ଦକ୍ଷିଣ-ପୂର୍ବକୁ ବହୁସଂଖ୍ୟକ ପର୍ବତ ଓ ନଦୀ ଲଙ୍ଘନ କରି ଟକ୍କ (ଶେ-କ୍ୟ) ଦେଶରେ ପ୍ରବିଷ୍ଟ ହେଲେ ।

ଲନ୍-ପୋ (ଲଙ୍ଘନ) ଓ ଏହି ଦେଶ ମଧ୍ୟବର୍ତ୍ତୀ ସ୍ଥାନର ଅଧିବାସୀମାନେ କନ୍ୟ ଜାତୀୟ ଓ ଉଗ୍ରସ୍ୱଭାବବିଶିଷ୍ଟ ଥିଲେ ଏବଂ ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳର ଅଧିବାସୀମାନଙ୍କଠାରୁ ସେମାନଙ୍କର ରୀତିନୀତି, ବେଶଭୂଷା ଓ ଭାଷା ସ୍ୱତନ୍ତ୍ର ଥିଲା ।

ରାଜପୁରୀ ପରିତ୍ୟାଗ କରି ଦୁଇ ଦିନ ଉତ୍ତାରେ ସେ ଚନ୍ଦ୍ରଭାଗା ନଦୀ ଅତିକ୍ରମ କଲେ ଓ ଜୟପୁର (ଚେ-ୟେ-ପୁ-ଲୋ) ନଗରରେ ଉପସ୍ଥିତ ହୋଇ ଧର୍ମବିଦ୍ରୋହାଚାରୀମାନଙ୍କ ଅଧିକୃତ ଏକ ମନ୍ଦିରରେ ରାତ୍ରି ଯାପନ କଲେ । ଏହି ମନ୍ଦିର ନଗରର ପଶ୍ଚିମ ଦ୍ୱାରରେ ଅବସ୍ଥିତ ଥିଲା ଏବଂ ତନ୍ମଧ୍ୟରେ କୋଡିଏ ଜଣ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଉକ୍ତ ସ୍ଥାନ ପରିତ୍ୟାଗ କରି ଦ୍ୱିତୀୟ ଦିବସରେ ସେ ସାକଲ (ଚେ-କା-ଲୋ) ନଗରରେ ଉପସ୍ଥିତ ହେଲେ । ସାକଲରେ

ଏକ ସଙ୍ଘାରାମ ଥିଲା ଓ ତନ୍ମଧ୍ୟରେ ଏକ ଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ପୂର୍ବକାଳରେ ଏହିଠାରେ ବସୁବନ୍ଧୁ ବୋଧିସତ୍ତ୍ୱ ଶିଂ-ଇ-ତୈ-ଲୁନ୍ ଶାସ୍ତ୍ର ପ୍ରଣୟନ କରିଥିଲେ । ଏହି ମନ୍ଦିର ସନ୍ନିକଟରେ ଦୁଇ ଶତ ଫୁଟ ଉଚ୍ଚ ଏକ ସ୍ତୂପ ନିର୍ମିତ ହୋଇଥିଲା ଏବଂ ଏହିଠାରେ ବୁଦ୍ଧଚତୁଷ୍ଟୟ ପୂର୍ବକାଳରେ ସେମାନଙ୍କ ନୀତି ପ୍ରଚାର କରିଥିଲେ ଓ ଏହାର ଚତୁଃପାର୍ଶ୍ୱରେ ବିଚରଣ କରି ସ୍ୱୀୟ ପଦଚିହ୍ନ ରଖିଯାଇଥିଲେ । ଉକ୍ତ ପଦଚିହ୍ନ ଅଦ୍ୟାପି ବିଦ୍ୟମାନ ଅଛି ।

---

## ଦସ୍ୟୁମାନଙ୍କଦ୍ୱାରା ଅତ୍ୟାଚାର

ଏହି ସ୍ଥାନ ପରିତ୍ୟାଗ କରି ହୁଏନ୍‌ସାଂ ନରସିଂହ (ନ-ଲ୍-ସ-ହି) ନଗରର ପୂର୍ବପାର୍ଶ୍ୱସ୍ଥ ଏକ ପଲାଶ ( ପୋ-ଲୋ-ଚେ ) ବନରେ ପ୍ରବିଷ୍ଟ ହେଲେ । ଏହି ବନରେ ପଚାଶ ଜଣ ଦସ୍ୟୁଙ୍କ ସହିତ ତାହାଙ୍କର ସାକ୍ଷାତ୍ ହେଲା । ଏହି ଦସ୍ୟୁମାନେ ହୁଏନ୍‌ସାଂ ଓ ତାଙ୍କ ସହଯାତ୍ରୀଙ୍କ ସମସ୍ତ ପଦାର୍ଥ ଲୁଣ୍ଠନ କରି ସେମାନଙ୍କୁ ହତ୍ୟା କରିବା ଅଭିଳାଷେ ତରବାରିହସ୍ତରେ ସେମାନଙ୍କର ଅନୁସରଣ କଲେ ଓ ଏକ ଜଳମୟ ଭୂମି ନିକଟରେ ଉପସ୍ଥିତ ହେଲେ । ସେହି ସମୟରେ ତହିଁରୁ ଜଳ ପ୍ରାୟ ଶୁଷ୍କ ହୋଇଯାଇଥିଲା ଓ କଣ୍ଟକମୟ ଘନ-ସନ୍ନିବିଷ୍ଟ ଲତାଗୁଳ୍ମରେ ଆବୃତ ହୋଇଥିଲା । ଏହି ଭୂମିର ଅପର ପାର୍ଶ୍ୱର ଦକ୍ଷିଣରେ ଗଭୀର ଓ ବିସ୍ତୃତ ଜଳପ୍ରବାହ ସେମାନଙ୍କର ଦୃଷ୍ଟିଗୋଚର ହେଲା । ଏହି ଜଳପ୍ରବାହ ଅତିକ୍ରମ କରି ସେମାନେ ଦ୍ରୁତବେଗରେ ଧାବମାନ ହେଲେ ଓ ଭୂମିକର୍ଷଣ-ନିରତ ଜଣେ ବ୍ରାହ୍ମଣକୁ ଦେଖିଲେ । ବ୍ରାହ୍ମଣ ସେମାନଙ୍କଠାରୁ ଦସ୍ୟୁମାନଙ୍କ ବିଷୟ

ଶ୍ରବଣ କରି ଭୟରେ କମ୍ପିତ ହେବାକୁ ଲାଗିଲା । ତତ୍‌କ୍ଷଣାତ୍ ଭୂମି-କର୍ଷଣ ତ୍ୟାଗ କରି ସେ ହୁଏନ୍‌ସାଂଙ୍କ ସହିତ ଗ୍ରାମ ମଧ୍ୟକୁ ଗମନ କଲା ଏବଂ ଶଙ୍ଖ ଓ ଢକ୍କା ବାଦନଦ୍ୱାରା ଗ୍ରାମବାସୀଙ୍କୁ ଆହ୍ୱାନ କଲା । ତନ୍ମୁହୂର୍ତ୍ତରେ ପ୍ରାୟ ଅଶୀ ଜଣ ଲୋକ ଅସ୍ତ୍ରଶସ୍ତ୍ରହସ୍ତରେ ସମବେତ ହୋଇ ଦସ୍ୟୁମାନଙ୍କ ଅନ୍ୱେଷଣରେ ବହିର୍ଗତ ହେଲେ । ଦସ୍ୟୁମାନେ ସେମାନଙ୍କୁ ଦେଖି ପଳାୟନ କଲେ ଓ ବନ ମଧ୍ୟରେ ପ୍ରବିଷ୍ଟ ହେଲେ ।

ହୁଏନ୍‌ସାଂ ଜଳମୟ ଭୂମି ଆଡ଼କୁ ଗମନ କରି ଦେଖିଲେ ଯେ, କେତେଗୁଡ଼ିଏ ଲୋକ ହସ୍ତପଦବଦ୍ଧ ହୋଇ ପଡ଼ିଅଛନ୍ତି । ସେ ସେମାନଙ୍କ ବନ୍ଧନ ମୁକ୍ତ କଲେ । ତତ୍ପରେ ଗ୍ରାମବାସୀମାନେ ସେମାନଙ୍କୁ ଗ୍ରାମ ମଧ୍ୟକୁ ଘେନିଗଲେ ।

ସେମାନେ କରୁଣସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ; କିନ୍ତୁ ସମସ୍ତଙ୍କ ମଧ୍ୟରେ କେବଳ ହୁଏନ୍‌ସାଂ ଆନନ୍ଦିତ ମନରେ ମୃଦୁ ହାସ୍ୟ କଲେ । ତାହା ଦେଖି ତାହାଙ୍କ ସହଯାତ୍ରୀମାନେ ତାହାଙ୍କୁ କହିଲେ, "ଦସ୍ୟୁମାନେ ଆମ୍ଭମାନଙ୍କ ପରିଧେୟ ବସ୍ତ୍ରାଦି ସମସ୍ତ ଦ୍ରବ୍ୟ ଲୁଣ୍ଠନ କରି ନେଇଯାଇଅଛନ୍ତି, ଆମ୍ଭମାନଙ୍କର କେବଳ ପ୍ରାଣରକ୍ଷା ହୋଇଅଛି । ଏହି ଅବସ୍ଥାରେ ଆମ୍ଭେମାନେ ବିପଦର ଚରମ ସୀମାରେ ଉପନୀତ ହୋଇଅଛୁଁ । ଆମ୍ଭେମାନେ ବନର ଘଟଣାବଳୀ ସ୍ମରଣ କରି ଦୁଃଖରେ ଅଭିଭୂତ ହୋଇଅଛୁଁ; କିନ୍ତୁ କି ଆଶ୍ଚର୍ଯ୍ୟର ବିଷୟ, ଆପଣ ଆମ୍ଭମାନଙ୍କ ସହିତ ଦୁଃଖଭାଗୀ ହେବା ପରିବର୍ତ୍ତିରେ ଆପଣଙ୍କ ମୁଖରେ ହାସ୍ୟ ଦେଖାଯାଉଛି । ଏହାର କାରଣ ଆମ୍ଭେମାନେ ବୁଝିବାକୁ ଅକ୍ଷମ ।" ହୁଏନ୍‌ସାଂ ଉତ୍ତର କଲେ, "ପ୍ରାଣୀର ସର୍ବଶ୍ରେଷ୍ଠ ଧନ ତାହାର ଜୀବନ । ଯଦି ଜୀବନ ନିରାପଦ ହେଲା, ତାହାହେଲେ ଅବଶିଷ୍ଟ ଦ୍ରବ୍ୟ ସକାଶେ ଚିନ୍ତା କଅଣ ? ଆମ୍ଭ ଦେଶର ଧର୍ମଗ୍ରନ୍ଥାଦିରେ

ଲେଖାଅଛି ଯେ, ଜୀବନ ସ୍ୱର୍ଗ ଓ ମର୍ତ୍ତ୍ୟର ଶ୍ରେଷ୍ଠ ସମ୍ପତ୍ତି । ଜୀବନ ଥିବାଯାଏଁ ସେହି ସମ୍ପତ୍ତିକୁ ଅତି ମୂଲ୍ୟବାନ୍ ମଣିବାକୁ ହେବ । ସାମାନ୍ୟ ଖଣ୍ଡକେତେ ବସ୍ତୁ ପାଇଁ ଏତେ ଚିନ୍ତା କାହିଁକି ?" ଏଥିରୁ ତାହାଙ୍କ ସହଯାତ୍ରୀମାନେ ବୁଝିଲେ ଯେ, ହୁଏନ୍‌ସାଂଙ୍କ ହୃଦୟ ଉଚ୍ଛ୍ୱଳ ତରଙ୍ଗବକ୍ଷବିକ୍ଷୁବ୍ଧ ସ୍ୱଚ୍ଛ ନଦୀଜଳ ତୁଲ୍ୟ ପ୍ରଶାନ୍ତ ଓ ନିର୍ମ୍ମଳ

---

## ଚେକ-ରାଜ୍ୟରେ ପ୍ରବେଶ

ଏହାର ପରଦିନ ସେ ଟକ୍କ (ଚେ-କ) ରାଜ୍ୟର ପୂର୍ବ ସୀମାନ୍ତ ଦେଇ ଏକ ବୃହତ୍ ନଗରରେ ପ୍ରବିଷ୍ଟ ହେଲେ । ନଗରର ପଶ୍ଚିମ ଓ ସଡ଼କର ଉତ୍ତର ପାର୍ଶ୍ୱରେ ଆମ୍ରଡ଼ା ବୃକ୍ଷପୂର୍ଣ୍ଣ ଏକ ବନ ଥିଲା । ଏହି ବନରେ ଜଣେ ବ୍ରାହ୍ମଣ ବାସ କରୁଥିଲେ । ତାହାଙ୍କର ବୟସ ସାତ ଶତ ବର୍ଷ ହୋଇଥିଲା; (କେହି କେହି କହନ୍ତି ୧୬୦ ବର୍ଷ); କିନ୍ତୁ ରୂପ ଦେଖିଲେ ତାହାଙ୍କୁ ତିରିଶ ବର୍ଷରୁ ଅଧିକ ବୟସ ହୋଇଥିବ ବୋଲି ବୋଧ ହେଉ ନ ଥିଲା । ଆକାର ଓ ରୂପ ଅତ୍ୟନ୍ତ କମନୀୟ । ତାହାଙ୍କ ଧୀଶକ୍ତି ଦେବତୁଲ୍ୟ ଏବଂ ତର୍କଶକ୍ତି ଅସାଧାରଣ ଥିଲା । ସେ ପ୍ରାଣ୍ୟମୂଳ (ଚଂ) ଓ ଶତ ଶାସ୍ତ୍ର (ପିଃ) ସମ୍ପୂର୍ଣ୍ଣରୂପେ ଗବେଷଣା କରିଥିଲେ ଏବଂ ବେଦ ଓ ବେଦାଙ୍ଗ ପ୍ରଭୃତିରେ ଅତ୍ୟନ୍ତ ପାରଦର୍ଶିତା ଲାଭ କରିଥିଲେ । ତାହାଙ୍କର ଦୁଇ ଜଣ ଶିଷ୍ୟ ଥିଲେ । ସେମାନଙ୍କର ବୟସ ପ୍ରାୟ ଏକାଶତ ଥିଲା । ସେ ହୁଏନ୍‌ସାଂଙ୍କ ଦର୍ଶନ ଲାଭ କରି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ତାହାଙ୍କର ଯଥେଷ୍ଟ ସତ୍କାର କଲେ । ଯେତେବେଳେ ସେ ଦସ୍ୟୁମାନଙ୍କ ବିଷୟ ଅବଗତ ହେଲେ, ତାହାଙ୍କ ଆହାରର ବ୍ୟବସ୍ଥା କରିବା ନିମିତ୍ତ ଉକ୍ତ ନଗରର ବୌଦ୍ଧଧର୍ମ୍ମାବଲମ୍ବୀ ଅଧିବାସୀମାନଙ୍କୁ ଜଣାଇଦେବା ସକାଶେ ତାହାଙ୍କର ଏକ ଭୃତ୍ୟକୁ ପ୍ରେରଣ କଲେ ।

ଏହି ନଗରରେ ସାତ ସହସ୍ର ବାସଗୃହ ଥିଲା । ଅଧିବାସୀଙ୍କ ମଧ୍ୟରେ ଅତ୍ୟଳ୍ପସଂଖ୍ୟକ ବୌଦ୍ଧ ଧର୍ମାବଲମ୍ବୀ ଓ ଅଧିକାଂଶ ଧର୍ମବିରୋଧୀ ଥିଲେ ।

କାଶ୍ମୀରରେ ଅବସ୍ଥାନ କାଳରେ ହୁଏନ୍‌ସାଂଙ୍କ କୀର୍ତ୍ତି ଚତୁର୍ଦ୍ଦିଗରେ ବିଘୋଷିତ ହୋଇଥିଲା । ପ୍ରତିବେଶୀ ଦେଶସମୂହର ଅଧିବାସିଗଣ ସମସ୍ତେ ତାହାଙ୍କ ବିଷୟ ଅବଗତ ହୋଇଥିଲେ । ଉପର୍ଯ୍ୟୁକ୍ତ ବ୍ରାହ୍ମଣଙ୍କ ଭୃତ୍ୟ ପାର୍ଶ୍ୱବର୍ତ୍ତୀ ନଗରରେ ଉପସ୍ଥିତ ହୋଇ ତହିଁର ଅଧିବାସୀମାନଙ୍କୁ କହିଲା, "ଚୀନ ଦେଶୀୟ ଧର୍ମାର୍ଥୀ ଆମ୍ଭମାନଙ୍କ ଦେଶକୁ ଆସିଅଛନ୍ତି । ଦସ୍ୟୁମାନେ ତାହାଙ୍କ ବସ୍ତ୍ରାଦି ସମସ୍ତ ଦ୍ରବ୍ୟ ଅପହରଣ କରି ନେଇଅଛନ୍ତି । ଆପଣମାନେ ବୁଝନ୍ତୁ ଯେ, ଆପଣମାନଙ୍କ ପକ୍ଷରେ ଧର୍ମାର୍ଜ୍ଜନର ଏହା ହିଁ ଅପୂର୍ବ ସୁଯୋଗ ।"

ଏହାର ଫଳରେ ଉକ୍ତ ନଗରରୁ ବିରୁଦ୍ଧ ଧର୍ମାବଲମ୍ବୀସମୂହ ଦୂରୀଭୂତ ହେଲା ଓ ଉକ୍ତ ବିଷୟ ଶ୍ରବଣ କରି ପ୍ରାୟ ତିନି ଶତ ଖ୍ୟାତନାମା ଲୋକ ସମବେତ ହେଲେ ଓ ବହୁ ପରିମିତ ବସ୍ତ୍ର, ଖାଦ୍ୟ, ପେୟ ବିନୀତ ଭାବରେ ତାହାଙ୍କୁ ସମର୍ପଣ କଲେ । ହୁଏନ୍‌ସାଂ ସେ ସମସ୍ତ ଉପରେ କେତେକ ମନ୍ତ୍ର ଉଚ୍ଚାରଣପୂର୍ବକ ମନୁଷ୍ୟର ଉପସ୍ଥିତ କାର୍ଯ୍ୟାବଳୀର ପରିଣାମ ସ୍ୱରୂପ ପୁରସ୍କାର ଓ ଦଣ୍ଡର ତତ୍ତ୍ୱ ସମ୍ବନ୍ଧରେ କହିବାକୁ ଲାଗିଲେ । ଏହା ଶ୍ରବଣ କରି ସମାଗତ ସମସ୍ତେ ସତ୍ୟ ସମ୍ବନ୍ଧରେ ଜ୍ଞାନ ଲାଭ କଲେ ଓ ଭ୍ରାନ୍ତ ଧାରଣାସମୂହ ପରିତ୍ୟାଗ କରି ପ୍ରକୃତ ମାର୍ଗ ଅବଲମ୍ବନ କଲେ । ଏହି ପ୍ରକାରରେ ସେମାନେ ହର୍ଷୋତ୍‌ଫୁଲ୍ଲ ହୃଦୟରେ ଓ ସଦାଳାପରେ ତାହାଙ୍କ ସାହଚର୍ଯ୍ୟରେ କତିପୟ ଦିବସ ଅତିବାହିତ କରି ତାହାଙ୍କଠାରୁ ବିଦାୟ ଗ୍ରହଣ କଲେ ।

ଏହି ବସ୍ତୁମୂକର ବ୍ୟାପାର ଦର୍ଶନରେ ବୃଦ୍ଧ ବାହ୍ମଣ ଅତ୍ୟନ୍ତ ଆନନ୍ଦିତ ହେଲେ । ଇତିମଧ୍ୟରେ ହୁଏନ୍‌ସାଂ ଉକ୍ତ ସ୍ଥାନରେ ପ୍ରାପ୍ତ ବସ୍ତ୍ରଗୁଡିକ ତାହାଙ୍କ ସହଯାତ୍ରୀମାନଙ୍କ ମଧ୍ୟରେ ବଣ୍ଟନ କଲେ । ସେମାନେ ପ୍ରତ୍ୟେକେ ସେମାନଙ୍କ ପ୍ରୟୋଜନୀୟ ପରିଚ୍ଛଦ ପ୍ରସ୍ତୁତ କରାଇଲେ ଓ ଅବଶିଷ୍ଟାଂଶରୁ ପାଞ୍ଚଖଣ୍ଡ ଉକ୍ତ ବ୍ରାହ୍ମଣଙ୍କୁ ପ୍ରଦାନ କଲେ । ଏହି ସ୍ଥାନରେ ସେ ଏକ ମାସ କାଳ ଅବସ୍ଥାନ କରି ସୂତ୍ରସମୂହ, ଶତଶାସ୍ତ୍ର (ପେଃ-ଲୁନ୍) ଓ ଶତଶାସ୍ତ୍ର ବୈପୁଲ୍ୟ ଗ୍ରନ୍ଥ ଅଧ୍ୟୟନ କଲେ । ନାଗାର୍ଜୁନଙ୍କ ଶିଷ୍ୟ ଦେବ ବୋଧିସତ୍ତ୍ୱ ଏ ସମସ୍ତ ଗ୍ରନ୍ଥର ପ୍ରଣେତା । ଗୁରୁଙ୍କଠାରୁ ପ୍ରକୃତ ତତ୍ତ୍ୱ ଶିକ୍ଷା କରି, ସେ ପ୍ରାଞ୍ଜଳ ଭାବରେ ସେସବୁର ବ୍ୟାଖ୍ୟା କରିଥିଲେ ।

---

## ଭୁକ୍ଷେଷଣ ମଠରେ ଅବସ୍ଥାନ

ଏହିଠାରୁ ପାଞ୍ଚ ଶତ ଲି ପୂର୍ବକୁ ଯାଇ ସେ ଚିନାପତି (ଚି-ନା-ପୋ-ତାଇ) ରାଜ୍ୟରେ ପ୍ରବିଷ୍ଟ ହେଲେ ଓ ଭୁକ୍ଷେଷଣ ନାମକ ମଠରେ ଅବସ୍ଥାନ କଲେ । ଏହି ମଠରେ ବନୀତ-ପ୍ରଭ (ପି-ନି-ତ-ପୋ-ଲ-ପୋ) ନାମକ ଜଣେ ଖ୍ୟାତନାମା ସନ୍ନ୍ୟାସୀ ବାସ କରୁଥିଲେ । ସେ ନୈପିଠକ ଆୟତ୍ତ କରିଥିଲେ ବୋଲି ଅଶେଷ ଖ୍ୟାତି ଅର୍ଜନ କରିଥିଲେ । ସେ ନିଜେ 'ପଞ୍ଚସ୍କନ୍ଧ ଶାସ୍ତ୍ର' ଓ 'ବିଦ୍ୟା ମାତ୍ର ସିଦ୍ଧି ବିଦଶ ଶାସ୍ତ୍ର'ର ଭାଷ୍ୟ ରଚନା କରିଥିଲେ । ଏହି କାରଣରୁ ହୁଏନସାଂ ଏଠାରେ ଚଉଦ ମାସ କାଳ ଅବସ୍ଥାନ କରି 'ଅଭିଧର୍ମ ଶାସ୍ତ୍ର', 'ଅଭିଧର୍ମ ପ୍ରକରଣ', 'ଶାସନ ଶାସ୍ତ୍ର', 'ନ୍ୟାୟଦ୍ୱାର ତାରକ ଶାସ୍ତ୍ର' ଓ ଅନ୍ୟାନ୍ୟ ଗ୍ରନ୍ଥ ଅଧ୍ୟୟନ କଲେ ।

ଏହି ସ୍ଥାନର ପଶ୍ଚିମ ଲି ଦକ୍ଷିଣ-ପୂର୍ବରେ ତାମସବନ ନାମକ ସଂଘାରାମ ବିଦ୍ୟମାନ ଥିଲା । ଏହିଠାରେ ସର୍ବାସ୍ତିବାଦୀ ମତାବଲମ୍ବୀ ତିନି ଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଭଦ୍ରକଳ୍ପର ସହସ୍ର ବୁଦ୍ଧ-ଦେବ ଓ ମାନବଙ୍କ ସହିତ ସେମାନଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ସକାଶେ ଏହିଠାରେ ସମବେତ ହେଉଥିଲେ । ତଥାଗତଙ୍କ ନିର୍ବାଣ-ପ୍ରାପ୍ତିର ତିନି ଶତ ବର୍ଷ ଉତ୍ତାରେ କାତ୍ୟାୟନ ଋଷି ଏହିଠାରେ ଜ୍ଞାନ ପ୍ରସ୍ଥାନ ଶାସ୍ତ୍ର ପ୍ରଣୟନ କରିଥିଲେ ।

ଏହିଠାରୁ ଏକ ଶତ ପଞ୍ଚାଶ କିମ୍ବା ଏକ ଶତ ପଞ୍ଚାଶ ଲି ଉତ୍ତର-ପୂର୍ବରେ ଜଳନ୍ଧର ରାଜ୍ୟ । ହୁଏନ୍‌ସାଂ ଏହିଠାରେ ପ୍ରବିଷ୍ଟ ହୋଇ ନଗରଧନ ମଠରେ ଉପସ୍ଥିତ ହେଲେ । ଏହି ମଠରେ ଚନ୍ଦ୍ରବର୍ମା ନାମକ ଜଣେ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେ ତ୍ରିପିଟକରେ ସମ୍ପୂର୍ଣ୍ଣ ଅଭିଜ୍ଞତା ଲାଭ କରିଥିଲେ । ଏହି କାରଣରୁ ହୁଏନ୍‌ସାଂ ଏଠାରେ ଚାରି ମାସ କାଳ ଅବସ୍ଥାନ କରି ପ୍ରକରଣ-ପାଦ-ବିଭାଷା ଶାସ୍ତ୍ର ଅଧ୍ୟୟନ କରିଥିଲେ ।

ଏହିଠାରୁ କ୍ରମେ ସେ ସାତ ଶତ ଲି ଦକ୍ଷିଣ-ପୂର୍ବ ଦିଗରେ ଉଚ୍ଚ ପର୍ବତସମୂହ ଲଙ୍ଘନ କରି କୁଲୁତ ରାଜ୍ୟରେ କୁଲୁତରୁ, ସାତ ଶତ ଲି ଦକ୍ଷିଣକୁ ଏକ ପର୍ବତଶ୍ରେଣୀ ଓ ନଦୀ ଲଙ୍ଘନ କରି ଶତଦ୍ରୁ ( ଶେ-ତୋ-ତୁ-ଲୁ ) ରାଜ୍ୟରେ, ସେହିଠାରୁ ଆଠ ଶତ ଲି ଦକ୍ଷିଣ-ପଶ୍ଚିମକୁ ପାର୍ଯ୍ୟାତ୍ରରେ ( ପା-ଲି-ୟେ-ତୋ-ଲୋ ) ଓ ପାର୍ଯ୍ୟାତ୍ରରୁ ପାଞ୍ଚ ଶତ ଲି ପୂର୍ବରେ ଅବସ୍ଥିତ ମଥୁରା ( ମୋ-ତୁ-ଲୋ ) ରାଜ୍ୟରେ ଉପନୀତ ହେଲେ ।

---

## ମଥୁରାରେ ପ୍ରବେଶ

ମଥୁରାରେ ଶାକ୍ୟ ତଥାଗତ ଓ ତାହାଙ୍କ ଶିଷ୍ୟ ସାରିପୁତ୍ର, ମୌଦ୍‌ଗଲ୍ୟାୟନ, ପୂର୍ଣ୍ଣମୈତ୍ରେୟୀଙ୍କ ପୁତ୍ର, ଉପାଲି, ଆନନ୍ଦ, ରାହୁଲ ଓ ମଞ୍ଜୁଶ୍ରୀଙ୍କ ଦେହାବଶେଷ ସ୍ତୂପସମୂହରେ ରକ୍ଷିତ ହୋଇଥିଲା । ପ୍ରତିବର୍ଷ ପର୍ବଦିବସରେ ଧର୍ମାର୍ଥୀ ଓ ସେମାନଙ୍କ ଶିଷ୍ୟଗଣ ବିଭିନ୍ନ ସ୍ତୂପ ନିକଟରେ ସମବେତ ହୋଇ ପୂଜା ପ୍ରଦାନ କରୁଥିଲେ । ଅଭିଧର୍ମ ମତାବଲମ୍ବିଗଣ ସାରିପୁତ୍ରଙ୍କୁ, ମାନସିକ ସ୍ଥୈର୍ଯ୍ୟବାଦିଗଣ ମୌଦ୍‌ଗଲ୍ୟାୟନଙ୍କୁ, ସୂତ୍ରାଧ୍ୟାୟୀଗଣ ପୂର୍ଣ୍ଣ ମୈତ୍ରେୟୀଙ୍କ ପୁତ୍ରଙ୍କୁ, ବିନୟବାଦିଗଣ ଉପାଲିଙ୍କୁ, ଭିକ୍ଷୁଣୀଗଣ ଆନନ୍ଦଙ୍କୁ, ଶ୍ରାମଣକଗଣ ରାହୁଲଙ୍କୁ ଓ ମହାଯାନ ମତାବଲମ୍ବିଗଣ ବୋଧିସତ୍ତ୍ୱଙ୍କୁ ପୂଜା କରୁଥିଲେ। ଏହି ନଗରର ପାଞ୍ଚ ଛଅ ଲି ପୂର୍ବରେ ଏକ ପାର୍ବତ୍ୟ ସଂଘାରାମ ଥିଲା । ତାହା ପୂଜ୍ୟପାଦ ଉପଗୁପ୍ତ ସ୍ଥାପନ କରିଥିଲେ । ତନ୍ମଧ୍ୟରେ ତାହାଙ୍କ ନଖ ଓ କେଶ ରକ୍ଷିତ ହୋଇଥିଲା । ଉକ୍ତ ସଂଘାରାମର ଉତ୍ତର ପାର୍ଶ୍ୱସ୍ଥ ପର୍ବତର ନିମ୍ନଦେଶରେ ଏକ ପ୍ରସ୍ତରାଳୟ ଥିଲା । ତାହାର ଉଚ୍ଚତା କୋଡ଼ିଏ ଫୁଟ ଓ ପ୍ରସ୍ଥ ତିରିଶ ଫୁଟ ଥିଲା । ତନ୍ମଧ୍ୟରେ ଚାରି ଇଞ୍ଚ ଦୀର୍ଘ କେତେଗୁଡ଼ିଏ ବଂଶଖଣ୍ଡ ସ୍ତୂପୀକୃତ ହୋଇ ରହିଥିଲା । ଭକ୍ତଭାଜନ ଉପଗୁପ୍ତ ଧର୍ମତତ୍ତ୍ୱ ପ୍ରଚାର କରି ଯେତେବେଳେ ଏକ ଦମ୍ପତିଙ୍କୁ ଅର୍ହତ ପଦ ପ୍ରାପ୍ତ କରାଇଥିଲେ, ତାହା ଉତ୍ତାରେ ଉକ୍ତ ପଦପ୍ରାପ୍ତ ପ୍ରତ୍ୟେକ ବ୍ୟକ୍ତି ସକାଶେ ତନ୍ମଧ୍ୟରେ ଏକ ଏକ ଖଣ୍ଡ ବଂଶ ନିକ୍ଷିପ୍ତ ହୋଇଥିଲା । ଅପରାପର ଲୋକେ ଏହି ଫଳ ପ୍ରାପ୍ତ ହୋଇଥିଲେ ହେଁ ସେମାନଙ୍କ ଦୀକ୍ଷାଗ୍ରହଣ ସମ୍ବନ୍ଧରେ କିଛି ଲିପିବଦ୍ଧ ହୋଇ ନାହିଁ ।

---

## ଗଙ୍ଗା ନଦୀ

ଏହିଠାରୁ ପାଞ୍ଚ ଶତ ଲି ଉତ୍ତର-ପୂର୍ବରେ ସ୍ଥାନେଶ୍ୱର (ସ-ତ-ନ-ଷି-ଫୋ-ଲୋ) ଓ ଆହୁରି ପ୍ରାୟ ଚାରି ଶତ ଲି ପୂର୍ବରେ ଶ୍ରୁଘ୍ନ ଅବସ୍ଥିତ। ପୂର୍ବ କାଳରେ ଏହି ରାଜ୍ୟ ଗଙ୍ଗା ନଦୀକୂଳରେ ଅବସ୍ଥିତ ଥିଲା। ଉତ୍ତରରେ ଏକ ପର୍ବତଶ୍ରେଣୀ ଓ ମଧ୍ୟରେ ଯମୁନା ନଦୀ ପ୍ରବାହିତ ହେଉଥିଲା। ଏହି ନଦୀର ଆଠ ଶତ ଲି ପୂର୍ବରେ ଗଙ୍ଗା ନଦୀର ଉତ୍ପତ୍ତି ସ୍ଥାନ ବିଦ୍ୟମାନ। ଏହିଠାରେ ନଦୀର ପ୍ରସ୍ଥ ତିନି ଚାରି ଲି ଓ ଦକ୍ଷିଣ-ପୂର୍ବରେ ପ୍ରବାହିତ ହୋଇ ଯେଉଁ ସ୍ଥାନରେ ସମୁଦ୍ରରେ ପତିତ ହୋଇଅଛି, ସେହି ସ୍ଥାନର ପ୍ରସ୍ଥ ପ୍ରାୟ ଦଶ ଲି। ଏହାର ଜଳ ମଧୁର ଓ ସୂକ୍ଷ୍ମ ରେଣୁ ଜଳରେ ମିଳିତ ହୋଇ ରହିଥାଏ। ଭାରତ-ବର୍ଷର ଶାସ୍ତ୍ରସମୂହରେ ଗଙ୍ଗାନଦୀ ପୁଣ୍ୟତୋୟା ନାମରେ ଅଭିହିତା। ଏହି ନଦୀର ଜଳରେ ସ୍ନାନ କରି ଲୋକେ ପାପମୁକ୍ତ ହୁଅନ୍ତି ଓ ଏହାର ଜଳପାନ କରି ସର୍ବବିପଦରୁ ମୁକ୍ତି ଲାଭ କରନ୍ତି ଏବଂ ଦେହ ତ୍ୟାଗର ଅବ୍ୟବହିତ ପରେ ସ୍ୱର୍ଗରେ ଜନ୍ମଗ୍ରହଣ କରି ପରମ ସୁଖ ଭୋଗ କରନ୍ତି। ତେଣୁ ପୁରୁଷ ଓ ସ୍ତ୍ରୀ ସମସ୍ତେ ସର୍ବଦା ଏହାର କୂଳରେ ସମବେତ ହୁଅନ୍ତି; କିନ୍ତୁ ଏହା କେବଳ ସେ ଦେଶ ଲୋକଙ୍କ ଭ୍ରାନ୍ତ ବିଶ୍ୱାସ ଓ ସତ୍ୟର ଅପଳାପ ମାତ୍ର। ପରକାଳରେ ଯେତେବେଳେ ବୋଧିସତ୍ତ୍ୱ ଏ ବିଷୟରେ ପ୍ରକୃତ ସତ୍ୟର ବ୍ୟାଖ୍ୟାନ କରିଥିଲେ, ସେତେବେଳେ ଏହି ଭ୍ରାନ୍ତ ବିଶ୍ୱାସ ଲୋକଙ୍କ ମନରୁ ଦୂରୀଭୂତ ହୋଇଥିଲା।

ଏହିଠାରେ ଜୟଗୁପ୍ତ ନାମକ ଜଣେ ଖ୍ୟାତନାମା ଆଚାର୍ଯ୍ୟ ଅବସ୍ଥାନ କରୁଥିଲେ। ଜୟଗୁପ୍ତ ଉତ୍ତମରୂପେ ତ୍ରିପିଟକ ଅଧ୍ୟୟନ କରିଥିଲେ। ତେଣୁ ହୁଏନ୍‌ସାଂ ଏହିଠାରେ ଏକ ଶୀତ ଋତୁ ଓ

ତତ୍ପରବର୍ତ୍ତୀ ବସନ୍ତ ଋତୁର ଅର୍ଦ୍ଧେକ କାଳ ଅବସ୍ଥାନ କରି ତାହାଙ୍କଠାରୁ ସୌତ୍ରାନ୍ତିକ ମତାନୁଯାୟୀ ବିଭାଷାର ବ୍ୟାଖ୍ୟାନ ଶ୍ରବଣ କରିଥିଲେ । ତତ୍ପରେ ନଦୀର ପୂର୍ବକୂଳ ଅତିକ୍ରମ କରି ମତିପୁର ରାଜ୍ୟରେ ପଦାର୍ପଣ କଲେ ।

---

## ଗୁଣପ୍ରଭଙ୍କ ସଂଘାରାମ

ଏହି ଦେଶରେ ଜଣେ ଶୂଦ୍ର ଜାତୀୟ ରାଜା ରାଜତ୍ୱ କରୁଥିଲେ । ଏହିଠାରେ ଦଶଗୋଟି ସଂଘାରାମ ଥିଲା ଓ ତନ୍ମଧ୍ୟରେ ଆଠ ଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏମାନେ ସର୍ବାସ୍ତିବାଦୀ ମତାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ । ରାଜଧାନୀର ଚାରି ପାଞ୍ଚ ଲି ଦକ୍ଷିଣରେ ଏକ କ୍ଷୁଦ୍ର ସଂଘାରାମ ଥିଲା ଓ ତହିଁରେ ପଚାଶ ଜଣ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏହି ସ୍ଥାନରେ ଗୁଣପ୍ରଭ ପିନ୍‌ଚିନ୍ ପ୍ରଭୃତି ଏକ ଶତ ଶାସ୍ତ୍ର ପ୍ରଣୟନ କରିଥିଲେ । ଗୁଣପ୍ରଭ ପାର୍ବତ୍ୟ ରାଜ୍ୟାଧିବାସୀ ଓ ମହାଯାନାଧ୍ୟାୟୀ ଥିଲେ; କିନ୍ତୁ ପରେ ସେ ହୀନଯାନ ମତ ଗ୍ରହଣ କଲେ ।

ଏହି ସମୟରେ ଅର୍ହତ ଦେବସେନା ତୁଷିତ ସ୍ୱର୍ଗକୁ ଗମନ କରିଥିଲେ । ତତ୍ପରେ ଗୁଣପ୍ରଭ ତାଙ୍କର କେତେକ ସନ୍ଦେହ ମୋଚନାର୍ଥେ ମୈତ୍ରେୟଙ୍କ ସହ ସାକ୍ଷାତ୍ କରିବା ପାଇଁ ଇଚ୍ଛୁକ ହୋଇ ତାହାଙ୍କ ଆଧ୍ୟାତ୍ମିକ ଶକ୍ତିପ୍ରଭାବରେ ତାହାଙ୍କୁ ସ୍ୱର୍ଗକୁ ଘେନିଯିବା ନିମିତ୍ତ ଦେବସେନାଙ୍କୁ ଅନୁରୋଧ କଲେ । ତତ୍ପରେ ମୈତ୍ରେୟଙ୍କ ସାକ୍ଷାତ୍ ଲାଭ କରି ସେ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ ନ ହୋଇ କେବଳ ବଦ୍ଧାଞ୍ଜଳିରେ ତାହାଙ୍କୁ ପ୍ରଣାମ କଲେ । ସେ ମନେକଲେ, "ମୁଁ ଜଣେ ସନ୍ନ୍ୟାସୀ । ମୈତ୍ରେୟ ସାଧାରଣ ବ୍ୟକ୍ତି ହୋଇ ସୁଖଭୋଗ

କରୁଅଛନ୍ତି । ତାହାଙ୍କ ସମ୍ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ତାହାଙ୍କୁ ପୂଜା କରିବା ମୋ ପକ୍ଷରେ ଅବାଧେୟ ।" ସେ ତିନି ବାର ସ୍ୱର୍ଗକୁ ଗଲେ; କିନ୍ତୁ ତାହାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କଲେ ନାହିଁ । ସେ ଗର୍ବାନ୍ୱିତ ହେବାରୁ ତାଙ୍କ ସନ୍ଦେହ ମୋଚନାର୍ଥେ ଶାସ୍ତ୍ରବ୍ୟାଖ୍ୟାନ ହେଲି ନାହିଁ ।

ଗୁଣପ୍ରଭଙ୍କ ସଂଘାରାମର ତିନି ଲି ଦକ୍ଷିଣରେ ଆଉ ଏକ ସଂଘାରାମ ଥିଲା । ତହିଁରେ ଦୁଇ ଶତ ସନ୍ନ୍ୟାସୀ ବାସ କରି ହୀନଯାନ ଅଧ୍ୟୟନ କରୁଥିଲେ । ଏହି ସ୍ଥାନରେ ସର୍ବଶାସ୍ତ୍ରଜ୍ଞ ସଂଘଭଦ୍ର ତାଙ୍କର ସମସ୍ତ ଜୀବନ ଯାପନ କରିଥିଲେ । ସଂଘଭଦ୍ର ପ୍ରଥମରେ କାଶ୍ମୀରର ଅଧିବାସୀ ଥିଲେ । ସେ ସର୍ବଶାସ୍ତ୍ରରେ ନିପୁଣ ଓ ଧୀଶକ୍ତିସମ୍ପନ୍ନ ଥିଲେ । ସେ ସର୍ବାସ୍ତିବାଦୀ ମତାନୁଯାୟୀ ବିଭାଷା ସମ୍ପୂର୍ଣ୍ଣରୂପେ ଆୟତ୍ତ କରିଥିଲେ ।

---

## କୋଷକାରିକା ଶାସ୍ତ୍ର–ପ୍ରଣେତା ସଂଘଭଦ୍ର

ଏହି ସମୟରେ ବସୁବନ୍ଧୁ ବୋଧିସତ୍ତ୍ୱ ମଧ୍ୟ ଅଗାଧ ପାଣ୍ଡିତ୍ୟ ପାଇଁ ପ୍ରସିଦ୍ଧି ଲାଭ କରିଥିଲେ । ସେ ବିଭାଷାବାଦୀମାନଙ୍କ ମତ ଖଣ୍ଡନ ସଙ୍କାଶେ ଅଭିଧର୍ମ କୋଷଶାସ୍ତ୍ର ପ୍ରଣୟନ କରିଥିଲେ । ସେ ଅଖଣ୍ଡନୀୟ ଯୁକ୍ତି ଓ ଆଲଙ୍କାରିକ ଭାଷାରେ ପଣ୍ଡିମାଞ୍ଚଳସ୍ଥ ଶାସ୍ତ୍ରାଧ୍ୟାୟୀମାନଙ୍କୁ ଚମତ୍କୃତ କରିଦେଇଥିଲେ । ଭୂତପ୍ରେତାଦି ମଧ୍ୟ ସମସ୍ତେ ତାହାଙ୍କ ପ୍ରଦତ୍ତ ଶିକ୍ଷା ଗ୍ରହଣ କରୁଥିଲେ । ଯେଉଁଦିନଠାରୁ ସଂଘଭଦ୍ର ଶାସ୍ତ୍ର-ପ୍ରଣେତା ହୋଇ ଆବିର୍ଭୂତ ହେଲେ, ସେହିଦିନଠାରୁ ତାହାଙ୍କ ମନ ଉଚ୍ଚାକାଙ୍‌କ୍ଷାରେ ଅସ୍ଥିର ହୋଇଉଠିଲା ।

ଦ୍ୱାଦଶ ବର୍ଷକାଳ ବହୁଶାସ୍ତ୍ର ଅଧ୍ୟୟନ କରି ସେ କୋଷ ଛାରିକା ଶାସ୍ତ୍ର ପ୍ରଣୟନ କରିଥିଲେ । ତହିଁରେ ଆଠ ଲକ୍ଷ ଶବ୍ଦବିଶିଷ୍ଟ ପଚିଶ ହଜାର ଶ୍ଳୋକ ଥିଲା । ସେ ଏହି ଗ୍ରନ୍ଥ ସମାପ୍ତ କରି ବସୁବନ୍ଧୁଙ୍କ ପ୍ରଣୀତ ଶାସ୍ତ୍ରର ସତ୍ୟାସତ୍ୟ ସ୍ଥିର କରିବା ସକାଶେ ତାହାଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା କଲେ ; କିନ୍ତୁ ସେ ଏହି ଇଚ୍ଛା ପୂରଣ କରିବା ପୂର୍ବରୁ ଇହଲୀଳା ସମ୍ବରଣ କଲେ । ତାହାଙ୍କ ମୃତ୍ୟୁ ପରେ ବସୁବନ୍ଧୁ ଉକ୍ତ ଗ୍ରନ୍ଥ ପାଠ କରି ତହିଁରେ ସନ୍ନିବିଷ୍ଟ ଜ୍ଞାନଗର୍ଭ ବିଷୟଗୁଡ଼ିକର ଭୂୟସୀ ପ୍ରଶଂସା କଲେ ଓ କହିଲେ, "ଏହି ଗ୍ରନ୍ଥର ଭାବଗୁଡ଼ିକ ବିଭାଷା ଶାସ୍ତ୍ରାନ୍ତର୍ଗତ ଭାବଗୁଡ଼ିକଠାରୁ କୌଣସି ଅଂଶରେ ନିକୃଷ୍ଟ ନୁହେଁ । ଯାହା ହେଉ, ଏହାର ମୁଖ୍ୟ ତତ୍ତ୍ୱସମୂହ ମୋ ପ୍ରଣୀତ ଗ୍ରନ୍ଥ ସହି ସମ୍ପୂର୍ଣ୍ଣ ଏକମତ; ସୁତରାଂ ଏହା ନ୍ୟାୟାନୁସାରେ ଶାସ୍ତ୍ର ନାମରେ ଅଭିହିତ ହେବ ।" ତଦନୁସାରେ ଉକ୍ତ ଗ୍ରନ୍ଥର ନାମକରଣ ହେଲା ।

ସଙ୍ଘଭଦ୍ରଙ୍କ ତିରୋଧାନ ଉତ୍ତାରେ ଆମ୍ରତା ବନରେ ତାହାଙ୍କର ଏକ ସ୍ମାରକ-ସ୍ତୂପ ନିର୍ମିତ ହେଲା । ଅଦ୍ୟାପି ତାହା ବିଦ୍ୟମାନ ଅଛି । ଏହି ସ୍ତୂପ ସମୀପରେ ଆଚାର୍ଯ୍ୟ ବିମଲମିତ୍ରଙ୍କ ଦେହାବଶେଷ ଆଉ ଏକ ସ୍ତୂପରେ ରକ୍ଷିତ ହୋଇଥିଲା । ବିମଳ ମିତ୍ର କାଶ୍ମୀରର ଅଧିବାସୀ ଥିଲେ । ସେ ସର୍ବାସ୍ତିବାଦୀ ମତାବଲମ୍ବୀ ଥିଲେ ଓ ପଞ୍ଚଭାରତରେ ଭ୍ରମଣ କରି ବୈପିଟକ ଶାସ୍ତ୍ରରେ ଅଶେଷ ଅଭିଜ୍ଞତା ଅର୍ଜ୍ଜନ କରିଥିଲେ ।

ସେ ସ୍ୱୀୟ ଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ସଙ୍ଘଭଦ୍ରଙ୍କ ସ୍ତୂପ ଦର୍ଶନ କରି ତାହାଙ୍କ ତିରୋଧାନ ପୂର୍ବରୁ ତତ୍‌ପ୍ରଣୀତ ଶାସ୍ତ୍ର ପୂର୍ଣ୍ଣାଙ୍ଗପ୍ରାପ୍ତ ଓ ପ୍ରକାଶିତ ହୋଇ ପାରି ନ ଥିବା ଯୋଗୁଁ ଅତ୍ୟନ୍ତ ଦୁଃଖିତ ହୋଇଥିଲେ ଓ ଏହି ଭାବରେ ଏତେ ଅଭିଭୂତ ହେଲେ ଯେ, ମହାଯାନାନ୍ତର୍ଗତ ତତ୍ତ୍ୱସମୂହ ଖଣ୍ଡନ କରି ବସୁବନ୍ଧୁଙ୍କ ନାମ

ଏକାବେଳକେ ଲୁପ୍ତ ଓ ସଙ୍ଘଭଦ୍ରଙ୍କ କୀର୍ତ୍ତି ଚିରକାଳ ଅକ୍ଷୁଣ୍ଣ ରଖିବା ମକାଶେ ନିଜେ ଶାସ୍ତ୍ରସମୂହ ପ୍ରଣୟନ କରିବା ପାଇଁ ଶପଥ କଲେ ।

ଏହା ଉତ୍ତାରେ ତାହାଙ୍କର ମସ୍ତିଷ୍କବିକୃତି ଆରମ୍ଭ ହେଲା । ତାହାଙ୍କର ଅନ୍ତନାଳୀ ଓ ଜିହ୍ୱା ବହିର୍ଗତ ହୋଇ ପଡିଲା ଓ ଶରୀରର ସର୍ବାଂଶରୁ ରକ୍ତ ପ୍ରବାହିତ ହେବାକୁ ଲାଗିଲା । ସେ ଭାବିଲେ, ଏହି ପୀଡ଼ାମାନ ତାହାଙ୍କ ଧର୍ମବିରୁଦ୍ଧ ମତ ଯୋଗୁଁ ଉତ୍ପନ୍ନ ହୋଇଅଛି । ତତ୍ପରେ ସେ ତାହାଙ୍କ ପ୍ରଣୀତ ଗ୍ରନ୍ଥସମୂହ ଚିରିପକାଇଲେ ଓ ଗଭୀର ଅନୁତାପସହକାରେ ସେ ମହାଯାନାନ୍ତର୍ଗତ ତତ୍ତ୍ୱଗୁଡ଼ିକର ନିନ୍ଦାବାଦ ନ କରିବା ସକାଶେ ଶିଷ୍ୟମାନଙ୍କୁ ଉପଦେଶ ପ୍ରଦାନ କରି ପ୍ରାଣତ୍ୟାଗ କଲେ । ତାହାଙ୍କ ମୃତ ଦେହ ପତିତ ହେବା ସ୍ଥାନରେ ପୃଥିବୀ ସ୍ୱତଃ ବିଦୀର୍ଣ୍ଣ ହେଲା । ଅଦ୍ୟାପି ସେହି ସ୍ଥାନରେ ଏକ ଗହ୍ୱର ବିଦ୍ୟମାନ ଅଛି ।

ଏହି ସ୍ଥାନରେ ମିତ୍ରସେନ ନାମରେ ୯୦ ବର୍ଷ ବୟସ୍କ ଜଣେ ଖ୍ୟାତନାମା ଆଚାର୍ଯ୍ୟ ଥିଲେ । ସେ ଗୁଣପ୍ରଭାଚାର୍ଯ୍ୟଙ୍କ ଶିଷ୍ୟ ଥିଲେ ଓ ତ୍ରୈପିଟକ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିଲେ । ହୁଏନ୍‌ସାଂ ତାଙ୍କ ସହିତ ବସନ୍ତ ଋତୁର ଅର୍ଦ୍ଧେକ ଓ ତତ୍ପରବର୍ତ୍ତୀ ଗ୍ରୀଷ୍ମଋତୁ ଅତିବାହିତ କରି ତତ୍ତ୍ୱ ସତ୍ୟ, ଅଭିଧର୍ମଜ୍ଞାନ ପ୍ରସ୍ଥାନ ଓ ଅନ୍ୟାନ୍ୟ ଶାସ୍ତ୍ର ଅଧ୍ୟୟନ କଲେ ।

ଏହିଠାରୁ ତିନି ଶତ ଲି ଉତ୍ତରରେ ବ୍ରହ୍ମପୁର (ପୋ-ଲୋ-ହି-ମୋ-ପୁ-ଲ) ଓ ବ୍ରହ୍ମପୁରରୁ ଚାରି ଶତ ଲି ଦକ୍ଷିଣ-ପୂର୍ବରେ ଅହିଛତ୍ର (ହି-ଛ-ତ-ଲ ) ରାଜ୍ୟ ଅବସ୍ଥିତ । ପୁନଶ୍ଚ ଏହି ସ୍ଥାନରୁ ଦୁଇ ଶତ ଲି ଦକ୍ଷିଣକୁ ଗଙ୍ଗାନଦୀ ଅତିକ୍ରମ କରି ପୁଣି ଦକ୍ଷିଣ ପଶ୍ଚିମକୁ ଗଲେ ବୀରସନ ( ପି-ଲ-ନ-ନ ) ରାଜ୍ୟ ଓ ଏହି ସ୍ଥାନରୁ ଦୁଇ ଶତ ଲି ପୂର୍ବକୁ କପିଥ ( କ-ପି-ଥ ) ଦେଶ ଅବସ୍ଥିତ ଥିଲା ।

## କପିଥ ନିଃଶ୍ରେଣୀ

କପିଥରେ ୬୦ କି ପୂର୍ବରେ ଏକ ସଂଘାରାମ ଥିଲା । ତନ୍ମଧ୍ୟସ୍ଥ ପ୍ରାଙ୍ଗଣରେ ବହୁମୂଲ୍ୟ ବସ୍ତୁନିର୍ମିତ ତିନିଗୋଟି ଆରୋହଣୀ ପୂର୍ବମୁଖରେ ଉତ୍ତରରୁ ଦକ୍ଷିଣକୁ ଲମ୍ବମାନ ହୋଇ ରହିଥିଲା । ଏହି ଆରୋହଣୀଦ୍ୱାରା ବୁଦ୍ଧ ତର୍ଯ୍ୟସ୍ତ୍ରିଂଶ ନାମକ ସ୍ୱର୍ଗରୁ ଅବରୋହଣ କରି ତାହାଙ୍କ ଜନନୀ ମାୟା ଦେବୀଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ଉଦ୍ଦେଶ୍ୟରେ ଜମ୍ବୁଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ମଧ୍ୟବର୍ତ୍ତୀ ଆରୋହଣୀ ସ୍ୱର୍ଣ୍ଣରେ, ବାମପାର୍ଶ୍ୱସ୍ଥ ଆରୋହଣୀ ସ୍ଫଟିକରେ ଓ ଦକ୍ଷିଣ ପାର୍ଶ୍ୱସ୍ଥ ଆରୋହଣୀ ରୌପ୍ୟରେ ନିର୍ମିତ ହୋଇଥିଲା । ତଥାଗତ ସୁଧର୍ମା ସଭା ପରିତ୍ୟାଗ କରି ଦେବତାମାନଙ୍କ ସମଭିବ୍ୟାହାରରେ ମଧ୍ୟବର୍ତ୍ତୀ ଆରୋହଣୀଦ୍ୱାରା ଅବତରଣ କରିଥିଲେ । ମହା ବ୍ରହ୍ମ ଏକ ଶ୍ୱେତଚାମର ହସ୍ତରେ ଧାରଣ କରି ଦକ୍ଷିଣପାର୍ଶ୍ୱସ୍ଥ ରୌପ୍ୟ-ନିର୍ମିତ ଆରୋହଣୀଦ୍ୱାରା ଓ ଶକ୍ରଦେବ ବହୁମୂଲ୍ୟ ଛତ୍ର ହସ୍ତରେ ବାମପାର୍ଶ୍ୱସ୍ଥ ସ୍ଫଟିକାରୋହଣୀଦ୍ୱାରା ଅବତରଣ କରିଥିଲେ । ଏହି ସମୟରେ ଏକଲକ୍ଷ ଦେବତା ଓ ସମସ୍ତ ବୋଧିସତ୍ତ୍ୱ ତାହାଙ୍କ ସହିତ ଆଗମନ କରିଥିଲେ ।

ବହୁଶତାବ୍ଦୀ ପୂର୍ବେ ଏହି ଆରୋହଣୀଗୁଡିକ ପୂର୍ବାବସ୍ଥାରେ ବିଦ୍ୟମାନ ଥିଲା । ଅଧୁନା ତହିଁର ଅସ୍ତିତ୍ୱ ଲୋପ ହୋଇଅଛି । ପରବର୍ତ୍ତୀ କେତେକ ନରପତି ପ୍ରସ୍ତର ଓ ଇଷ୍ଟକରେ ଏହାର ଭିତ୍ତି ନିର୍ମାଣ କରିଥିଲେ ଓ ତଦୁପରି ୭୦ ଫୁଟ ଉଚ୍ଚ ଆରୋହଣୀ ନିର୍ମାଣ କରି ତାହା ବହୁବିଧ ରତ୍ନରେ ମଣ୍ଡନ କରିଥିଲେ । ପୁଣି ତଦୁପରି ଏକ ବିହାର ନିର୍ମାଣ କରି ବୁଦ୍ଧଙ୍କ ପ୍ରସ୍ତରମୂର୍ତ୍ତି ସ୍ଥାପନ କରିଥିଲେ । ମୂର୍ତ୍ତିର ଦକ୍ଷିଣ ଓ ବାମ ପାର୍ଶ୍ୱରେ ବ୍ରହ୍ମା ଓ ଶକ୍ରଙ୍କ ମୂର୍ତ୍ତି ସଂସ୍ଥାପିତ

ହୋଇଥିଲା । ମୂର୍ତ୍ତିଦ୍ୱୟ ଦେଖିବାକୁ ଅତ୍ୟନ୍ତ ଉଜ୍ଜ୍ୱଳ ଓ ମହିମାମୟ ବୋଧ ହେଉଥିଲା । ବୁଦ୍ଧଙ୍କ ମୂର୍ତ୍ତି ପାର୍ଶ୍ୱରେ ୭୦ ଫୁଟ ଉଚ୍ଚ ଏକ ପ୍ରସ୍ତର-ସ୍ତୂପ ଅଶୋକ ନରପତିଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହାର ନିକଟରେ ୭୦ ଫୁଟ ଦୀର୍ଘ ଓ ୭ ଫୁଟ ଉଚ୍ଚ ଏକ ଭିତ୍ତି ପ୍ରସ୍ତରରେ ନିର୍ମିତ ହୋଇଥିଲା । ଏହା ଉପରେ ବୁଦ୍ଧ ପୂର୍ବକାଳରେ ପାଦଚାରଣ କରୁଥିଲେ ।

---

## କାନ୍ୟକୁବ୍‌ଜରେ ପ୍ରବେଶ

ଏହାର ଦୁଇ ଶତ ଲି ଉତ୍ତର-ପଶ୍ଚିମରେ କାନ୍ୟକୁବ୍‌ଜ (କୁ-ନୋ-କଓ-ଶି-କ୍ୱୋ) ଅବସ୍ଥିତ । କନୌଜର ଆୟତନ ଚାରି ସହସ୍ର ଲି । ଏହାର ରାଜଧାନୀର ପଶ୍ଚିମରେ ଗଙ୍ଗା ନଦୀ ପ୍ରବାହିତ । ଏଠାରେ ଏହାର ଦୈର୍ଘ୍ୟ କୋଡ଼ିଏ ଲି ଓ ପ୍ରସ୍ଥ ଛଅ ଲି ।

ଏହି ସ୍ଥାନରେ ଏକଶତ ସଂଘାରାମ ଥିଲା ଓ ତହିଁରେ ଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସନ୍ନ୍ୟାସିଗଣ ସ୍ୱେଚ୍ଛାନୁସାରେ ମହାଯାନ ଓ ହୀନଯାନ ଅଧ୍ୟୟନ କରୁଥିଲେ ।

କନୌଜ-ନରପତି ବୈଶ୍ୟ ରାଜପୁତ ଜାତୀୟ ଥିଲେ । ତାହାଙ୍କ ନାମ ହର୍ଷବର୍ଦ୍ଧନ । ତାହାଙ୍କ ପିତାଙ୍କ ନାମ ପ୍ରଭାକର ବର୍ଦ୍ଧନ ଓ ଜ୍ୟେଷ୍ଠଭ୍ରାତାଙ୍କ ନାମ ରାଜ୍ୟବର୍ଦ୍ଧନ । ହର୍ଷବର୍ଦ୍ଧନ ଧର୍ମପରାୟଣ ଓ ସ୍ୱଦେଶ-ପ୍ରେମିକ ଥିଲେ । ତାହାଙ୍କର ସଦ୍‌ଗୁଣାବଳୀ ଗୀତରେ ସମସ୍ତେ ଗାୟନ କରୁଥିଲେ ।

ରାଜ୍ୟବର୍ଦ୍ଧନ ଯେତେବେଳେ ସିଂହାସନାରୂଢ ହେଲେ, ପୂର୍ବ-ଭାରତରେ ଅବସ୍ଥିତ କର୍ଣ୍ଣସୁବର୍ଣ୍ଣର ନରପତି ଶଶାଙ୍କରାଜ ତାହାଙ୍କ

ସାମରିକ ଦକ୍ଷତାରେ ଈର୍ଷାନ୍ୱିତ ହୋଇ ତାହାଙ୍କ ବିରୁଦ୍ଧରେ ଚକ୍ରାନ୍ତ କଲେ ଓ ପରିଶେଷରେ ତାହାଙ୍କୁ ହତ୍ୟା କଲେ । ତତ୍ପରେ ତାହାଙ୍କ ପ୍ରଧାନ ମନ୍ତ୍ରୀ ଭଣୀ ଓ ଅଧୀନ କର୍ମଚାରିଗଣ ରାଜ୍ୟର ଅନାଥାବସ୍ଥାରେ ବ୍ୟଥିତ ହୋଇ, ତାହାଙ୍କ କନିଷ୍ଠ ଭ୍ରାତା ଶୀଲାଦିତ୍ୟ ହର୍ଷବର୍ଦ୍ଧନଙ୍କୁ ସିଂହାସନରେ ଉପବେଶନ କରାଇବା ପାଇଁ ସଂକଳ୍ପ କଲେ । ସେମାନେ ହର୍ଷବର୍ଦ୍ଧନଙ୍କ ରାଜୋଚିତ ରୂପ, ଆଚରଣ ଓ ସାମରିକ ଦକ୍ଷତାରେ ପ୍ରୀତ ହୋଇଥିଲେ । ତାହାଙ୍କ ସଦ୍‌ଗୁଣାବଳୀ ସ୍ୱର୍ଗ ଓ ମର୍ତ୍ତ୍ୟରେ ବିଘୋଷିତ ହୋଇଥିଲା ଏବଂ ତାଙ୍କ ନ୍ୟାୟପରାୟଣତାରେ ଦେବ ଓ ମାନବ ସମସ୍ତେ ମୁଗ୍‌ଧ ହୋଇଥିଲେ । ସିଂହାସନାରୋହଣର ଅଳ୍ପ ଦିନର ଉତ୍ତାରେ ସେ ଭ୍ରାତୃହନ୍ତା ଓ ଶତ୍ରୁମାନଙ୍କର ସମୁଚିତ ଦଣ୍ଡ ବିଧାନ କରି ସମଗ୍ର ଭାରତବର୍ଷରେ ଏକାଧିପତ୍ୟ ସ୍ଥାପନ କରିବାରେ ସମର୍ଥ ହୋଇଥିଲେ । ତାହାଙ୍କ କୀର୍ତ୍ତି ଚତୁର୍ଦ୍ଦିଗରେ ଗୀତ ହେଉଥିଲା ଓ ପ୍ରଜାମାନେ ତାହାଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ତାହାଙ୍କ ସାମ୍ରାଜ୍ୟ ଦୃଢଭାବରେ ପ୍ରତିଷ୍ଠିତ ହେଲାରୁ ପ୍ରଜାଗଣ ଶାନ୍ତି ଓ ସୁଖରେ କାଳଯାପନ କଲେ ।

---

## ଶୀଲାଦିତ୍ୟ ହର୍ଷବର୍ଦ୍ଧନ

ଏହା ଉତ୍ତାରେ ସେ ସାମରିକ ଅଭିଯାନ ପ୍ରଭୃତି ପରିତ୍ୟାଗ କରି ଅସ୍ତ୍ରଶସ୍ତ୍ରଗୁଡିକ ଅସ୍ତ୍ରାଗାରରେ ନିକ୍ଷେପ କଲେ ଓ ଧର୍ମ୍ମମୟ ଜୀବନ ଯାପନ କରିବାକୁ ଲାଗିଲେ । ତାହାଙ୍କ ସାମ୍ରାଜ୍ୟରେ ଜୀବନ୍ତ ପ୍ରାଣୀଙ୍କ ହତ୍ୟା ନିବାରଣ କଲେ । ସେ ନିଜେ ଏକାବେଳକେ ଆମିଷାହାର ବର୍ଜ୍ଜନ କରି ପ୍ରଜାମାନଙ୍କ ମଧ୍ୟରେ ମାଂସାହାର ନିଷେଧାଜ୍ଞା ପ୍ରଚାର କଲେ । ସେ ଅନେକ ସ୍ଥାନରେ ସଂଘାରାମ ସ୍ଥାପନ କରିଥିଲେ ।

ପ୍ରତିବର୍ଷ ସେ ଏକବିଂଶ ଦିବସକାଳ ସାମ୍ରାଜ୍ୟସ୍ଥ ସମସ୍ତ ସନ୍ନ୍ୟାସୀଙ୍କୁ ଆହାର ପ୍ରଦାନ କରୁଥିଲେ । ପ୍ରତି ପାଞ୍ଚ ବର୍ଷରେ ସେ ମହାମୋକ୍ଷପରିଷଦ୍ ନାମକ ସଭା ଆହ୍ବାନ କରି ରାଜକୋଷସ୍ଥ ସମସ୍ତ ସଞ୍ଚିତ ଧନ ବିତରଣ କରୁଥିଲେ । ତାହାଙ୍କ ସଦ୍‌ଗୁଣାବଳୀ ବର୍ଣ୍ଣନା କଲେ ସୁଜାନଙ୍କ * ସଦ୍‌ଗୁଣାବଳୀର ପୁନରାବୃତ୍ତି ହେବ ।

କନୌଜର ରାଜଧାନୀର ଉତ୍ତର-ପଶ୍ଚିମ ପାର୍ଶ୍ବରେ ଦୁଇ ଶତ ଫୁଟ ଉଚ୍ଚ ଏକ ସ୍ତୂପ ଥିଲା । ଛଅ ମାଇଲ ଦକ୍ଷିଣ ପୂର୍ବକୁ ଗଙ୍ଗା ନଦୀ-କୂଳରେ ଦୁଇ ଶତ ଫୁଟ ଉଚ୍ଚ ଆଉ ଏକ ସ୍ତୂପ ଥିଲା । ଉଭୟ ସ୍ତୂପ ଅଶୋକ ନରପତିଙ୍କଦ୍ଵାରା ନିର୍ମିତ ହୋଇଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ସ୍ବଧର୍ମ ପ୍ରଚାର କରିଥିଲେ ।

କନୌଜରେ ପ୍ରବିଷ୍ଟ ହୋଇ ହୁଏନ୍‌ସାଂ ଭଦ୍ରବିହାର ନାମକ ମନ୍ଦିରରେ ଆଶ୍ରୟ ଗ୍ରହଣ କଲେ । ସେଠାରେ ସେ ତିନି ମାସକାଳ ଅବସ୍ଥାନ କରି ତ୍ରିପିଟକଙ୍କ ବୀର୍ଯ୍ୟସେନଙ୍କଠାରୁ ବୁଦ୍ଧଦାସ-ପ୍ରଣୀତ ବର୍ମ ବିଭୁଷା ବ୍ୟାକରଣ ଶାସ୍ତ୍ର ଅଧ୍ୟୟନ କଲେ ।

---

* ବିଶ୍ବାନ୍ତର ରାଜପୁତ୍ର ସୁଜାନଙ୍କ ଚରିତ ବେଶାନ୍ତର ଜାତକ ନାମକ ବୌଦ୍ଧଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ।

# ତୃତୀୟ ଖଣ୍ଡ

## ଅଯୋଧ୍ୟାରୁ ହିରଣ୍ୟ ପର୍ବତ-ଯାତ୍ରା

ଗଙ୍ଗାନଦୀ ଅତିକ୍ରମ କରି କନୌଜରୁ ଛଅ ଶତ ଲି ଦକ୍ଷିଣ-ପୂର୍ବକୁ ଗଲେ ନଦୀର ଦକ୍ଷିଣ ଦିଗରେ ଅଯୋଧ୍ୟା ରାଜ୍ୟ ଅବସ୍ଥିତ । ଏହିଠାରେ ପ୍ରାୟ ଏକଶତ ମଠ ଥିଲା ଓ ତହିଁରେ ବହୁ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ।

ଅଯୋଧ୍ୟାର ରାଜଧାନୀରେ ଏକ ପ୍ରାଚୀନ ସଂଘାରାମ ଥିଲା । ଏହି ସଂଘାରାମରେ ବୋଧିସତ୍ତ୍ୱ ବସୁବନ୍ଧୁ ହୀନଯାନ ଓ ମହାଯାନ ଭାଷ୍ୟ ପ୍ରଣୟନ କରି ମାନବ ସମାଜର ମଙ୍ଗଳାର୍ଥେ ପ୍ରଚାର କରିଥିଲେ ।

ନଗରର ଚାରି ପାଞ୍ଚ ଲି ଉତ୍ତର ପଶ୍ଚିମକୁ ଗଙ୍ଗା ନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ବୃହତ୍ ସଂଘାରାମ ଥିଲା ଓ ତନ୍ମଧ୍ୟରେ ଦୁଇ ଶତ ଫୁଟ ଉଚ୍ଚ ଏକ ସ୍ତୂପ ଥିଲା । ଏହା ଅଶୋକ ନରପତିଙ୍କଦ୍ୱାରା ନିର୍ମିତ ହୋଇଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ତିନି ମାସକାଳ ସ୍ୱ ଧର୍ମ ପ୍ରଚାର କରିଥିଲେ । ପୂର୍ବକାଳରେ ଏହି ସ୍ତୂପ ସମୀପରେ ବୁଦ୍ଧ-ଚତୁଷ୍ଟୟ ବ୍ୟାୟାମ କରୁଥିଲେ ।

ନଗରର ପାଞ୍ଚ ଛଅ ଲି ଦକ୍ଷିଣ-ପଶ୍ଚିମରେ ଏକ ପ୍ରାଚୀନ ସଂଘାରାମ ଥିଲା । ଏହିଠାରେ ଅସଂଘ ବୋଧିସତ୍ତ୍ୱ ଧର୍ମଶାସ୍ତ୍ର ବ୍ୟାଖ୍ୟାନ କରିଥିଲେ । ଅସଂଘ ବୋଧିସତ୍ତ୍ୱ ରାତିକାଳରେ ତୁଷିତ ସ୍ୱର୍ଗକୁ ଗମନ କରି ସେହିଠାରେ ମୈତ୍ରେୟ ବୋଧିସତ୍ତ୍ୱଙ୍କଠାରୁ ଯୋଗଶାସ୍ତ୍ର, ଅଳଙ୍କାର ମହାଯାନଶାସ୍ତ୍ର ଓ ମଧ୍ୟାନ୍ତ ବିଭଙ୍ଗଶାସ୍ତ୍ର ପ୍ରାପ୍ତ ହେଉଥିଲେ ଓ ପ୍ରାତଃକାଳରେ ସ୍ୱର୍ଗରୁ ଅବତରଣ କରି ମାନବ ସମାଜର ମଙ୍ଗଳାର୍ଥେ ସେ ସମସ୍ତ ପ୍ରଚାର କରୁଥିଲେ ।

ଅସଙ୍ଗ (ଉ-ଚ୍ଚୋ) ଗାନ୍ଧାର ଅଧିବାସୀ ଥିଲେ । ସେ ବୁଦ୍ଧଙ୍କ ନିର୍ବାଣ-ପ୍ରାପ୍ତିର ସହସ୍ର ବର୍ଷର ମଧ୍ୟଭାଗରେ ଜନ୍ମଗ୍ରହଣ କରିଥିଲେ ଓ ସେ ମହୀଶାସକ ସମ୍ପ୍ରଦାୟଭୁକ୍ତ ହୋଇଥିଲେ । ତତ୍ପରେ ସେ ମହାଯାନାବଲମ୍ବୀ ସମ୍ପ୍ରଦାୟରେ ଯୋଗଦାନ କରିଥିଲେ । ତାହାଙ୍କ ଭ୍ରାତା ବସୁବନ୍ଧୁ ସର୍ବାସ୍ତିବାଦୀ ସମ୍ପ୍ରଦାୟଭୁକ୍ତ ହୋଇ, ପରେ ମହାଯାନାବଲମ୍ବୀ ସମ୍ପ୍ରଦାୟଭୁକ୍ତ ହୋଇଥିଲେ । ଉଭୟ ଭ୍ରାତା ଅତ୍ୟନ୍ତ ମେଧାବୀ ଓ ଧର୍ମପରାୟଣ ଥିଲେ । ଅସଙ୍ଗଙ୍କ ରଚନାଶକ୍ତି ଅସାଧାରଣ ଥିଲା ଓ ସେ ମହାଯାନ ଭାଷ୍ୟ ପ୍ରଭୃତି ବହୁଶାସ୍ତ୍ର ପ୍ରଣୟନ କରିଥିଲେ । ସେ ଭାରତବର୍ଷରେ ସର୍ବପ୍ରଧାନ ଶାସ୍ତ୍ରପ୍ରଣେତା ଥିଲେ । ସେ ମହାଯାନ ସଂପରିଗ୍ରହ ଶାସ୍ତ୍ର, ପ୍ରକରଣାର୍ଯ୍ୟବାଚ୍ ଶାସ୍ତ୍ର-କାରିକା, ଅଭିଧର୍ମଶାସ୍ତ୍ର, ବିଦ୍ୟାମାତ୍ରଶାସ୍ତ୍ର, କୋଷଶାସ୍ତ୍ର ଓ ଅନ୍ୟାନ୍ୟ ବହୁସଂଖ୍ୟକ ଶାସ୍ତ୍ର ପ୍ରଣୟନ କରିଥିଲେ ।

ହୁଏନ୍ ସାଂ ବିଭିନ୍ନ ଧର୍ମକ୍ଷେତ୍ରମାନ ପରିଦର୍ଶନ କରି ଅଯୋଧ୍ୟା ପରିତ୍ୟାଗ କଲେ ଓ ନୌକାଯୋଗେ ଗଙ୍ଗା ନଦୀରେ ହୟମୁଖ ଦେଶକୁ ଗମନ କରିବା ଉଦ୍ଦେଶ୍ୟରେ ପୂର୍ବାଭିମୁଖରେ ଯାତ୍ରା କଲେ । ଉକ୍ତ ନୌକାରେ ୮୦ ଜଣ ତାହାଙ୍କର ସହଯାତ୍ରୀ ଥିଲେ । ଏକ ଶତ ଲି ପଥ ଅତିକ୍ରମ କରି ଦେଖିଲେ ଯେ, ନଦୀର ଉଭୟ ତଟଭୂମି ନିବିଡ଼ ଅଶୋକ ବନର ଘନସନ୍ନିବିଷ୍ଟ ପତ୍ରାବଳୀରେ ଆଚ୍ଛାଦିତ ହୋଇଅଛି ଏବଂ ତନ୍ମଧ୍ୟରେ ଜଳଦସ୍ୟୁଙ୍କର ଦଶଗୋଟି ନୌକା ଲୁକ୍କାୟିତ ହୋଇ ରହିଅଛି । ନୌକାଗୁଡ଼ିକ କ୍ଷେପଣୀ-ପରିଚାଳିତ ହୋଇ ହଠାତ୍ ନଦୀର ମଧ୍ୟସ୍ରୋତରେ ଆସି ଉପସ୍ଥିତ ହେଲା । ହୁଏନସାଂଙ୍କ ସହଯାତ୍ରୀମାନଙ୍କ ମଧ୍ୟରୁ କେତେକେ ଦସ୍ୟୁଙ୍କ ଦର୍ଶନରେ ଭୀତ ହୋଇ, ନଦୀଜଳରେ ଝମ୍ପ ପ୍ରଦାନ କଲେ । ଦସ୍ୟୁମାନେ ସେମାନଙ୍କ ନୌକା ହସ୍ତଗତ କରି ନଦୀକୂଳକୁ ଘେନିଗଲେ ଏବଂ

ମଣିମୁକ୍ତା ଓ ବହୁମୂଲ୍ୟ ପ୍ରସ୍ତର ପ୍ରାପ୍ତି ଆଶାରେ ସେମାନଙ୍କ ପରିଧେୟ ବସ୍ତ୍ରାଦି ପରୀକ୍ଷା କରିବାକୁ ଲାଗିଲେ ।

ଏହି ଦସ୍ୟୁଗଣ ଦୁର୍ଗା-ପୂଜକ । ପ୍ରତିବର୍ଷ ଶରତ୍ କାଳରେ ଦେବୀଙ୍କଠାରେ ବଳି ଦାନ ସକାଶେ ଜଣେ କମନୀୟ ଓ ସୁଶ୍ରୀ ପୁରୁଷ ଅନ୍ୱେଷଣ କରନ୍ତି । ସେମାନେ ହୁଏନ୍‌ସାଂଙ୍କ ସୁଗଠିତ ଅବୟବ, କମନୀୟ ରୂପ, ଆକାର ପ୍ରକାର, ସ୍ୱଭଙ୍ଗୀ ଦର୍ଶନରେ ସେମାନଙ୍କ ଉଦ୍ଦେଶ୍ୟ ସିଦ୍ଧିର ଯୋଗ୍ୟପାତ୍ର ବିବେଚନା କରି, ତାହାଙ୍କୁ ନିର୍ବାଚନ କଲେ ଓ କହିଲେ, "ଦେବୀଙ୍କୁ ବଳି ପ୍ରଦାନ କରିବାର ସମୟ ଅତୀତ ହୋଇ ଯାଉଥିଲା; ଏତେଦିନଯାଏଁ ଆମ୍ଭେମାନେ ଉକ୍ତ କାର୍ଯ୍ୟ ସକାଶେ ଉପଯୁକ୍ତ ପାତ୍ର ପାଉ ନ ଥିଲୁ । ଏହି ଶ୍ରମଣ ଦେଖିବାକୁ ବେଶ୍ ସୁନ୍ଦର । ଏହାଙ୍କୁ ବଳି ଦାନ କରି ଆମ୍ଭେମାନେ ସୌଭାଗ୍ୟ ଅର୍ଜନ କରିବୁଁ ।"

---

## ଦସ୍ୟୁମାନଙ୍କଦ୍ୱାରା ବଳି ସକାଶେ ଧୃତ

ହୁଏନ୍‌ସାଂ ଉତ୍ତର କଲେ, "ତୁମ୍ଭମାନଙ୍କ ଅଭିପ୍ରେତ ବଳି ସକାଶେ ଯଦି ମୋର ଏହି ହୀନ ଓ କଳୁଷିତ ଶରୀର ପ୍ରକୃତରେ ଉପଯୁକ୍ତ, ତାହାହେଲେ ତୁମ୍ଭମାନଙ୍କ ଉଦ୍ଦେଶ୍ୟ ସାଧନରେ ବାଧା ଉତ୍ପାଦନ କରିବି ନାହିଁ; କିନ୍ତୁ ଏହି ଦୂର ଦେଶକୁ ଆସିବା ମୋର ଉଦ୍ଦେଶ୍ୟ ଏହି ଯେ, ମୁଁ ବୁଦ୍ଧଙ୍କ ମୂର୍ତ୍ତି ଗୃଧ୍ରକୂଟ ପର୍ବତ ନିକଟରେ ପୂଜା କରି ବୌଦ୍ଧ ଧର୍ମଶାସ୍ତ୍ରସମୂହ ଅଧ୍ୟୟନ କରିବି । ମୋର ଏହି ଉଦ୍ଦେଶ୍ୟ ଅଦ୍ୟାପି ସିଦ୍ଧ ହୋଇ ନାହିଁ । ମୁଁ ତୁମ୍ଭମାନଙ୍କୁ ମୋର ଉପକାରୀ ବୋଲି ମନେ କରୁଅଛି । ତୁମ୍ଭେମାନେ ଯଦି ମୋର ଏହି ଶରୀର ବିନଷ୍ଟ କର, ତାହାହେଲେ ମୁଁ ମନେକରେ, ଏହା ତୁମ୍ଭମାନଙ୍କର ସୌଭାଗ୍ୟ ପରିବର୍ତ୍ତରେ ଦୁର୍ଭାଗ୍ୟ ଆନୟନ କରିବ ।"

ତତ୍ପରେ ହୁଏନ୍‌ସାଂଙ୍କ ସହଯାତ୍ରିଗଣ ତାହାଙ୍କୁ ରକ୍ଷା କରିବା ପାଇଁ ଅନୁରୋଧ କଲେ ଓ ସେମାନଙ୍କ ମଧ୍ୟରୁ କେହି କେହି ତାହାଙ୍କ ପରିବର୍ତ୍ତିରେ ନିଜେ ମୃତ୍ୟୁକୁ ବରଣ କରିବାକୁ ପ୍ରସ୍ତୁତ ହେଲେ; କିନ୍ତୁ ଦସ୍ୟୁଗଣ ଏଥିରେ ସମ୍ମତ ହେଲେ ନାହିଁ ।

ତତ୍ପରେ ଦସ୍ୟୁମାନଙ୍କ ନେତା ବଳି ନିମିତ୍ତ ସ୍ଥାନ ପ୍ରସ୍ତୁତ କରିବା ନିମିତ୍ତେ ତାହାଙ୍କର କେତେକ ଅନୁଚରଙ୍କୁ ପ୍ରେରଣ କଲେ ଓ ପୁଷ୍ପିତ ତରୁଲତା ମଧ୍ୟରେ ମୃତ୍ତିକାମୟ ଏକ ବେଦିକା ନିର୍ମ୍ମାଣ କରିବା ନିମିତ୍ତେ ଆଦେଶ କଲେ । ତତ୍ପରେ ହୁଏନ୍‌ସାଂଙ୍କୁ ସେଠାକୁ ନେଇଯାଇ ଉକ୍ତ ବେଦିକାରେ ତାହାଙ୍କୁ ବନ୍ଧନ କରିବା ପାଇଁ ଦୁଇ ଜଣ ଅନୁଚରଙ୍କୁ ଛୁରିକାହସ୍ତରେ ଯିବାକୁ ଆଦେଶ କଲେ । ସେମାନେ ତାହାଙ୍କୁ ନେଇଯାଇ ବନ୍ଧନ କଲେ ଓ ଯେତେବେଳେ ତାହାଙ୍କ ଉପରେ ଛୁରିକା ପ୍ରୟୋଗ କରିବାକୁ ଉଦ୍ୟତ ହେଲେ, ସେତେବେଳେ ଦସ୍ୟୁଗଣ ତାହାଙ୍କ ମୁଖରେ ଲେଶମାତ୍ର ଭୟର ଚିହ୍ନ ଦର୍ଶନ ନ କରି ବିସ୍ମୟରେ ଅଭିଭୂତ ହେଲେ; କିନ୍ତୁ ହୁଏନ୍‌ସାଂ ଦେଖିଲେ ତାହାଙ୍କ ଉଦ୍ଧାରର ଉପାୟ ନାହିଁ । ତହୁଁରେ ତାହାଙ୍କୁ କିଛି ସମୟ ପ୍ରଦାନ କରିବାକୁ ଓ ତାହାଙ୍କୁ ଚତୁର୍ଦ୍ଦିଗରେ ସେମାନେ ବେଷ୍ଟନ ନ କରିବାକୁ ଅନୁରୋଧ କଲେ ଏବଂ କହିଲେ, "ମୋତେ ଆନନ୍ଦ ଚିତ୍ତରେ ମରିବାକୁ ଦିଅ ।" ତତ୍ପରେ ହୁଏନ୍‌ସାଂ ମାନସରେ ତୁଷିତ ସ୍ୱର୍ଗପ୍ରାଙ୍ଗଣରେ ଜାନୁପାତପୂର୍ବକ ବୋଧିସତ୍ତ୍ୱ ମୈତ୍ରେୟଙ୍କୁ ଅବିଚଳିତ ଚିତ୍ତରେ ଧ୍ୟାନ କଲେ ଓ ପ୍ରାର୍ଥନା କଲେ ଯେ, ସେ ସେହି ସ୍ଥାନରେ ପୁନର୍ବାର ଜନ୍ମଗ୍ରହଣ କରିବେ ଓ ବୋଧିସତ୍ତ୍ୱଙ୍କୁ ଉପାସନା କରି ଯୋଗାଚାର୍ଯ୍ୟ ଭୂମିଶାସ୍ତ୍ର ଶ୍ରବଣ କରିବେ । ତତ୍ପରେ ପୂର୍ଣ୍ଣଜ୍ଞାନ ଲାଭ କରି ପୁନର୍ବାର ପ୍ରାର୍ଥନା କଲେ, "ଏଠାରୁ ପ୍ରତ୍ୟାବର୍ତ୍ତନ କରି ମୁଁ ନିମ୍ନଦେଶରେ ଜନ୍ମଗ୍ରହଣ କରିବି ଓ ସେହି

ଦସ୍ୟୁମାନଙ୍କୁ ଉପଦେଶ ପ୍ରଦାନ କରି ଧର୍ମମାର୍ଗରେ ଦୀକ୍ଷିତ କରିବ । ସେମାନେ ଦୁଷ୍କର୍ମସମୂହ ପରିତ୍ୟାଗ କରି ମଙ୍ଗଳକର କାର୍ଯ୍ୟ ସାଧନରେ ପ୍ରବୃତ୍ତ ହେବେ । ଏହି ପ୍ରକାରେ ଧର୍ମର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ବିସ୍ତୃତ ହୋଇ ସଂସାରରେ ଶାନ୍ତି ବିରାଜମାନ କରିବ । ପ୍ରଭୋ, ଏହି ବିଧାନ କରନ୍ତୁ ।

---

## ଅଦ୍ଭୁତ ସ୍ବପ୍ନରେ ନଷ୍ଟ ଲାଭ

ତତ୍ପରେ ହୁଏନ୍‌ସାଂ ଦଶଦିକ୍‌ପାଳଙ୍କୁ ଧ୍ୟାନ କରି ମନେ ମନେ ସେମାନଙ୍କୁ ମଧ୍ୟ ଉପାସନା କଲେ । ପୁନର୍ବାର ସମ୍ପୂର୍ଣ୍ଣ ସ୍ଥିର ଓ ଅବିଚଳିତ ଚିତ୍ତରେ ଉପବେଶନପୂର୍ବକ ଅବିଶ୍ରାନ୍ତଭାବରେ ମୈତ୍ରେୟଙ୍କ ଧ୍ୟାନ କରିବାକୁ ଲାଗିଲେ । ତତ୍ପରେ ସେ ତାହାଙ୍କ ଅନ୍ତରରେ ଅନୁଭବ କଲେ ଯେ, ସେ ଯେପରି ସୁମେରୁ ପର୍ବତଶୃଙ୍ଗକୁ ଆରୋହଣ କରୁଅଛନ୍ତି ଓ ସେହି ସ୍ଥାନରୁ ପ୍ରଥମ, ଦ୍ବିତୀୟ ଓ ତୃତୀୟ ସ୍ବର୍ଗକୁ ଆରୋହଣ କରି ତୁଷିତସ୍ବର୍ଗ, ବହୁମୂଲ୍ୟ ସାଜସଜ୍ଜାରେ ଭୂଷିତ ମୈତ୍ରେୟାଶ୍ରମ ଓ ତାହାଙ୍କ ଚତୁଃପାର୍ଶ୍ବରେ ଉପବିଷ୍ଟ ଦେବଗଣଙ୍କୁ ନିର୍ନିମେଷ-ଲୋଚନରେ ନିରୀକ୍ଷଣ କରୁଅଛନ୍ତି । ଏହି ସମୟରେ ତାହାଙ୍କ ଶରୀର ପୁଲକିତ ଓ ଆତ୍ମା ଆନନ୍ଦରେ ଅଭିଭୂତ ହୋଇ ଉଠିଲା । ଯେଉଁ ବେଦିକାରେ ଦସ୍ୟୁମାନେ ତାହାଙ୍କୁ ବନ୍ଧନ କରି ରଖିଥିଲେ, ଉକ୍ତ ବେଦିକା ଓ ଦସ୍ୟୁଗଣ ତାହାଙ୍କ ସ୍ମୃତିପଥରୁ ଏକାବେଳକେ ବିଲୁପ୍ତ ହୋଇଗଲେ । ତାହାଙ୍କ ସହଯାତ୍ରିଗଣ କରୁଣ ସ୍ବରରେ କ୍ରନ୍ଦନ କରିବାକୁ ଲାଗିଲେ । ମୁହୂର୍ତ୍ତିକ ମଧ୍ୟରେ ପ୍ରବଳ ଝଞ୍ଜିକା ସ୍ବର୍ଗର ଚତୁର୍ଦ୍ଦିଗରୁ ଉତ୍ଥିତ ହୋଇ, ଚତୁର୍ଦ୍ଦିଗକୁ ଅନ୍ଧକାରାଚ୍ଛନ୍ନ କରି ପକାଇଲା; ବୃକ୍ଷସମୂହ ଉତ୍ପାଟିତ ହୋଇପଡ଼ିଲା । ଧୂଳିରାଶି ଚତୁର୍ଦ୍ଦିଗ ଆଚ୍ଛାଦିତ କଲା ଏବଂ ନଦୀସ୍ରୋତରେ ଉତ୍ତାଳ ତରଙ୍ଗମାଳା ଉତ୍ଥିତ ହୋଇ

ନୌକାଗୁଡ଼ିକୁ ଇତସ୍ତତଃ ବିକ୍ଷିପ୍ତ କଲା । ଦସ୍ୟୁଗଣ ଭୀତବିହ୍ୱଳ ହୋଇ ହୁଏନ୍‌ସାଂଙ୍କ ସହଚରମାନଙ୍କୁ ପଚାରିଲେ, "ଏହି ଶ୍ରମଣ କେଉଁ-ଠାରୁ ଆସିଅଛନ୍ତି ? ଏହାଙ୍କ ନାମ ଧାମ କଅଣ ?" ସେମାନେ କହିଲେ, "ଏ ଚୀନଦେଶବାସୀ ଜଣେ ପ୍ରସିଦ୍ଧ ବ୍ୟକ୍ତି; ତତ୍ତ୍ୱାନ୍ୱେଷଣରେ ଏହି ଦେଶକୁ ଆସିଅଛନ୍ତି । ତୁମ୍ଭେମାନେ ଯଦି ଏହାଙ୍କୁ ହତ୍ୟା କର, ତାହା ହେଲେ ତୁମ୍ଭମାନଙ୍କ ପାପର ସୀମା ରହିବ ନାହିଁ । ତୁମ୍ଭମାନଙ୍କ ପାପର ନିଦର୍ଶନସ୍ୱରୂପ ଏହି ପ୍ରବଳ ଝଟିକା ଓ ନଦୀସ୍ରୋତରେ ଉତ୍ତାଳ ତରଙ୍ଗ-ମାଳା ପ୍ରତି ଥରେ ଦୃଷ୍ଟି ନିକ୍ଷେପ କର । ଏ ସମସ୍ତ ଦେବତାମାନଙ୍କର କ୍ରୋଧର ନିଦର୍ଶନ ; ଅତଏବ ତୁମ୍ଭେମାନେ ଶୀଘ୍ର ତୁମ୍ଭର ଦୁଷ୍କୃତି ନିକଟରେ ଅନୁତାପ କର ।"

---

## ଦସ୍ୟୁମାନଙ୍କର ଦୀକ୍ଷା ଗ୍ରହଣ

ତହିଁରେ ଦସ୍ୟୁଗଣ ଭୟରେ ଅସ୍ଥିର ହୋଇ ଅନୁତାପ ପୁରଃସର ନିଜ ନିଜ ଅପରାଧ ସ୍ୱୀକାର କରିବା ସଙ୍କାଶେ ପରସ୍ପରକୁ ଉପଦେଶ ଦେଲେ ଓ ବିନୀତଭାବରେ ଆସି ହୁଏନ୍‌ସାଂଙ୍କ ପଦତଳରେ ପ୍ରଣାମ କରି ତନ୍ମୁହୂର୍ତ୍ତରେ ବୌଦ୍ଧଧର୍ମ ଗ୍ରହଣ କରିବା ସଙ୍କାଶେ ଅଙ୍ଗୀକାର କଲେ । ଏହି ସମୟରେ ଦୈବାତ୍ ଜଣେ ଦସ୍ୟୁର ହସ୍ତ ତାହାଙ୍କ ଶରୀର ସ୍ପର୍ଶ କଲା । ସେ ଚକ୍ଷୁରୁନ୍ମୀଳନପୂର୍ବକ ଉକ୍ତ ଦସ୍ୟୁକୁ କହିଲେ, "ବଳିଦାନର ସମୟ କି ଉପସ୍ଥିତ ?" ଦସ୍ୟୁ ଉତ୍ତର କଲା, "ଆଜି ଆପଣଙ୍କୁ ହତ୍ୟା କରିବାକୁ ଆମ୍ଭମାନଙ୍କର ସାହସ ହେଉ ନାହିଁ । ଆମ୍ଭେ-ମାନେ ବର୍ତ୍ତମାନ ଏକାନ୍ତ ଅନୁତପ୍ତ । ଆପଣ ଆମ୍ଭମାନଙ୍କୁ କ୍ଷମା କରନ୍ତୁ । ହୁଏନ୍‌ସାଂ ତାହାଙ୍କ ବାକ୍ୟରେ ବିଶ୍ୱାସ ସ୍ଥାପନ କରି ସେମାନଙ୍କ ପୂଜା ଓ ଅପରାପର ସ୍ୱୀକୃତ ଗ୍ରହଣ କଲେ ଏବଂ ଦସ୍ୟୁ, ନରହନ୍ତା, ବଳିଦାତା

ଓ ଅନ୍ୟାନ୍ୟ ପାପକର୍ମନିରତ ବ୍ୟକ୍ତିଙ୍କୁ ଯେ ଅବିଚିନରକରେ କଠୋର ଯନ୍ତ୍ରଣା ଭୋଗ କରିବାକୁ ହେବ । ଏହି ବିଷୟରେ ଉପଦେଶ ପ୍ରଦାନ କଲେ ପୁଣି କହିଲେ, "ଜୀବନ ବିଦ୍ୟୁତ୍ ଓ ପ୍ରାତଃକାଳୀନ ଶିଶିର ତୁଲ୍ୟ କ୍ଷଣସ୍ଥାୟୀ; ଏହି ନଶ୍ୱର ଶରୀରର କ୍ଷଣିକ ସୁଖଭୋଗ ସକାଶେ ତୁମ୍ଭେମାନେ କାହିଁକି ଅସଂଖ୍ୟ ଜନ୍ମଜନ୍ମାନ୍ତରେ ନରକ ଯନ୍ତ୍ରଣା ଭୋଗ କରିବାରେ ପ୍ରବୃତ୍ତ ହୋଇଅଛ ?" ଏହା ଶୁଣି ଦସ୍ୟୁଗଣ ଅବନତ ମସ୍ତକରେ ଅପରାଧ ସ୍ୱୀକାରପୂର୍ବକ କହିଲେ, "ଆମ୍ଭେମାନେ ନିତାନ୍ତ ମୂର୍ଖ । ଆମ୍ଭେମାନେ ଅନ୍ୟାୟ କାର୍ଯ୍ୟ କରିବାକୁ ଯାଉଥିଲୁଁ । ଆପଣଙ୍କ ଅସାମାନ୍ୟ ଶକ୍ତିପ୍ରଭାବରେ ଦେବତାମାନଙ୍କର ଶକ୍ତି ସୁଦ୍ଧା ବିଚଳିତ ହେଲା । ଆମ୍ଭେମାନେ ଆପଣଙ୍କ ଦର୍ଶନ ଲାଭ କରି ନ ଥିଲେ, କିପରି ଅନୁତପ୍ତ ହୋଇଥାଆନ୍ତୁ ! ଆମ୍ଭେମାନେ ପ୍ରତିଜ୍ଞା କରୁଅଛୁଁ ଯେ, ଆଜିଠାରୁ ଆମ୍ଭମାନଙ୍କ ଦୁଷ୍ଟବୃତ୍ତିସକଳ ପରିତ୍ୟାଗ କଲୁଁ, ଆପଣ ଆମ୍ଭମାନଙ୍କ ଏହି ପ୍ରତିଜ୍ଞାର ସାକ୍ଷ୍ୟ ଦେଉନ୍ତୁ ।"

ତତ୍ପରେ ସେମାନେ ସ୍ୱ ସ୍ୱ ଚରିତ୍ର ସଂଶୋଧନ କରିବା ସକାଶେ ପରସ୍ପରକୁ ଉତ୍ସାହିତ କଲେ ଓ ଦସ୍ୟୁବୃତ୍ତିସଂକ୍ରାନ୍ତ ଯାବତୀୟ ଅସ୍ତ୍ରଶସ୍ତ୍ର ଏକତ୍ର କରି ନଦୀଜଳରେ ନିକ୍ଷେପ କଲେ । ଲୁଣ୍ଠିତ ଦ୍ରବ୍ୟସମୂହ ତାହାର ଅଧିକାରୀମାନଙ୍କୁ ପ୍ରତ୍ୟର୍ପଣ କଲେ ଓ ପଞ୍ଚଧର୍ମ ବନ୍ଧନରେ ଆବଦ୍ଧ ହେବାକୁ ଅଙ୍ଗୀକାର କଲେ ।

ବାତ୍ୟା ଓ ବନ୍ୟା ପ୍ରଶମିତ ହେଲା । ଦସ୍ୟୁଗଣ ହର୍ଷୋତ୍ଫୁଲ୍ଲ ହୃଦୟରେ ଭକ୍ତିପୂରଃସର ହୁଏନ୍‌ସାଂଙ୍କ ଚରଣ ବନ୍ଦନା କଲେ । ତାହାଙ୍କ ସହଯାତ୍ରିଗଣ ଏହା ଦେଖି ବିସ୍ମୟରେ ଅଭିଭୂତ ହେଲେ । ଉପସ୍ଥିତ ଓ ଅନୁପସ୍ଥିତ ଯେଉଁମାନେ ଏହି ଘଟଣା ବିଷୟ ଆଲୋଚନା

* ବୌଦ୍ଧ ଶାସ୍ତ୍ରର ନିମ୍ନତମ ନରକ

କଲେ, ସେମାନେ ବିସ୍ମୟାବିଷ୍ଟ ହୋଇ କହିଲେ, "ଧର୍ମତତ୍ତ୍ୱାନ୍ୱେଷଣର ଦୃଢ ସଂକଳ୍ପ-ଶକ୍ତି ବ୍ୟତୀତ ଏହା କଦାପି ସମ୍ଭବପର ନୁହେଁ ।"

## ମହାଯାନ ଭୂମି

ଏହି ସ୍ଥାନରୁ ତିନି ଶତ ଲି ପୂର୍ବକୁ ଉତ୍ତର ଦିଗରେ ଗଙ୍ଗା ନଦୀ ଅତିକ୍ରମ କରି, ସେ ହୟମୁଖରେ (ଅ-ୟୁ-ମୁ-ଖି) ଉପସ୍ଥିତ ହେଲେ । ଏହି ନଗରର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅବସ୍ଥିତ ଏକ ଚମ୍ପକୋଦ୍ୟାନରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଏହିଠାରେ ପୂର୍ବକାଳରେ ବୁଦ୍ଧ ଧର୍ମଦ୍ରୋହୀମାନଙ୍କୁ ପରାସ୍ତ କରିଥିଲେ । ଏହାର ସନ୍ନିକଟରେ ଗୋଟିଏ ସଂଘାରାମ ଥିଲା । ଏହିଠାରେ ଦେବ ବୋଧିସତ୍ତ୍ୱ ବୃହତ୍ ଶତ ଶାସ୍ତ୍ର ରଚନା କରିଥିଲେ ଓ ହୀନଯାନାବଲମ୍ବୀମାନଙ୍କୁ ପରାସ୍ତ କରିଥିଲେ । ନଗରର ପୂର୍ବଦିଗରେ ଦୁଇ ନଦୀର ସଙ୍ଗମ ସ୍ଥଳ ଏବଂ ଏହାର ପୂର୍ବଦିଗରେ ଚଉଦ ପନ୍ଦର ଲି ପରିମିତ ଏକ ସମତଳ ଭୂମି ଥିଲା । ପୁରାକାଳରୁ ଆଜିପର୍ଯ୍ୟନ୍ତ ଧର୍ମପରାୟଣ ଓ ଦାନଶୀଳ ରାଜପୁରୁଷ ଓ ସମ୍ଭ୍ରାନ୍ତ ବ୍ୟକ୍ତିଗଣ ଧନ ବସ୍ତୁ ବିତରଣ କରିବା ସକାଶେ ଏହି ସ୍ଥାନରେ ସମବେତ ହେଉଥିଲେ । ତେଣୁ ଏହା 'ମହାଦାନ ଭୂମି' ନାମରେ ଅଭିହିତ ହେଉଥିଲା । ତତ୍କାଳୀନ ରାଜା ଶୀଳାଦିତ୍ୟ ପ୍ରାଚୀନ ନୀତି ଅନୁସରଣପୂର୍ବକ ପାଞ୍ଚ ବର୍ଷ ମଧ୍ୟରେ ସଂଚିତ କରିଥିବା ଧନକୁ ୭୫ ଦିନ ମଧ୍ୟରେ ବିତରଣ କରୁଥିଲେ ଓ ଆବାଳବୃଦ୍ଧବନିତା ସମସ୍ତେ ଉକ୍ତ ଧନଭାଗୀ ହେଉଥିଲେ ।

ଏହାର ଦକ୍ଷିଣ-ପଶ୍ଚିମ ଦିଗରେ ହିଂସ୍ର ଜନ୍ତୁ ଓ ବନ୍ୟ ହସ୍ତି-ପରିପୂର୍ଣ୍ଣ ଏକ ବୃହତ୍ ଅରଣ୍ୟ ଥିଲା ଏବଂ ସେହି ଅରଣ୍ୟରୁ ପାଞ୍ଚଶତ ଲି ଦୂରରେ କୌଶାମ୍ବି (କୌ-ଶାଂ-ମି) ଅବସ୍ଥିତ ଥିଲା ।

କୌଶାମ୍ବିରେ ଦଶଗୋଟି ସଂଘାରାମ ଥିଲା ଓ ତହିଁରେ ପ୍ରାୟ ତିନିଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ନଗର ମଧ୍ୟରେ ଏକ ପ୍ରାସାଦର ଭଗ୍ନାବଶେଷ ଥିଲା । ତହିଁରେ ଷାଠିଏ ଫୁଟ ଉଚ୍ଚ ଏକ ବିହାର ମଧ୍ୟରେ ରାଜା ଉଦୟନଙ୍କ ନିର୍ମିତ ପ୍ରସ୍ତର-ବିତାନ ତଳରେ ବୁଦ୍ଧଙ୍କ ଚନ୍ଦନ କାଷ୍ଠର ଏକ ମୂର୍ତ୍ତି ସ୍ଥାପିତ ହୋଇଥିଲା ।

ପୂର୍ବକାଳରେ ତଥାଗତ ସ୍ୱୀୟ ଜନନୀଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ଉଦ୍ଦେଶ୍ୟରେ ତ୍ରୟସ୍ତ୍ରିଂଶ ସ୍ୱର୍ଗରେ ପୂର୍ଣ୍ଣ ଏକ ବିଶ୍ରାମ ଋତୁ ଅତିବାହିତ କରିଥିଲେ । ଏଇ ଭକ୍ତରେ ରାଜା ବୁଦ୍ଧଙ୍କ ମହାମାନ୍ୟିତ ରୂପ ପର୍ଯ୍ୟବେକ୍ଷଣପୂର୍ବକ ଚନ୍ଦନ କାଷ୍ଠରେ ତାହାଙ୍କର ଏକ ଅବିକୃତ ପ୍ରତିମୂର୍ତ୍ତି ଗଠନ କରିବା ପାଇଁ ଜଣେ ପ୍ରବୀଣ ଶିଳ୍ପୀଙ୍କୁ ଏହି ସ୍ୱର୍ଗକୁ ପ୍ରେରଣ କରିବା ସକାଶେ ମୌଦ୍‌ଗଲ୍ୟାୟନଙ୍କୁ ଅନୁରୋଧ କରିଥିଲେ । ଯେତେବେଳେ ବୁଦ୍ଧ ପୁନର୍ବାର ଏହି ସ୍ଥାନକୁ ଆଗମନ କଲେ, ସେତେବେଳେ ସେ ଏହି ପ୍ରତିମୂର୍ତ୍ତି ଦର୍ଶନ କରିଥିଲେ ।

ଏହି ସ୍ଥାନର ଦକ୍ଷିଣରେ ଘୋଷିର ନାମକ ଏକ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ବାସଗୃହର ଭଗ୍ନାବଶେଷ ବିଦ୍ୟମାନ ଥିଲା । ନଗରର ଦକ୍ଷିଣ ପାର୍ଶ୍ୱର ଅନତି ଦୂରରେ ଗୋଟିଏ ସଂଘାରାମ ଥିଲା । ତାହା ଉକ୍ତ ଗୃହସଲଗ୍ନ ଉଦ୍ୟାନ ଭୂମିରେ ନିର୍ମିତ ହୋଇଥିଲା । ଏହିଠାରେ ଅଶୋକଙ୍କ ନିର୍ମିତ ଦୁଇ ଶତ ଫୁଟ ଉଚ୍ଚ ଏକ ସ୍ତୂପ ଥିଲା । ଏହାର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଏକ ଦ୍ୱିତଳ ପ୍ରାସାଦ ମଧ୍ୟ ଥିଲା । ଏହି ଗୃହରେ ବସୁବନ୍ଧୁ ବିଦ୍ୟାମାତ୍ର ସିଦ୍ଧିଶାସ୍ତ୍ର ପ୍ରଣୟନ କରିଥିଲେ ।

ଏହାର ପୂର୍ବ ଦିଗରେ ଏକ ଆମ୍ବତୋଟା ବନ ଥିଲା ଏବଂ ତନ୍ମଧ୍ୟରେ କେତେଗୁଡିଏ ପୁରାତନ ଗୃହର ମୂଳ ଭିତ୍ତିର ପ୍ରସ୍ତର ଥିଲା । ଏହି ସ୍ଥାନରେ ଅସଙ୍ଗ ବୋଧିସତ୍ତ୍ୱ 'ପ୍ରକରଣାର୍ଯ୍ୟବାକ୍ ଶାସ୍ତ୍ରକାରିକା' ପ୍ରଣୟନ କରିଥିଲେ ।

ଏହିଠାରୁ ପାଞ୍ଚଶତ ଲି ଦୂରରେ ବିଶାଖା (ପି-ସୋ-କିଆ) ରାଜ୍ୟ ଅବସ୍ଥିତ ଥିଲା । ଏହିଠାରେ କୋଡ଼ିଏ ଗୋଟି ସଂଘାରାମ ଥିଲା ଓ ତହିଁରେ ହୀନଯାନାଭ୍ୟନ୍ତରସ୍ଥ ସମ୍ମତୀୟ ମତାବଲମ୍ବୀ ତିନି ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ।

ଏହିଠାରୁ ଦକ୍ଷିଣ-ପୂର୍ବ ଦିଗକୁ ଏକ ପଥ ଯାଇଥିଲା । ତାହାର ବାମପାର୍ଶ୍ୱରେ ଗୋଟିଏ ସଂଘାରାମ ଥିଲା । ପୂର୍ବକାଳରେ ଅର୍ହତ ଦେବଶର୍ମଣ ଏହି ସ୍ଥାନରେ 'ବିଜ୍ଞାନକାୟପାଦ' ଶାସ୍ତ୍ର ପ୍ରଣୟନ କରିଥିଲେ । ଏହି ଶାସ୍ତ୍ର ଆତ୍ମାର ଅସ୍ତିତ୍ୱ ନାହିଁ—ଏହା ପ୍ରତିପାଦନ କରେ । ପୁଣି ଅର୍ହତ ଗୋପ ମଧ୍ୟ ଏହିଠାରେ ବ୍ୟକ୍ତିତ୍ୱର ଅସ୍ତିତ୍ୱ ପ୍ରତିପାଦକ 'ଶିଂ-ଚୌ-ଇନ୍-ଶି' ଶାସ୍ତ୍ର ପ୍ରଣୟନ କରିଥିଲେ । ଏହି ଶାସ୍ତ୍ରଦ୍ୱୟ ଯୋଗୁଁ ବିରୁଦ୍ଧମତ-ସମ୍ବଳିତ ଅନେକଗୁଡ଼ିଏ ଗ୍ରନ୍ଥ ପ୍ରଣୀତ ହୋଇଥିଲା ।

ଏହି ସ୍ଥାନରେ ଧର୍ମପାଳ ବୋଧିସତ୍ତ୍ୱ ମଧ୍ୟ ହୀନଯାନାବଲମ୍ବୀ ଏକ ଶତ ଶାସ୍ତ୍ର ପ୍ରଣେତାଙ୍କୁ ସପ୍ତ ଦିବସ ମଧ୍ୟରେ ପରାସ୍ତ କରିଥିଲେ । ଏହାର ସନ୍ନିକଟରେ ତଥାଗତ ଛଅବର୍ଷକାଳ ଧର୍ମ ପ୍ରଚାର କରିଥିଲେ ।

ଏହି ସ୍ଥାନରେ ସତୁରି ଫୁଟ ଉଚ୍ଚ ଏକ ବୃକ୍ଷ ଥିଲା । ବୁଦ୍ଧ ଏହିଠାରେ ଦାନ୍ତ ଘଷି, ଦାନ୍ତ କାଠି ଭୂମିରେ ନିକ୍ଷେପ କରିଥିଲେ ଓ ତତ୍‌କ୍ଷଣାତ୍ ତହିଁରୁ ଅଙ୍କୁରୋଦ୍‌ଗମ ହୋଇ ତାହା ପତ୍ରବହୁଳ ବୃକ୍ଷରେ ପରିଣତ ହୋଇଥିଲା । ଉକ୍ତ ବୃକ୍ଷ ଅଦ୍ୟାପି ବିଦ୍ୟମାନ ଅଛି । ଧର୍ମଦ୍ରୋହିଗଣ ବହୁବାର ଏହାକୁ ନଷ୍ଟ କରିବା ସକାଶେ ଆସି ଯେତେ ବାର କର୍ତ୍ତନ କରିଥିଲେ ତେତେ ଥର ଏହା ପୂର୍ବପରି ଶାଖାପତ୍ର-ସମନ୍ୱିତ ହୋଇଥିଲା ।

## ବୁଦ୍ଧଙ୍କ ସ୍ୱର୍ଗାବରୋହଣ—ଶ୍ରାବସ୍ତୀ ରାଜ୍ୟରେ ପ୍ରବେଶ

ଏହିଠାରୁ ପାଞ୍ଚଶତ ଲି ଉତ୍ତର-ପୂର୍ବକୁ ଶ୍ରାବସ୍ତୀ ରାଜ୍ୟ (ଶି-ଲୋ-ଫୁ-ସି-ଟି)। ଏହାର ଆୟତନ ଛଅ ସହସ୍ର ଲି। ଏଥିରେ ଶତ ଶତ ସଂଘାରାମ ଥିଲା ଓ ସମ୍ମତୀୟ ମତାବଲମ୍ବୀ ସହସ୍ର ସହସ୍ର ସନ୍ୟାସୀ ଏଠାରେ ଅବସ୍ଥାନ କରୁଥିଲେ। ବୁଦ୍ଧଙ୍କ ଜୀବିତାବସ୍ଥାରେ ରାଜା ପ୍ରସେନ୍‌ଜିତ୍ ଯେଉଁ ସ୍ଥାନରେ ବାସ କରୁଥିଲେ, ସେହି ସ୍ଥାନରେ ଏହି ରାଜ୍ୟର ରାଜଧାନୀ ଥିଲା। ନଗରାଭ୍ୟନ୍ତରରେ ରାଜପ୍ରାସାଦର ଭଗ୍ନାବଶେଷ ବର୍ତ୍ତମାନ ଥିଲା। ଏହାର ଅନତିଦୂରରେ ପୂର୍ବକୁ ପ୍ରାଚୀନ ଭିତ୍ତି ଉପରେ ନିର୍ମିତ କେତେଗୁଡ଼ିଏ ସ୍ତୂପ ଥିଲା। ରାଜା ପ୍ରସେନ୍‌ଜିତ୍ ବୁଦ୍ଧଙ୍କ ବ୍ୟବହାର ସକାଶେ ଏଠାରେ ଏକ ବୃହତ୍ ମଣ୍ଡପଗୃହ ନିର୍ମାଣ କରି ଦେଇଥିଲେ।

ଏହାର ସନ୍ନିକଟରେ ଆଉ ଏକ ପ୍ରାସାଦ ଥିଲା। ତନ୍ମଧ୍ୟରେ ବୁଦ୍ଧଙ୍କ ମାଉସୀ ପ୍ରଜାପତି ଭିକ୍ଷୁଣୀଙ୍କ ବିହାର ଥିଲା।

ଏହାର ପୂର୍ବପାର୍ଶ୍ୱରେ ସୁଦତ୍ତଙ୍କ ଭଗ୍ନପ୍ରାସାଦ ଓ ଏହାର ସନ୍ନିକଟରେ ଏକ ବୃହତ୍ ସ୍ତୂପ ଥିଲା। ଏହିଠାରେ ଅଙ୍ଗୁଲିମାଳ ଧର୍ମବିରୁଦ୍ଧ ମତ ବର୍ଜନ କରିଥିଲେ।

ନଗରର ପାଞ୍ଚ ଛଅ ଲି ଦକ୍ଷିଣକୁ ଜେତବନ ଅବସ୍ଥିତ ଥିଲା। ଏହା ଅନାଥ ଓ ଶୋକସନ୍ତପ୍ତ ବ୍ୟକ୍ତିଙ୍କ ଆଶ୍ରୟସ୍ଥଳ। ପୂର୍ବକାଳରେ ଏଠାରେ ଏକ ସଂଘାରାମ ଥିଲା। ବର୍ତ୍ତମାନ ତାହା ଧୂଳିସାତ୍ ହୋଇଅଛି।

ପୂର୍ବଦ୍ୱାରର ଦକ୍ଷିଣ ଓ ବାମ ପାର୍ଶ୍ୱରେ ସତୁରି ଫୁଟ ଉଚ୍ଚ ସ୍ତମ୍ଭମାନ ନିର୍ମିତ ହୋଇଥିଲା। ଅଶୋକ ଏଗୁଡ଼ିକ ଏହି ସ୍ଥାନରେ ନିର୍ମାଣ କରାଇଥିଲେ। କେବଳ ଗୋଟିଏ କକ୍ଷ ବ୍ୟତୀତ ସମଗ୍ର ଗୃହଟି ଧ୍ୱଂସପ୍ରାପ୍ତ ହୋଇଅଛି। ଉକ୍ତ କକ୍ଷରେ ଏକ ସ୍ୱର୍ଣ୍ଣବିଗ୍ରହ ଅଛି।

ପୂର୍ବକାଳରେ ବୁଦ୍ଧ ଯେତେବେଳେ ଜନନୀଙ୍କୁ ଧର୍ମୋପଦେଶ ପ୍ରଦାନ କରିବା ସକାଶେ ତ୍ରୟସ୍ତ୍ରିଂଶ ସ୍ୱର୍ଗକୁ ଆରୋହଣ କରିଥିଲେ, ସେହି ସମୟରେ ରାଜା ପ୍ରସେନ୍‌ଜିତ୍ ଏହି ବିଗ୍ରହ ନିର୍ମାଣ କରାଇଥିଲେ । ରାଜା ଉଦୟନ ଏକ ଚନ୍ଦନକାଷ୍ଠର ବିଗ୍ରହ ନିର୍ମାଣ କରାଇଥିବା ଶୁଣି ରାଜା ପ୍ରସେନ୍‌ଜିତ୍ ଭକ୍ତିପୂର୍ଣ୍ଣ ହୃଦୟରେ ଏହି ସ୍ୱର୍ଣ୍ଣବିଗ୍ରହ ନିର୍ମାଣ କରାଇଥିଲେ ।

ଅଦୂରବର୍ତ୍ତୀ ମଠର ପଶ୍ଚାଦ୍‌ଭାଗରେ ଏକ ଧର୍ମବିରୋଧୀ ବ୍ରାହ୍ମଣୀ ଜଣେ ସ୍ତ୍ରୀକୁ ହତ୍ୟା କରି ବୁଦ୍ଧଙ୍କୁ ହତ୍ୟାପରାଧରେ ଅଭିଯୁକ୍ତ କରିଥିଲେ ।

---

## ବିହାର ସଂଘାରାମ

ମଠର ଏକଶତ ପଦ ପୂର୍ବକୁ ଏକ ଗର୍ତ୍ତ ଥିଲା । ବୁଦ୍ଧଙ୍କୁ ବିଷ ପ୍ରଦାନ କରିବାକୁ ଚେଷ୍ଟା କରି ଦେବଦତ୍ତ ଏହି ଗର୍ତ୍ତ ମୁଖରେ ସଶରୀରରେ ନରକଗାମୀ ହୋଇଥିଲେ । ଏହାର ଦକ୍ଷିଣରେ ଆଉ ଏକ ଗର୍ତ୍ତ ଥିଲା । ଭିକ୍ଷୁ କୁକାଳୀ ବୁଦ୍ଧଙ୍କ କୁତ୍ସା ରଚନା କରି ଏହି ଗର୍ତ୍ତ ମୁଖରେ ସଶରୀରରେ ନରକକୁ ଗମନ କରିଥିଲେ । ଚଞ୍ଚାନାମ୍ନୀ ଜଣେ ବ୍ରାହ୍ମଣୀ ମଧ୍ୟ ବୁଦ୍ଧଙ୍କ କୁତ୍ସା ରଚନା କରି ଏହାର ଅଷ୍ଟଶତ ପଦ ଦୂରରୁ ଦକ୍ଷିଣପାର୍ଶ୍ୱବର୍ତ୍ତୀ ଏକ ଗର୍ତ୍ତ ମୁଖରେ ନରକରେ ପ୍ରବିଷ୍ଟ ହୋଇଥିଲା । ଏହି ଗର୍ତ୍ତଗୁଡିକ ଅତଳସ୍ପର୍ଶୀ । ଏହି ସଂଘାରାମର ସତୁରି ପଦ ପୂର୍ବକୁ ଆଉ ଗୋଟିଏ ବଡ଼ ସଂଘାରାମ ଥିଲା । ତନ୍ମଧ୍ୟରେ ବୁଦ୍ଧଙ୍କର ଗୋଟିଏ ମୂର୍ତ୍ତି ପୂର୍ବମୁଖରେ ଉପବିଷ୍ଟ ଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ଧର୍ମବିରୋଧୀମାନଙ୍କ ସହିତ ଶାସ୍ତ୍ରାଲୋଚନା କରିଥିଲେ ।

ଏହାର ପୂର୍ବଦିଗରେ ଉକ୍ତ ବିହାରର ସମାକୃତିବିଶିଷ୍ଟ ଗୋଟିଏ ଦେବ-ମନ୍ଦିର ଥିଲା । ଯେତେବେଳେ ସୂର୍ଯ୍ୟକିରଣ ଏହି ବିହା-

ଗୁଡକରେ ପଡୁଥିଲା, ସେତେବେଳେ ଦେବ-ମନ୍ଦରର ଛାୟା ବହାରକୁ ସ୍ପର୍ଶ କରୁ ନ ଥିଲା ; କିନ୍ତୁ ବହାରର ଛାୟା ମନ୍ଦରକୁ ଆଚ୍ଛାଦନ କରି ରହୁଥିଲା ।

ଏ ାର ତିନ ସ୍ବର ଲି ପୂର୍ବରେ ଏକ ସ୍ତୁ ପ ଥିଲା । ଏହିଠାରେ ସାରିପୁତ୍ର ଧର୍ମ ବରୋଧୀମାନଙ୍କ ସହିତ ଶାସ୍ତ୍ରାଲୋଚନା କରିଥିଲେ ।

ରାଜଧାନୀର ଷାଠିଏ ଲି ଉତ୍ତର-ପଶ୍ଚିମକୁ ଏକ ପ୍ରାଚୀନ ନଗରର ଭଗ୍ନାବଶେଷ ବଦ୍ୟମାନ ଥିଲା । ଏହା କାଶ୍ୟପ ବୁଦ୍ଧଙ୍କ ପିତାଙ୍କ ରାଜଧାନୀ । ସେ ଭଦ୍ର କଳ୍ପ ମଧ୍ୟରେ ଜୀବିତ ଥିଲେ । ଏହି କଳ୍ପରେ ମନୁଷ୍ୟମାନଙ୍କ ଆୟୁ ବଂଶ ସହସ୍ର ବର୍ଷ ଥିଲା । ଏହି ନଗରର ଦକ୍ଷିଣପାର୍ଶ୍ୱରେ ବୁଦ୍ଧ ପୂର୍ଣ୍ଣ ଜ୍ଞାନ ଲାଭ କରି ପିତାଙ୍କ ସହତ ସାକ୍ଷାତ୍ କରିଥିଲେ ।

ନଗରର ଉତ୍ତରପାର୍ଶ୍ୱରେ ଏକ ପ୍ରାସାଦ ଥିଲା । ତନ୍ମଧ୍ୟରେ କାଶ୍ୟପ ବୁଦ୍ଧଙ୍କ ସମଗ୍ର ଦେହାବଶେଷ ରକ୍ଷିତ ହୋଇଥିଲା । ଏହା ଅଶୋକ ନରପତି ନିର୍ମାଣ କରାଇଥିଲେ ।

---

## କପିଳବାସ୍ତୁ

ଏହିଠାରୁ ଅଠଶତ ଲି ଦକ୍ଷିଣ-ପୂର୍ବକୁ କପିଳବାସ୍ତୁ ରାଜ୍ୟ ଅବସ୍ଥିତ ଥିଲା । ଏହାର ଆୟତନ ଚାରିଶତ ଲି । ଏହାର ରାଜଧାନୀ ଓ ଏକ ସହସ୍ର ଗ୍ରାମ ଧ୍ୱଂସପ୍ରାପ୍ତ ହୋଇଯାଇଥିଲା । ଅଭ୍ୟନ୍ତରସ୍ଥ ନଗରର ଆୟତନ ପଞ୍ଚଦଶ ଲି । ଏହା ଏକ ସୁଦୃଢ଼ ପ୍ରାଚୀରବେଷ୍ଟିତ ଥିଲା । ନଗର ମଧ୍ୟରେ ରାଜା ଶୁଦ୍ଧୋଦନଙ୍କ ପ୍ରାସାଦର ଭଗ୍ନାବଶେଷ ବଦ୍ୟମାନ ଥିଲା । ଏହି ସ୍ଥାନରେ ବହାର ନିର୍ମିତ ହୋଇ ତନ୍ମଧ୍ୟରେ ରାଜାଙ୍କର ଏକ ପ୍ରତିମୂର୍ତ୍ତି ରକ୍ଷିତ ହୋଇଥିଲା ।

ଏହାର ଉତ୍ତରକୁ ଆଉ କେତେକ ପ୍ରାସାଦର ଭଗ୍ନାବଶେଷ ବଦ୍ୟମାନ । ଏହା ରାଣୀ ମାୟାଙ୍କର ଶୟନାଗାରର ଭଗ୍ନାବଶେଷ ।

ଏହିଠାରେ ମଧ୍ୟ ଏକ ବିହାର ନିର୍ମିତ ହୋଇ ତନ୍ମଧ୍ୟରେ ରାଣୀଙ୍କର ଏକ ପ୍ରସ୍ତରମୂର୍ତ୍ତି ସ୍ଥାପିତ ହୋଇଥିଲା । ଏହାର ସନ୍ନିକଟରେ ଏକ ବିହାର ଥିଲା । ଏହିଠାରେ ଶାକ୍ୟ ବୋଧିସତ୍ତ୍ୱ ଦେବ ରୂପରେ ଜନନୀଙ୍କ ଜଠରରେ ପ୍ରବିଷ୍ଟ ହୋଇଥିଲେ । ଜନ୍ମଗ୍ରହଣ ଉଦ୍ଦେଶ୍ୟରେ ଅବତୀର୍ଣ୍ଣ ବୋଧିସତ୍ତ୍ୱଙ୍କ ଏକ ପ୍ରସ୍ତରମୂର୍ତ୍ତି ତନ୍ମଧ୍ୟରେ ରକ୍ଷିତ ହୋଇଥିଲା ।

ସ୍ଥବିର ମତାବଲମ୍ବୀମାନେ କହନ୍ତି ଯେ, ଆଷାଢ ମାସର ତ୍ରିଂଶ ଦିବସର ସାୟଂକାଳରେ ବୁଦ୍ଧଙ୍କ ଦିବ୍ୟମୂର୍ତ୍ତି ଜନନୀଙ୍କ ଜଠରରେ ପ୍ରବିଷ୍ଟ ହୋଇଥିଲା । ଅନ୍ୟ ମତାବଲମ୍ବୀମାନେ ଏହା ଉକ୍ତ ମାସର ତ୍ରୟୋ-ବିଂଶ ଦିବସରେ ସଂଘଟିତ ହୋଇଥିଲା ବୋଲି କହନ୍ତି ।

ଏହାର ଉତ୍ତର-ପୂର୍ବରେ ଏକ ସ୍ତୂପ ଥିଲା । ଏହିଠାରେ ଅସିତ ଋଷି ଯୁବରାଜ ଶାକ୍ୟସିଂହଙ୍କ ଜନ୍ମ-ପତ୍ରିକା ବିଚାର କରିଥିଲେ । ନଗରର ଦକ୍ଷିଣ-ପୂର୍ବ ପାର୍ଶ୍ୱସ୍ଥ ଏକ ସ୍ଥାନରେ ଯୁବରାଜ ଶାକ୍ୟବଂଶୋଦ୍ଭବ ଯୁବକମାନଙ୍କ ସହିତ ମଲ୍ଲକ୍ରୀଡ଼ାରେ ପ୍ରବୃତ୍ତ ହେଉଥିଲେ । ଏହାର ସମୀପସ୍ଥ ଏକ ସ୍ଥାନରେ ସେ ଗୃହତ୍ୟାଗପୂର୍ବକ ଅଶ୍ୱପୃଷ୍ଠରେ ନଗରରୁ ଚାଲି ଯାଇଥିଲେ । ନଗରର ଦ୍ୱାରଚତୁଷ୍ଟୟର ବହିର୍ଦ୍ଦେଶରେ ସେ ରଥରେ ଭ୍ରମଣ କରିବା ସକାଶେ ଯାଉଥିବା ସମୟରେ ଯେଉଁ ସ୍ଥାନରେ ଏକ ବୃଦ୍ଧ, ରୁଗ୍ଣ, ମୃତ ବ୍ୟକ୍ତି ଓ ସଂସାରବିରାଗୀ ଶ୍ରମଣଙ୍କୁ ଦର୍ଶନ କରି ରଥ ପ୍ରତ୍ୟାବର୍ତ୍ତନ କରାଇଥିଲେ, ସେହି ସ୍ଥାନ ଏହାର ନିକଟବର୍ତ୍ତୀ ।

ଏହି ସ୍ଥାନରୁ ନିବିଡ଼ ଅରଣ୍ୟ ମଧ୍ୟଦେଇ ପାଞ୍ଚଶତ ଲି ପୂର୍ବକୁ ଗଲେ ରାମଗ୍ରାମ ଦେଶ । ଏହି ଦେଶ ବର୍ତ୍ତମାନ ଜନଶୂନ୍ୟ ହୋଇଅଛି । ରାମ ଗ୍ରାମର ପୂର୍ବପାର୍ଶ୍ୱରେ ଏକଶତ ଫୁଟ ଉଚ୍ଚ ଏକ ଇଷ୍ଟକସ୍ତୂପ ଥିଲା । ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ଉତ୍ତାରେ ଏହି ଦେଶରେ ବୁଦ୍ଧ ନରପତି ତାହାଙ୍କ ଶରୀରାବଶେଷର କିୟଦଂଶ ପ୍ରାପ୍ତ ହୋଇ ଏହି ସ୍ତୂପ ନିର୍ମାଣ କରାଇଥିଲେ । ଏହାର ପାର୍ଶ୍ୱରେ ନାଗସର ବିଦ୍ୟମାନ । ଏହି ନାଗ

ବାରମ୍ବାର ମନୁଷ୍ୟ ରୂପ ଧାରଣପୂର୍ବକ ସ୍ତୂପର ଚତୁର୍ଦିଗରେ ପରିକ୍ରମଣ କରି ଧର୍ମକାର୍ଯ୍ୟ ସମ୍ପାଦନ କରୁଥିଲି । ବନ୍ୟ ହସ୍ତିଗଣ; ଶୁଣ୍ଡରେ ପୁଷ୍ପ ଧାରଣ କରି ଏହିଠାକୁ ପୂଜା କରିବା ନିମିତ୍ତ ଆସୁଥିଲେ ।

ଏହି ସ୍ତୂପ ସମୀପରେ ଏକ ସଂଘାରାମ ଥିଲି । ତହିଁରେ ଜଣେ ଶ୍ରମଣ ବାସ କରୁଥିଲେ । ତାହାଙ୍କ ସମ୍ବନ୍ଧରେ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି । ପୂର୍ବକାଳରେ ଜଣେ ଭିକ୍ଷୁ ଥିଲେ । ଦୂର ଦେଶକୁ ଯାଇ ପବିତ୍ର କ୍ଷେତ୍ରମାନ ଦର୍ଶନ କରିବାକୁ ସେ ତାହାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ । ଏକଦା ଶିଷ୍ୟଗଣ ଯାଇଁ ଯାଉଁ ଦେଖିଲେ ଯେ, କେତେକ ବନ୍ୟହସ୍ତୀ ଶୁଣ୍ଡରେ ପୁଷ୍ପ ଧାରଣ କରି ଏହି ସ୍ତୂପ ସମ୍ମୁଖରେ ନିକ୍ଷେପ କରୁଅଛନ୍ତି । ତତ୍ପରେ ଭୂମି ଖନନ କରି ତହିଁରୁ ନିର୍ଗତ ଜଳ ତା ଉପରେ ସିଞ୍ଚିଲେ । ଶିଷ୍ୟଗଣ ଏହା ଦେଖି ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇଗଲେ । ତନ୍ମଧ୍ୟରୁ ଜଣେ ଭିକ୍ଷୁ ନୈତିକ କର୍ତ୍ତବ୍ୟ ସାଧନର ନିୟମ ଲଙ୍ଘନ କରି ସେହିଠାରେ ଉପାସନା କରିବା ସକାଶେ ଅବସ୍ଥାନ କରିବା ପାଇଁ ସଂକଳ୍ପ କଲେ । ସେ ଅପର ଶିଷ୍ୟମାନଙ୍କୁ କହିଲେ, "ବନ୍ୟ ହସ୍ତିଗଣ ପଶୁ ହୋଇ ଏହି ସ୍ତୂପରେ ପୂଜା କରିବା ଜାଣନ୍ତି । ଏମାନେ ପୁଷ୍ପାହରଣ, ଜଳସେଚନ ଓ ସମ୍ମାର୍ଜନ କରନ୍ତି । ଆମ୍ଭେମାନେ ମନୁଷ୍ୟ ଦେହ ଧାରଣ କରି ଏହି ନିର୍ଜନ ସ୍ଥାନରେ ଧର୍ମଜୀବନର କର୍ତ୍ତବ୍ୟ ସମ୍ପାଦନ ନ କରି ରହିବା ?" ତତ୍ପରେ ସେମାନଙ୍କଠାରୁ ବିଦାୟ ଗ୍ରହଣ କରି ସେ ସେଠାରେ ଅବସ୍ଥାନ କଲେ ଓ ଏକ ବାସଗୃହ ନିର୍ମାଣପୂର୍ବକ ସନ୍ନିକଟସ୍ଥ ଭୂମି ପରିଷ୍କାର କରି ପୁଷ୍ପ ଓ ଫଳବୃକ୍ଷ ରୋପଣ କଲେ । କି ଶୀତ କି ଗ୍ରୀଷ୍ମ ସବୁ ଋତୁରେ ଏକ ମୁହୂର୍ତ୍ତି ସୁଦ୍ଧା ସେ ଆଳସ୍ୟରେ ଅତିବାହିତ କରୁ ନ ଥିଲେ । ପ୍ରତିବେଶୀ ଦେଶସମୂହର ଅଧିବାସୀମାନେ ଏହି ବିଷୟ ଅବଗତ ହୋଇ ଏହିଠାରେ ଏକ ସଂଘାରାମ ସ୍ଥାପନ କରିବା ସକାଶେ ଅର୍ଥ ଓ ବହୁ

ମୂଲ୍ୟ ଦ୍ରବ୍ୟ ପ୍ରଦାନ କଲେ ଓ ଉକ୍ତ ଭିକ୍ଷୁଙ୍କୁ ତାହାଁର ତତ୍ତ୍ୱାବଧାନ ଭାର ଗ୍ରହଣ କରିବା ପାଇଁ ଅନୁରୋଧ କଲେ । ସେହିଦିନଠାରୁ ଏହି ନିୟମରେ ପୁରୁଷାନୁକ୍ରମେ ଏହି ସଂଘାରାମର ତତ୍ତ୍ୱାବଧାନ ହୋଇ ଆସୁଥିଲା ।

ଏହି ଶ୍ରମଣଙ୍କ ମଠର ଏକଶତ ଲି ପୂର୍ବକୁ ନିବିଡ଼ ଅରଣ୍ୟର ଅପର ପାର୍ଶ୍ୱରେ ଅଶୋକ ନରପତିଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଯୁବରାଜ ଶାକ୍ୟସିଂହ ସ୍ୱ ରାଜଧାନୀରୁ ବହିର୍ଗତ ହୋଇ ଏହି ସ୍ଥାନରେ ଉପସ୍ଥିତ ହୋଇଥିଲେ ଓ ସ୍ୱଦେହର ବହୁମୂଲ୍ୟ ପରିଚ୍ଛଦ ଓ ଅଳଙ୍କାରରାଜି ଛନ୍ଦକଙ୍କୁ ଦାନ କରିଥିଲେ । ଏହି ସ୍ଥାନରେ ଓ ଯେଉଁ ସ୍ଥାନରେ ସେ ମସ୍ତକ ମୁଣ୍ଡନ କରିଥିଲେ, ସେହି ସ୍ଥାନରେ ସ୍ମାରକ ସ୍ତୂପ ନିର୍ମିତ ହୋଇଥିଲା ।

---

## କୁଶୀ ନଗର

ଏହି ଅରଣ୍ୟ ଅତିକ୍ରମ କଲେ କୁଶୀ ନଗର । ଏହା ବର୍ତ୍ତମାନ ପରିତ୍ୟକ୍ତ ଓ ଜନଶୂନ୍ୟ ହୋଇଅଛି ।

ନଗରର ଉତ୍ତର-ପୂର୍ବ କୋଣରେ ଚନ୍ଦଙ୍କ ପ୍ରାଚୀନ ଗୃହର ଭିତ୍ତି ଉପରେ ଅଶୋକ ନରପତିଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଚନ୍ଦ ପୂଜାଦି ସମ୍ପାଦନ ସକାଶେ ଏହି ଗୃହରେ ଏକ କୂପ ଖନନ କରାଇଥିଲେ । ଅଦ୍ୟାପି ଉକ୍ତ କୂପ ବିଦ୍ୟମାନ ଅଛି । ତାହାର ଜଳ ଅତ୍ୟନ୍ତ ନିର୍ମଳ ଓ ମଧୁର ।

ନଗରର ତିନି ଚାରି ଲି ଦକ୍ଷିଣ-ପଶ୍ଚିମକୁ ଅଜିତାବତୀ ନଦୀ ପ୍ରବାହିତ ହେଉଥିଲା । ନଦୀର ଅଦୂରରେ ଏକ ଶାଳବନ । ଏହି ବନର ଶାଳ-ବୃକ୍ଷଗୁଡିକର ବଲ୍କଳର ବର୍ଣ୍ଣ ହରିତ ଓ ନୀଳ ମିଶ୍ରିତ ଏବଂ ପତ୍ରଗୁଡ଼ିକ ଶ୍ୱେତ ଓ ଦୀପ୍ତିମାନ୍ । ଏହିଠାରେ ଚାରିଗୋଟି ସୁଗଠିତ ଥିଲା । ବୁଦ୍ଧ ଏହି ସ୍ଥାନରେ ଦେହତ୍ୟାଗ କରିଥିଲେ ।

ଏଠାରେ ଇଷ୍ଟକନିର୍ମିତ ଏକ ବିହାର ଥିଲା ଓ ତନ୍ମଧ୍ୟରେ ନିର୍ବାଣ-ପ୍ରାପ୍ତ ତଥାଗତଙ୍କ ମୂର୍ତ୍ତି ବିଦ୍ୟମାନ ଥିଲା । ଉତ୍ତର ଦିଗକୁ ତାହାଙ୍କ ମୁଣ୍ଡ ଓ ଦେଖିଲେ ସେ ନିଦ୍ରିତ ହୋଇ ରହିଥିଲା ପରି ଜଣାଯାଉଥିଲା । ବିହାର ସନ୍ନିକଟରେ ଦୁଇଶତ ଫୁଟ ଉଚ୍ଚ ଅଶୋକ ନରପତିଙ୍କଦ୍ୱାରା ନିର୍ମିତ ଏକ ସ୍ତୂପ ଥିଲା । ଏହାର ପାର୍ଶ୍ୱଦେଶରେ ଏକ ପ୍ରସ୍ତର ସ୍ତମ୍ଭ ଗାତ୍ରରେ ବୁଦ୍ଧଙ୍କ ନିର୍ବାଣ ସମ୍ବନ୍ଧୀୟ ଘଟଣାବଳୀ ଲିଖିତ ହୋଇଥିଲା । କିନ୍ତୁ ତହିଁରେ ବର୍ଷ ମାସ କିଛି ଲେଖା ନ ଥିଲା ।

କଥିତ ଅଛି ଯେ, ବୁଦ୍ଧ ଏହି ସଂସାରରେ ୮୦ ବର୍ଷ ଜୀବନ ଧାରଣ କରି ରହିଥିଲେ ଓ ବୈଶାଖ ପୂର୍ଣ୍ଣିମା ଦିନ ନିର୍ବାଣପ୍ରାପ୍ତ ହେଲେ । ଏହା ବୌଦ୍ଧମାନଙ୍କ ଦ୍ୱିତୀୟ ମାସର ପଞ୍ଚଦଶ ଦିବସ । କିନ୍ତୁ ସର୍ବାସ୍ତିବାଦୀ ମତାବଲମ୍ବୀମାନେ କହନ୍ତି ଯେ, ବୁଦ୍ଧ କାର୍ତ୍ତିକ ଶୁକ୍ଳ ପକ୍ଷରେ ନିର୍ବାଣପ୍ରାପ୍ତ ହେଲେ । ଏହା ବୌଦ୍ଧମାନଙ୍କ ନବମ ମାସର ଅଷ୍ଟମ ଦିବସ ।

କେହି କେହି କହନ୍ତି—ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ପରେ ବାରଶତ ବର୍ଷ, କେହି କେହି କହନ୍ତି ପନ୍ଦର ଶତ ବର୍ଷ ଓ କେହି ବା କହନ୍ତି ନଅ ଶତ ବର୍ଷରୁ ଊର୍ଦ୍ଧ୍ୱ ଓ ଏକ ସହସ୍ର ବର୍ଷରୁ ଊଣା ଅତିବାହିତ ହୋଇଅଛି ।

ପୁଣି ଆଉ କେତେ ସ୍ତୂପ ବିଦ୍ୟମାନ ଥିଲା । ସେହି ସ୍ଥାନରେ ତଥାଗତ ତାହାଙ୍କ ସ୍ୱର୍ଣ୍ଣଶବାଧାରରେ ଉପବେଶନ କରି ଜନନୀଙ୍କ ଉଦ୍ଦେଶ୍ୟରେ ଧର୍ମୋପଦେଶ ପ୍ରଦାନ କରିଥିଲେ । ବାହୁଦ୍ୱୟ ଉତ୍ତୋଳନପୂର୍ବକ ଆନନ୍ଦଙ୍କୁ କେତେକ ପ୍ରଶ୍ନ ଜିଜ୍ଞାସା କରିଥିଲେ ଓ କାଶ୍ୟପଙ୍କୁ ସ୍ୱୀୟ ପଦଦ୍ୱୟ ପ୍ରଦର୍ଶନ କରାଇଥିଲେ । ଏହି ସ୍ଥାନରେ ତାହାଙ୍କର ଶରୀର ଚନ୍ଦନାଦି ସୁବାସିତ କାଷ୍ଠରେ ଦଗ୍ଧ ହୋଇଥିଲା ଓ ଅଷ୍ଟ ନରପତି ତାହାଙ୍କ ଅସ୍ଥି ବଣ୍ଟନ କରି ନେଇଥିଲେ ।

ଏହିଠାରୁ ନିବିଡ଼ ଅରଣ୍ୟ ମଧ୍ୟରେ ଅଷ୍ଟଶତ ଲି ପଥ ଅତିକ୍ରମ କରି ହୁଏନ୍‌ସାଂ ବାରାଣସୀରେ ଉପନୀତ ହେଲେ । ବାରାଣସୀ ଆୟତନରେ ଚାରି ସହସ୍ର ଲି ଥିଲା । ଗଙ୍ଗାନଦୀର ପଶ୍ଚିମ କୂଳରେ ଅବସ୍ଥିତ ରାଜଧାନୀର ଦୈର୍ଘ୍ୟ ଦଶ ଲି ଓ ପ୍ରସ୍ଥ ପାଞ୍ଚ ଛଅ ଲି ଥିଲା । ଏଠାରେ ତିରିଶ ଗୋଟି ସଂଘାରାମ ଓ ତନ୍ମଧ୍ୟରେ ପ୍ରାୟ ଦୁଇ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସମସ୍ତେ ହୀନଯାନାନ୍ତର୍ଗତ ସର୍ବାସ୍ତିବାଦୀ ମତାବଲମ୍ବୀମାନଙ୍କ ଶିକ୍ଷା ଗ୍ରହଣ କରିଥିଲେ ।

---

## ମୃଗଦାବ

ବରୁଣା ନଦୀ ପାରି ହୋଇ ଦଶ ଲି ଉତ୍ତର-ପୂର୍ବରେ ମୃଗ ମରୁଭୂମି ସଂଘାରାମ ବିଦ୍ୟମାନ ଥିଲା । ଏହି ସଂଘାରାମର ଉଚ୍ଚ ଚୂଡ଼ାସମୂହ ଅଭ୍ର ସ୍ପର୍ଶ କରୁଥିଲା ଓ ସୁଦୀର୍ଘ ମଞ୍ଚସମୂହ ଗୃହର ଚତୁଷ୍କୋଣରେ ମିଳିତ ହୋଇଥିଲା । ଏଠାରେ ପଞ୍ଚଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରି ସମ୍ମିତୀୟ ମତାବଲମ୍ବୀମାନଙ୍କ ଶିକ୍ଷାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ ।

ସଂଘାରାମର ବିସ୍ତୃତ ପ୍ରାଙ୍ଗଣରେ ଏକଶତ ଫୁଟ ଉଚ୍ଚ ଏକ ବିହାର ଥିଲା । ତହିଁରେ ପ୍ରସ୍ତରନିର୍ମିତ ସୋପାନଶ୍ରେଣୀ ବିଦ୍ୟମାନ ଥିଲା । ପ୍ରାଚୀର ଗାତ୍ରରେ ମୂର୍ତ୍ତି ସ୍ଥାପନ ସକାଶେ ଇଷ୍ଟକନିର୍ମିତ ଆଧାର ସନ୍ନିବେଶିତ ହୋଇଥିଲା ଓ ପ୍ରତ୍ୟେକ ଆଧାରରେ ବୁଦ୍ଧଙ୍କ ସ୍ୱର୍ଣ୍ଣମୂର୍ତ୍ତି ସ୍ଥାପିତ ହୋଇଥିଲା । ତନ୍ମଧ୍ୟସ୍ଥ ଏକ ବୃହତ୍ କକ୍ଷରେ ବୁଦ୍ଧଙ୍କ ସ୍ୱାଭାବିକ ଆକାର ସମ ଏକ ମୂର୍ତ୍ତି ରକ୍ଷିତ ହୋଇଥିଲା ଓ ସେ ହସ୍ତରେ ଧର୍ମତତ୍ତ୍ୱଚକ୍ର ଘୂର୍ଣ୍ଣନ କରୁଥିଲେ ।

ବିହାରର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅଶୋକ ନରପତିଙ୍କ ନିର୍ମିତ ଏକଶତ ଫୁଟ ଉଚ୍ଚ ଏକ ପ୍ରସ୍ତର-ସ୍ତୂପ ଓ ତତ୍‌ସମ୍ମୁଖରେ ସତୁରି ଫୁଟ

ଉଚ୍ଚ ଏକ ପ୍ରସ୍ତର-ସ୍ତମ୍ଭ ଥିଲା । ଏହି ସ୍ଥାନରେ ବୁଦ୍ଧ ସର୍ବପ୍ରଥମରେ ଧର୍ମ ପ୍ରଚାର ଆରମ୍ଭ କରିଥିଲେ । ଏହାର ପାର୍ଶ୍ୱଦେଶରେ ମୈତ୍ରୀ ବୋଧିସତ୍ତ୍ୱ ଭବିଷ୍ୟଦ୍‌ବାଣୀ ପ୍ରାପ୍ତ ହୋଇଥିଲେ ।

ଏହାର ପଶ୍ଚିମରେ ଏକ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ଭଦ୍ରକଳ୍ପ ମଧ୍ୟରେ ପ୍ରଭାପାଳ ବୋଧିସତ୍ତ୍ୱ ରୂପରେ ଜନ୍ମଗ୍ରହଣ କରିଥିଲେ । ଭଦ୍ରକଳ୍ପରେ ମନୁଷ୍ୟର ପରମାୟୁ ବିଂଶ ସହସ୍ର ବର୍ଷ ଥିଲା । କାଶ୍ୟପ ମଧ୍ୟ ବୁଦ୍ଧ ରୂପରେ ଏହିଠାରେ ଭବିଷ୍ୟତ୍ ବାଣୀ ପ୍ରାପ୍ତ ହୋଇଥିଲେ ।

ଏହି ସ୍ଥାନର ଦକ୍ଷିଣ ପାର୍ଶ୍ୱସ୍ଥ ଏକ ସ୍ଥାନରେ ପୂର୍ବକାଳର ବୁଦ୍ଧ-ଚତୁଷ୍ଟୟ କ୍ଷିପ୍ର ଗତିରେ ପାଦ ଚାରଣ କରୁଥିଲେ । ଏହାର ଦୈର୍ଘ୍ୟ ପାଞ୍ଚ ଶତ ଫୁଟ ଓ ଉଚ୍ଚତା ସାତଫୁଟ ଏବଂ ଏହା ଈଷତ୍ ହରିତ୍ ଓ ନୀଳମିଶ୍ରିତ ବର୍ଣ୍ଣବିଶିଷ୍ଟ ପ୍ରସ୍ତରରେ ନିର୍ମିତ । ଏଥିରେ ପାଦଚାରଣରତ ବୁଦ୍ଧଚତୁଷ୍ଟୟଙ୍କ ମୂର୍ତ୍ତି ଅଙ୍କିତ ହୋଇଥିଲା ।

ସଂଘାରାମର ପଶ୍ଚିମରେ ଏକ ଜଳାଶୟ ଥିଲା । ଏହି ଜଳା-ଶୟରେ ବୁଦ୍ଧ ତାହାଙ୍କ ଭିକ୍ଷାପାତ୍ର ଓ ବସ୍ତ୍ର ଧୌତ କରୁଥିଲେ । ଏହି ଜଳାଶୟ ନାଗ-ରକ୍ଷିତ; ତେଣୁ ଏହାର ଜଳ କେହି ଦୂଷିତ କରିପାରୁ ନ ଥିଲେ । ଏହାର ସନ୍ନିକଟସ୍ଥ ଏକ ସ୍ତୂପ ପାର୍ଶ୍ୱରେ ବୁଦ୍ଧ ଯେତେ-ବେଳେ ଷଡ୍‌ଦନ୍ତବିଶିଷ୍ଟ ଶ୍ୱେତହସ୍ତୀ ପରି ଆକାର ଧାରଣ କରି ବୋଧିସତ୍ତ୍ୱ ପ୍ରାପ୍ତି ସକାଶେ ତପସ୍ୟା କରୁଥିଲେ, ସେତେବେଳେ ଏକ ବ୍ୟାଧକୁ ଉକ୍ତ ଦନ୍ତଗୁଡ଼ିକ ଦାନ କରୁଥିଲେ । ପୁଣି ଏହି ସ୍ଥାନରେ ସେ ପକ୍ଷୀ ରୂପରେ ଜନ୍ମଗ୍ରହଣ କରି ଏକ ବାନର ଓ ଏକ ଶ୍ୱେତ ହସ୍ତୀ ସହିତ ଅବସ୍ଥାନ କରୁଥିଲେ । ସେ ଗୋଟିଏ ବଟବୃକ୍ଷର ବୟସ ଅନୁସାରେ ସେମାନଙ୍କର ବୟସ ନିରୂପଣ କରି ସେମାନଙ୍କର ରୂପ ପରିବର୍ତ୍ତିନ କରିଥିଲେ । ପୁଣି ସେ ଏଠାରେ ମୃଗରାଜ ରୂପରେ ଜନ୍ମଗ୍ରହଣ କରି-ଥିଲେ ଓ କୁଣ୍ଡିନ୍ୟ ପ୍ରମୁଖ ପାଞ୍ଚଜଣଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରିଥିଲେ ।

## ଚେଂ-ଚୁ ( ଗାଜିପୁର୍ ) ଓ ବୈଶାଲୀରେ ପ୍ରବେଶ

ଏହି ସ୍ଥାନରୁ ହୁଏନ୍‌ସାଂ ଗଙ୍ଗାନଦୀ ପଥରେ ପୂର୍ବକୁ ଗମନ କରି ଚେଂ ଚୁ ( ଗାଜିପୁର ) ରେ ଓ ସେହିଠାରୁ ଉତ୍ତର-ପୂର୍ବକୁ ୧୪୦ ବା ୧୫୦ ଲି ପଥ ଅତିକ୍ରମ କରି ଗଙ୍ଗାନଦୀର ଅପର ପାର୍ଶ୍ୱସ୍ଥ ବୈଶାଳୀ ରାଜ୍ୟରେ ଉପସ୍ଥିତ ହେଲେ ।

ବୈଶାଳୀ ଆୟତନରେ ପଞ୍ଚସହସ୍ର ଲି ଥିଲା । ଏହାର ମୃତ୍ତିକା ବାଲୁକା ଓ ଉଦ୍ଭିଦସାର ମିଶ୍ରିତ ଥିଲା ଓ ଏଠାରେ ଜଳସେଚନର ସୁଯୋଗ ଥିଲା । ଏଥିରେ ଆମ୍ବ ଓ ମୋଚା ଫଳ ଉତ୍ପନ୍ନ ହେଉଥିଲା । ସେତେବେଳେ ରାଜଧାନୀ ଧ୍ୱସ୍ତ ଓ ପ୍ରାୟ ଜନଶୂନ୍ୟ ହୋଇଥିଲା । ଏହାର ପ୍ରାଚୀନ ଭିତ୍ତିର ଆୟତନ ୭୦।୮୦ ଲି । ଅତି ଅଳ୍ପସଂଖ୍ୟକ ଲୋକ ସେତେବେଳେ ଏଠାରେ ବାସ କରୁଥିଲେ ।

ପ୍ରାଚୀନ ରାଜପ୍ରାସାଦର ପାଞ୍ଚ ଛଅ ଲି ଉତ୍ତର-ପଶ୍ଚିମକୁ ଏକ ସଂଘାରାମ ଓ ତତ୍‌ପାର୍ଶ୍ୱରେ ଏକ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ବିମଳ କୀର୍ତ୍ତିସୂତ୍ର ଆବୃତ୍ତି କରିଥିଲେ ।

ଏହି ସ୍ଥାନର ତିନି ଚାରି ଲି ଉତ୍ତର-ପୂର୍ବକୁ ଆଉ ଏକ ସ୍ତୂପ ଥିଲା । ଏଠାରେ ବିମଳକୀର୍ତ୍ତିଙ୍କ ବାସଗୃହର ଭଗ୍ନାବଶେଷ ଥିଲା । ଏହି ସ୍ଥାନରେ ନାନାପ୍ରକାର ବିସ୍ମୟକର ଅପାର୍ଥିବ ଅଲୌକିକ ଲକ୍ଷଣସମୂହ ଦୃଷ୍ଟିଗୋଚର ହେଉଥିଲା । ଏହାର ଅନତିଦୂରରେ ସ୍ତୂପୀକୃତ ପ୍ରସ୍ତର-ନିର୍ମିତ ଏକ ଗୃହ ଥିଲା । ଏହି ସ୍ଥାନରେ ବିମଳକୀର୍ତ୍ତି ରୋଗଶଯ୍ୟାରେ ଶାୟିତ ଥାଇ ଧର୍ମନୀତି ପ୍ରଚାର କରିଥିଲେ । ଏହି ଗୃହର ସନ୍ନିକଟରେ ରତ୍ନାକର ଓ ଉଦମହିଳା ଅମ୍ରଦାରିକାଙ୍କ ପ୍ରାଚୀନ ବାସଗୃହ ଥିଲା ।

ଏହିଠାରୁ ଛଅ ଶହ ଲି ଉତ୍ତରରେ ଏକ ସ୍ତୂପ ଥିଲା । ବୁଦ୍ଧଦେବ ମାନବ-ପରିବେଷ୍ଟିତ ହୋଇ ନିର୍ବାଣପ୍ରାପ୍ତି ଉଦ୍ଦେଶ୍ୟରେ କୁଶୀ ନଗରକୁ ଯାଉଥିବା ମାର୍ଗରେ ଏହି ସ୍ଥାନରେ ଅଳ୍ପ ସମୟ ଅବସ୍ଥାନ କରିଥିଲେ । ପୁଣି ଏହାର ପଶ୍ଚିମ ପାର୍ଶ୍ୱସ୍ଥ ଏକ ସ୍ଥାନରେ ଦଣ୍ଡାୟମାନ ହୋଇ ବୈଶାଳୀ ପ୍ରତି ତାହାଙ୍କର ଶେଷ ଦୃଷ୍ଟି ନିକ୍ଷେପ କରିଥିଲେ । ଏହାର ଦକ୍ଷିଣ ପାର୍ଶ୍ୱରେ ଆମ୍ରଦାରିକାଙ୍କର ଏକ ଉଦ୍ୟାନ ଥିଲା । ତାହା ସେ ବୁଦ୍ଧଙ୍କୁ ଦାନ କରିଥିଲେ । ଏହାର ସନ୍ନିକଟସ୍ଥ ଏକ ସ୍ଥାନରେ ବୁଦ୍ଧ ମାର ରାଜାଙ୍କ ଅନୁରୋଧରେ ନିର୍ବାଣ କାମନା କରିଥିଲେ ।

ବୈଶାଳୀର ଦକ୍ଷିଣ ସୀମା ଅତିକ୍ରମ କରି ଗଙ୍ଗା ନଦୀ ପଥରେ ଏକଶତ ଲି ଗଲେ ଶ୍ୱେତପୁର ନଗର । ଏହି ନଗରରେ ହୁଏନ୍‌ସାଂ ବୋଧିସତ୍ତ୍ୱ ପାଠକସୂତ୍ର ପ୍ରାପ୍ତ ହୋଇଥିଲେ ।

ଏହିଠାରୁ ଦକ୍ଷିଣ ଦିଗରେ ଗମନ କରି ଗଙ୍ଗାନଦୀ ପାରିହେଲେ ମଗଧ ରାଜ୍ୟ । ଏହାର ଆୟତନ ପାଞ୍ଚ ସହସ୍ର ଲି । ଏହି ଦେଶର ଅଧିବାସିଗଣ ବିଦ୍ୱାନ୍ ଓ ଧର୍ମପରାୟଣ । ଏଠାରେ ପ୍ରାୟ ପଚାଶ ଗୋଟି ସଂଘାରାମ ଥିଲା ଓ ତନ୍ମଧ୍ୟରେ ମହାଯାନାବଲମ୍ବୀ ଦଶସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ପ୍ରାଚୀନ ସହର ଥିଲା । ତାହା ଆୟତନରେ ପ୍ରାୟ ସତୁରି ଲି । ବର୍ତ୍ତମାନ ଏହା ଧ୍ୱସ୍ତ ଓ ଜନଶୂନ୍ୟ ହେଲେ ହେଁ ପ୍ରାଚୀନ ସହରର ପ୍ରାଚୀରସମୂହ ଅଦ୍ୟାପି ବିଦ୍ୟମାନ ଅଛି ।

---

## ମଗଧ-ପାଟଳୀପୁତ୍ର ପୁର

ପୂର୍ବକାଳରେ ଯେତେବେଳେ ମନୁଷ୍ୟମାନେ ଅସଂଖ୍ୟ ବର୍ଷ ଜୀବନ ଧାରଣ କରୁଥିଲେ, ସେତେବେଳେ ଏହି ନଗରାଭ୍ୟନ୍ତରସ୍ଥ ରାଜପ୍ରାସାଦ କୁସୁମୋଦ୍ୟାନରେ ପରିପୂର୍ଣ୍ଣ ହୋଇଥିବାରୁ ତାହା

କୁସୁମପୁର ନାମରେ ଅଭିହିତ ହୋଇଥିଲା । ଏହା ଉତ୍ତାରେ ଯେତେବେଳେ ମନୁଷ୍ୟମାନଙ୍କର ପରମାୟୁ କେବଳ ଅଳ୍ପ ସହସ୍ର ବର୍ଷ ହେଲା, ସେତେବେଳେ ତନ୍ମଧ୍ୟରେ ପ୍ରଚୁର ପାଟଳୀବୃକ୍ଷ ଥିବାରୁ ତାହା ପାଟଳୀପୁତ୍ରପୁର ନାମରେ ଅଭିହିତ ହେଲା ।

ବୁଦ୍ଧଙ୍କ ନିର୍ବାଣପ୍ରାପ୍ତିର ଏକଶତ ବର୍ଷ ଉତ୍ତାରେ ମଗଧରେ ଅଶୋକନାମକ ଏକ ନରପତି ରାଜତ୍ୱ କରୁଥିଲେ । ସେ ରାଜା ବିମ୍ବିସାରଙ୍କ ପ୍ରପୌତ୍ର ଥିଲେ । ଅଶୋକ ସ୍ୱୀୟ ରାଜଧାନୀକୁ ରାଜଗୃହରୁ ପାଟଳୀପୁତ୍ରକୁ ସ୍ଥାନାନ୍ତରିତ କରିଥିଲେ । ସେହିଦିନଠାରୁ ବହୁବର୍ଷ ଅତୀତ ହୋଇଥିଲା । ରାଜଗୃହରେ ପୁରାତନ ରାଜଧାନୀର ଭଗ୍ନାବଶେଷ ବ୍ୟତୀତ ଆଉ କିଛି ନ ଥିଲା । ସେଠାରେ ଶତ ଶତ ମଠ ଥିଲା । ତନ୍ମଧ୍ୟରୁ ସେତେବେଳକୁ କେବଳ ଦୁଇ ତିନୋଟି ବିଦ୍ୟମାନ ଥିଲା ।

ଗଙ୍ଗାକୂଳବର୍ତ୍ତୀ ପ୍ରାଚୀନ ରାଜପ୍ରାସାଦର ଉତ୍ତର ପାର୍ଶ୍ୱରେ ଏକ କ୍ଷୁଦ୍ର ସହର ଏବଂ ତହିଁରେ ଏକ ସହସ୍ର ବାସଗୃହ ଥିଲା । ରାଜପ୍ରାସାଦର ଉତ୍ତର ପାର୍ଶ୍ୱରେ ଏକ ଅତ୍ୟୁଚ୍ଚ ପ୍ରସ୍ତର-ସ୍ତମ୍ଭ । ଏହି ସ୍ଥାନରେ ଅଶୋକ ନରକ ( ପୀଡ଼ନଭୂମି ) ନିର୍ମାଣ କରିଥିଲେ । ହୁଏନ୍‌ସାଂ ଏଠାରେ ସପ୍ତ ଦିବସ ଅତିବାହିତ କରି ପବିତ୍ର ସ୍ଥାନସମୂହରେ ପୂଜା ପ୍ରଦାନ କରିଥିଲେ ।

ଏହି ପୀଡ଼ନଭୂମିର ଦକ୍ଷିଣ ପାର୍ଶ୍ୱରେ ଏକ ସ୍ତୂପ ଥିଲା । ଅଶୋକ ମାନବ ଶିଳ୍ପକାରଙ୍କ ହସ୍ତରେ ଚଉରାଅଶୀ ହଜାର ସ୍ତୂପ ନିର୍ମାଣ କରାଇଥିଲେ । ଏହା ତନ୍ମଧ୍ୟରୁ ଗୋଟିଏ । ଏହି ସ୍ତୂପ ମଧ୍ୟରେ ବୁଦ୍ଧଙ୍କ ଦେହାବଶେଷର କିୟଦଂଶ ରକ୍ଷିତ ହୋଇଥିଲା । ତହିଁରୁ ଏକ ପ୍ରକାର ସ୍ୱର୍ଗୀୟ ଜ୍ୟୋତି ନିର୍ଗତ ହେଉଥିଲା ।

ଏହାର ସନ୍ନିକଟରେ ଏକ ବିହାର ଥିଲା । ତଦଭ୍ୟନ୍ତରସ୍ଥ ଏକ ପ୍ରସ୍ତର ଉପରେ ବୁଦ୍ଧ ପାଦଚାରଣ କରୁଥିଲେ । ତଦୁପରି ବୁଦ୍ଧଙ୍କ ପଦଚିହ୍ନ ଅଙ୍କିତ ରହିଥିଲା । ଏହାର ଦୈର୍ଘ୍ୟ କୋଡ଼ିଏ ଇଞ୍ଚ ଓ ପ୍ରସ୍ଥ

ଛଅ ଇଞ୍ଚ । ପ୍ରତି ପଦତଳରେ ଏକ ସହସ୍ର ଅରବଶିଷ୍ଟ ଚକ୍ରଚିହ୍ନ ଓ ପ୍ରତି ଅଙ୍ଗୁଳିରେ ପୁଷ୍ପପାବ ମତ୍ସ୍ୟାଙ୍କବଶିଷ୍ଟ ସ୍ୱସ୍ତିକ ଚିହ୍ନ ବିଦ୍ୟମାନ ଥିଲା । ବୁଦ୍ଧ ନିର୍ବାଣପ୍ରାପ୍ତି ଉଦ୍ଦେଶ୍ୟରେ ବୈଶାଳୀ ତ୍ୟାଗ କରି ଏଠାରେ ଉପସ୍ଥିତ ହୋଇଥିଲେ ଓ ନଦୀର ଦକ୍ଷିଣ ପାର୍ଶ୍ୱସ୍ଥ ଏହି ପ୍ରସ୍ତର ଉପରେ ଦଣ୍ଡାୟମାନ ହୋଇ ଆନନ୍ଦଙ୍କୁ ସମ୍ବୋଧନ କରି କହିଥିଲେ, "ଆଉ ବଜ୍ରାସନ ଓ ରାଜଗୃହ ମୋର ଦୃଷ୍ଟିରେ ପତିତ ହେବ ନାହିଁ ।" ତଦୃରେ ଉକ୍ତ ପ୍ରସ୍ତରୋପରି ତାହାଙ୍କର ପଦଚିହ୍ନ ଅଙ୍କିତ ହୋଇ ରହିଲା ।

---

## ବୋଧିମଣ୍ଡଳ-ବୋଧିଦ୍ରୁମ

ଉକ୍ତ ବିହାରର ଉତ୍ତର ପାର୍ଶ୍ୱରେ ତିରିଶ ଫୁଟ ଉଚ୍ଚ ଏକ ସ୍ତମ୍ଭ ଥିଲା । ସେହି ସ୍ତମ୍ଭରେ ଲିଖିତ ହୋଇଥିଲା ଯେ, ଅଶୋକ ନରପତି ବୁଦ୍ଧ ଧର୍ମ ଓ ସଂଘଙ୍କୁ ତିନିବାର ସମଗ୍ର ଜମ୍ବୁଦ୍ୱୀପ ଦାନ କରି ତିନି ବାର ଧନରତ୍ନ ସହ ତାହା ପୁନର୍ଗ୍ରହଣ କରିଥିଲେ ।

ନଗରର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅଶୋକ-ନିର୍ମିତ କୁକ୍କୁଟାରାମ ମଠର ଭଗ୍ନାବଶେଷ ବିଦ୍ୟମାନ ଥିଲା । ଏହି ସ୍ଥାନରେ ସେ ଏକ ସହସ୍ର ସନ୍ନ୍ୟାସୀଙ୍କୁ ଆହ୍ୱାନ କରି ଚତୁର୍ବିଧ ସାମଗ୍ରୀ ଦାନ କରିଥିଲେ । ହୁଏନ୍‌ସାଂ ତାହାଙ୍କର ସପ୍ତଦିବସବ୍ୟାପୀ ଅବସ୍ଥାନ ସମୟରେ ଏହି ସମସ୍ତ ପବିତ୍ର ସ୍ଥାନରେ ପୂଜା ଅର୍ପଣ କରିଥିଲେ ।

ଏହି ସ୍ଥାନରୁ ଦକ୍ଷିଣ-ପଶ୍ଚିମ ଦିଗରେ ଛଅ ସାତ ଯୋଜନ ପଥ ଅତିକ୍ରମ କରି ସେ ତିଲଡକ ମଠରେ ଉପସ୍ଥିତ ହେଲେ । ଏହି ମଠରେ ବହୁସଂଖ୍ୟକ ହିଁପିଠକଜ୍ଞ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ଏବଂ ହୁଏନ୍‌ସାଂଙ୍କ ଆଗମନ-ବାର୍ତ୍ତା ଶ୍ରବଣ କରି ତାହାଙ୍କୁ ଦର୍ଶନ କରିବା ନିମନ୍ତେ ସେମାନେ ଦଳବଦ୍ଧ ହୋଇ ସେଠାକୁ ଆଗମନ କଲେ ।

ଏହି ସ୍ଥାନରୁ ଏକଶତ ଲି ଦକ୍ଷିଣକୁ ବୋଧିଦ୍ରୁମ ବିଦ୍ୟମାନ । ଏହି ଦ୍ରୁମ ଉଚ୍ଚ ଏବଂ ସୁଦୃଢ଼ ଇଷ୍ଟକ ପ୍ରାଚୀରଦ୍ୱାରା ରକ୍ଷିତ ହୋଇଥିଲା । ଉକ୍ତ ପ୍ରାଚୀର ପୂର୍ବରୁ ପଶ୍ଚିମକୁ ଦୀର୍ଘାକୃତ ଏବଂ ଉତ୍ତରରୁ ଦକ୍ଷିଣକୁ କ୍ଷୀଣାକୃତ ହୋଇ ରହିଥିଲା । ଏହାର ପ୍ରଧାନ ଦ୍ୱାର ପୂର୍ବମୁଖରେ ନିରଞ୍ଜନା ନଦୀ ଆଡ଼କୁ ମୁଖ କରିଥିଲା । ଦକ୍ଷିଣ ଦ୍ୱାର ଏକ ବୃହତ୍ ପୁଷ୍ପପୂର୍ଣ୍ଣ ଜଳାଶୟ କୂଳରେ ଅବସ୍ଥିତ ଥିଲା । ପଶ୍ଚିମ ଦ୍ୱାର ଏକ ପର୍ବତଦ୍ୱାରା ସୁରକ୍ଷିତ । ଉତ୍ତର ଦ୍ୱାର ସମ୍ମୁଖରେ ଏକ ବୃହତ୍ ସଂଘାରାମ ଥିଲା । ଏହା ମଧ୍ୟରେ ବହୁ ଆଦ୍ଭୁତ ବିହାର ସ୍ତୂପ ଓ ପବିତ୍ର ସ୍ଥାନସମୂହ ବିଦ୍ୟମାନ । ଏହି ସମସ୍ତ ଭିନ୍ନ ଭିନ୍ନ ରାଜ୍ୟର ଧର୍ମପରାୟଣ ନରପତି, ଅମାତ୍ୟ ଓ ଧନଶାଳୀ ସମ୍ଭ୍ରାନ୍ତ ବ୍ୟକ୍ତିଗଣ ଚିରକାଳ ଧର୍ମରକ୍ଷା ସଙ୍କାଶେ ନିର୍ମାଣ କରିଥିଲେ । ବେଡାର କେନ୍ଦ୍ର ସ୍ଥଳରେ ହୀରକ ସିଂହାସନ ବିଦ୍ୟମାନ ଥିଲା । ଭଦ୍ରକଳ୍ପର ପ୍ରାରମ୍ଭରେ ଏହାର ନିର୍ମାଣ ସମାପ୍ତ ହୋଇଥିଲା । ଏହା ଭୂମଣ୍ଡଳ ସୃଷ୍ଟି ହେଲା ସମୟରେ ଭୂଗର୍ଭରୁ ଉତ୍‌ଥିତ ହୋଇଥିଲା ଓ ଏହା ଭୂମଣ୍ଡଳର କେନ୍ଦ୍ରସ୍ଥଳ । ଭୂଗର୍ଭସ୍ଥ ସ୍ୱର୍ଣ୍ଣଚକ୍ର ପର୍ଯ୍ୟନ୍ତ ଗମନ କରି ଏହା ସେଠାରୁ ପୁନର୍ବାର ପୃଥିବୀ-ପୃଷ୍ଠକୁ ଉତ୍‌ଥିତ ହୋଇଥିଲା । ଏହା ହୀରକ-ନିର୍ମିତ ଓ ଏହାର ପରିଧି ଏକ ଶତ ପଦ । ହୀରକ ଏଠାରେ ଏକ କଠିନ ଓ ଅବିନଶ୍ୱର ପଦାର୍ଥ ଏବଂ ସମସ୍ତ ବସ୍ତୁର ପ୍ରତିରୋଧକ ଅର୍ଥରେ ବ୍ୟବହୃତ ହୋଇଅଛି । ଏହା ନ ଥିଲେ ପୃଥିବୀ ରହିପାରି ନ ଥାନ୍ତା । ଆସନଟି ହୀରକ ତୁଲ୍ୟ କଠିନ ନ ଥିଲେ ପୃଥିବୀର କୌଣସି ଅଂଶ ବଜ୍ର ସମାଧିପ୍ରାପ୍ତ ବ୍ୟକ୍ତିକୁ ବହନ କରି ପାରି ନ ଥାନ୍ତା ।

ଯେଉଁ ବ୍ୟକ୍ତି ମାରକୁ ଜୟ କରିବାକୁ ଓ ପୂର୍ଣ୍ଣ ଜ୍ଞାନ ପ୍ରାପ୍ତ ହେବାକୁ ଇଚ୍ଛା କରେ, ତାହାକୁ ଏହି ସ୍ଥାନରେ ଉପବେଶନ କରିବାକୁ ହୁଏ । ଅନ୍ୟ ସ୍ଥାନକୁ ପରୀକ୍ଷା କରିବାକୁ ଗଲେ ପୃଥିବୀ ଆକାଶମାର୍ଗକୁ

ଉଦ୍ଭିତ ହେବ । ତେଣୁ କରି ଭଦ୍ରକଳ୍ପର ଏକ ସହସ୍ର ବୁଦ୍ଧ ଏହି ସ୍ଥାନରେ ମୁକ୍ତି ଲାଭ କରିଅଛନ୍ତି । ଏହି ପୂର୍ଣ୍ଣଜ୍ଞାନ ପ୍ରାପ୍ତି ସ୍ଥାନର ନାମ ବୋଧିମଣ୍ଡଳ । ପୃଥିବୀ ସମୂଳେ କମ୍ପିତ ହେଲେ ସୁଦ୍ଧା ଏହି ସ୍ଥାନ କେବଳ ଅବିଚଳିତ ହୋଇ ରହିବ ।

ଶହେ ଦୁଇଶହ ବର୍ଷ ଉତ୍ତାରେ ବୋଧିଦ୍ରୁମ ନିକଟକୁ ଆଗମନ କଲାରୁ ମାନବ ସମାଜର ପୁଣ୍ୟ କ୍ଷୟ ହେବ ଓ ସେତେବେଳେ ଉକ୍ତ ବଜ୍ରାସନ ପୃଥିବୀରୁ ଲୁପ୍ତ ହେବ ।

ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ଉତ୍ତାରେ ବିଭିନ୍ନ ଦେଶର ନରପତିଗଣ ପୂର୍ବମୁଖରେ ଅବସ୍ଥିତ ବୋଧିସତ୍ତ୍ୱଙ୍କ ମୂର୍ତ୍ତିଦ୍ୱୟଠାରୁ ଉତ୍ତରରୁ ଦକ୍ଷିଣକୁ ବେଡାର ସୀମା ନିର୍ଦ୍ଦେଶ କଲେ । କଥିତ ଅଛି ଯେ, ଯେତେବେଳେ ବୋଧିସତ୍ତ୍ୱଙ୍କ ଏହି ମୂର୍ତ୍ତିଦ୍ୱୟ ଅଦୃଶ୍ୟ ହେବ, ସେତେବେଳେ ବୁଦ୍ଧଙ୍କ ଧର୍ମନୀତି ଲୁପ୍ତ ହେବ । ଦକ୍ଷିଣ ପାର୍ଶ୍ୱସ୍ଥ ମୂର୍ତ୍ତିର ବକ୍ଷ ପର୍ଯ୍ୟନ୍ତ ଅଦୃଶ୍ୟ ହୋଇଥିଲା ।

ବୋଧିଦ୍ରୁମ ଅଶ୍ୱତ୍ଥ ବୃକ୍ଷର ନାମାନ୍ତର ଅଟେ । ବୁଦ୍ଧଙ୍କ ଜୀବିତାବସ୍ଥାରେ ଏହା ବହୁଶତ ଫୁଟ ଉଚ୍ଚ ଥିଲା । ଦୁରାତ୍ମା ନରପତି-ଗଣ ଏହାକୁ ବାରମ୍ବାର କର୍ତ୍ତନ କରିବାରୁ ଏହାର ଉଚ୍ଚତା ସେହି ସମୟରେ ପଚାଶ ଫୁଟରେ ପରିଣତ ହୋଇ ରହିଥିଲା । ଏହି ଦ୍ରୁମ ତଳରେ ଉପବିଷ୍ଟ ହୋଇ ବୁଦ୍ଧ ଅନୁତ୍ତର (ସମ୍ୟକ୍) ବୋଧି ଲାଭ କରିଥିବାରୁ ଏହା ବୋଧିଦ୍ରୁମ ନାମରେ ଅଭିହିତ ହେଲା । ଏହାର ବଲ୍କଳ ଈଷତ୍ ପୀତବର୍ଣ୍ଣ ଓ ପତ୍ର ଉଜ୍ଜ୍ୱଳ ହରିଦ୍‌ବର୍ଣ୍ଣ । ଶରତ୍ ଓ ଶୀତକାଳରେ ବୃକ୍ଷ ପଲ୍ଲବିତ ହୋଇ ରହିଥାଏ, କେବଳ ବୁଦ୍ଧଙ୍କ ନିର୍ବାଣ ଦିବସରେ ପତ୍ରସମୂହ ପତିତ ହୁଏ; କିନ୍ତୁ ଉକ୍ତ ଦିବସର ସନ୍ଧ୍ୟା ଆଗମରେ ବୃକ୍ଷ ପୁନର୍ବାର ପଲ୍ଲବ ଧାରଣ କରେ । ପ୍ରତିବର୍ଷ ଏହି ଦିବସରେ ନାନା ଦେଶରୁ ରାଜା, ମନ୍ତ୍ରୀ ଓ ଉଚ୍ଚପଦସ୍ଥ କର୍ମଚାରୀ

ପ୍ରଭୃତି ଆସି ଏହି ବୃକ୍ଷ ମୂଳରେ ସମବେତ ହୋଇ ଦୁଗ୍ଧ ସେଚନ, ଦୀପ ଓ ପୁଷ୍ପ ପ୍ରଦାନ କରୁଥିଲେ ଏବଂ ପତ୍ର ସଂଗ୍ରହ କରି ସେଠାରୁ ପ୍ରତ୍ୟାବର୍ତ୍ତନ କରୁଥିଲେ ।

ହୁଏନ୍‌ସାଂ ଉକ୍ତ ବୋଧିଦ୍ରୁମ ଓ ମୈତ୍ରେୟ ବୋଧିସତ୍ତ୍ୱଙ୍କ ହସ୍ତ-ନିର୍ମିତ ବୁଦ୍ଧଙ୍କ ପୂନର୍ଜ୍ଞାନ ପ୍ରାପ୍ତି ସମୟର ପ୍ରତିମୂର୍ତ୍ତି ପୂଜା କରିବାକୁ ଆସି ଏ ସମସ୍ତ ବସ୍ତୁ ପ୍ରତି ଭକ୍ତି ପୁରଃସର ଦୃଷ୍ଟି ନିକ୍ଷେପ କଲେ ଓ ତତ୍ପରେ ମୂର୍ହ୍ନି ମାଡ ଭୂମିରେ ନିପତିତ ହେଲେ ଓ ଦୁଃଖରେ ଅଭିଭୂତ ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗପୂର୍ବକ ଗଳଦଶ୍ରୁଲୋଚନରେ କହିଲେ, "ଯେତେବେଳେ ବୁଦ୍ଧ ପୂର୍ଣ୍ଣଜ୍ଞାନ ପ୍ରାପ୍ତ ହେଲେ, ସେତେବେଳେ ମୁଁ ଜାଣେ ନାହିଁ, ଜନ୍ମମୃତ୍ୟୁର ଭୟଙ୍କର ଆବର୍ତ୍ତିରେ ମୁଁ କି ଅବସ୍ଥାରେ ଥିଲି । କିନ୍ତୁ ଏହିକ୍ଷଣି ଏହି ମୂର୍ତ୍ତି-ପୂଜା କାଳରେ ଏହି ସ୍ଥାନକୁ ଆସି ମୋର ଦୁଷ୍କର୍ମସମୂହର ଚିନ୍ତା ଓ ତହିଁର ଗଭୀରତା ଓ ଦୁର୍ବହ ଭାର ହୃଦୟଙ୍ଗମ କରିବାରୁ ମୋର ହୃଦୟ ଦୁଃଖରେ ଓ ଚକ୍ଷୁଦ୍ୱୟ ଲୋତକରେ ପୂର୍ଣ୍ଣ ହୋଇଯାଉଅଛି ।" ଏହି ସମୟରେ ବିଭିନ୍ନ ସ୍ଥାନରୁ ବହୁ ସହସ୍ରସଂଖ୍ୟକ ସନ୍ନ୍ୟାସୀ ଉପସ୍ଥିତ ହେଲେ ଓ ହୁଏନ୍‌ସାଂଙ୍କ ଦର୍ଶନ କଲମାତ୍ରକେ ସେମାନଙ୍କର ହୃଦୟ ଦୟା ଓ ଦୁଃଖରେ ପରିପୂର୍ଣ୍ଣ ହେଲା । ଏହି ସ୍ଥାନର ଚତୁର୍ଦ୍ଦିଗରେ ଥିବା ଏକ ଯୋଜନ-ପରିମିତ ଭୂମି ପବିତ୍ର କ୍ଷେତ୍ରସମୂହରେ ପୂର୍ଣ୍ଣ ହୋଇ-ଥିଲା । ହୁଏନ୍‌ସାଂ ଏହିଠାରେ ଆଠ ନଅଦିନ କାଳ ଅବସ୍ଥାନ କରି ପ୍ରତ୍ୟେକ ସ୍ଥାନରେ ପୂଜା ଅର୍ପଣ କରିଥିଲେ ।

---

## ନାଳନ୍ଦ ମଠରେ ପ୍ରବେଶ

ଦଶମ ଦିବସରେ ସେ ନାଳନ୍ଦ ମଠକୁ ଯାତ୍ରା କଲେ । ନାଳନ୍ଦ ମଠର ସନ୍ନ୍ୟାସିମଣ୍ଡଳୀ ସେମାନଙ୍କ ମଧ୍ୟରୁ ବଶିଷ୍ଠ ବୃଦ୍ଧ ଜଣଙ୍କୁ

ହୁଏନ୍‌ସାଂଙ୍କୁ ଭେଟିବା ସକାଶେ ମନୋନୀତ କରିଥିଲେ । ହୁଏନ୍‌ସାଂ ସେମାନଙ୍କ ସମଭିବ୍ୟାହାରରେ ସାତ ଯୋଜନ ପଥ ଅତିକ୍ରମ କରି ମଠର ଖମାର ଗୃହରେ ଉପନୀତ ହେଲେ । ଯେଉଁ ଗ୍ରାମରେ ଖମାର ଗୃହ ବିଦ୍ୟମାନ ଥିଲା, ସେହିଠାରେ ଭକ୍ତଭାଜନ ମୌଦ୍‌ଗଲ୍ୟାୟନ ଜନ୍ମଗ୍ରହଣ କରିଥିଲେ । ହୁଏନ୍‌ସାଂ ଏହିଠାରେ ଅଳ୍ପ ସମୟ ବିଶ୍ରାମ କଲେ । ଦୁଇ ଶତ ସନ୍ନ୍ୟାସୀ ଓ ବହୁସଂଖ୍ୟକ ଅନ୍ୟ ବ୍ୟକ୍ତି ଧ୍ୱଜ, ଛତ୍ର, ପୁଷ୍ପ ଓ ଗନ୍ଧ ଦ୍ରବ୍ୟହସ୍ତରେ ସମବେତ ହୋଇ ତାହାଙ୍କ ସ୍ତୁତି ଗାନ କରିବାକୁ ଲାଗିଲେ । ତତ୍ପରେ ସେ ନାଳନ୍ଦାରେ ପ୍ରବିଷ୍ଟ ହେଲେ । ସମସ୍ତ ସନ୍ନ୍ୟାସୀ ଆସି ତାହାଙ୍କୁ ଅଭିବାଦନ କଲେ ଓ ସ୍ଥବିରଙ୍କ ( ସନ୍ନ୍ୟାସୀ ପ୍ରଧାନ ) ପାର୍ଶ୍ୱଦେଶରେ ତାହାଙ୍କ ଆସନ ସ୍ଥାପନ କରି ତହିଁରେ ଉପବେଶନ କରିବା ସକାଶେ ତାହାଙ୍କୁ ଅନୁରୋଧ କଲେ ଓ ସେ ଆସନ ଗ୍ରହଣ କଲାରୁ ସେମାନେ ସମସ୍ତେ ସ୍ୱ ସ୍ୱ ସ୍ଥାନରେ ଉପବେଶନ କଲେ । ତତ୍ପରେ କର୍ମଦାନ (କର୍ମାଧ୍ୟକ୍ଷ) ଘଣ୍ଟାବାଦନପୂର୍ବକ ଘୋଷଣା କରିବାକୁ ଆଦିଷ୍ଟ ହୋଇ କହିଲେ, "ଯେତେଦିନ ପର୍ଯ୍ୟନ୍ତ ହୁଏନ୍‌ସାଂ ଏହି ମନ୍ଦିରରେ ଅବସ୍ଥାନ କରିବେ, ସେତେ ଦିନ ପର୍ଯ୍ୟନ୍ତ ଏହି ସ୍ଥାନର ସମସ୍ତ ପଦାର୍ଥ ଆମ୍ଭମାନଙ୍କ ପରି ସେ ତାହାଙ୍କ ସୁବିଧା ସକାଶେ ବ୍ୟବହାର କରି ପାରିବେ ।"

---

## ସୁନୀତ ଧନଙ୍କର ଶୀଳଭଦ୍ରଙ୍କୁ ପ୍ରଣାମ

ତତ୍ପରେ ମଧ୍ୟବୟସ୍କ ଧର୍ମଶାସ୍ତ୍ର-ବିଶାରଦ ମହାନାୟୂ-ଚରିତ କୋଡିଏ ଜଣ ସନ୍ନ୍ୟାସୀ ତାହାଙ୍କୁ ଟିଂ-ଫା-ସୋଂଙ୍କ ( ସୁନୀତଧନ )* ନିକଟକୁ ଘେନିଯିବାକୁ ନିର୍ବାଚିତ ହେଲେ । ଏହା ଶୀଳଭଦ୍ରଙ୍କ

* Treasure of the good law.

ନାମାନ୍ତର ଥିଲା । ସନ୍ନ୍ୟାସିମଣ୍ଡଳୀ ତାହାଙ୍କ ପ୍ରତି ଅତିଶୟ ଭକ୍ତି ଯୋଗୁଁ ତାହାଙ୍କ ନାମ ଉଚ୍ଚାରଣ ନ କରି ତାହାଙ୍କୁ ଶୀଳଭଦ୍ର ନାମ ପ୍ରଦାନ କରିଥିଲେ । ଏହାଙ୍କ ସହିତ ଗମନ କରି ହୁଏନ୍‌ସାଂ ଶୀଳଭଦ୍ରଙ୍କୁ ଦର୍ଶନ ଓ ପ୍ରଣାମ କଲେ । ମଠର ପ୍ରଧାନ ଭିକ୍ଷା-ବିତରଣ-କାର୍ଯ୍ୟ ପ୍ରୟୋଜନୀୟ ପଦାର୍ଥସମୂହ ସହି ଜାନୁପାତ ଓ ପଦଚୁମ୍ବନ-ପୂର୍ବକ ଭୂମିରେ ମସ୍ତକ ସଂଲଗ୍ନ କରି ଚରଣ ବନ୍ଦନା କଲେ । ଏହି ପ୍ରକାରେ ଅଭିବାଦନ କରିବା ପରେ ଶୀଳଭଦ୍ରଙ୍କ ଆଦେଶରେ ଆସନ ଆନୀତ ହେଲା ଓ ତଦୁପରି ହୁଏନ୍‌ସାଂ ଓ ତାହାଙ୍କ ସହି ଆଗତ ବ୍ୟକ୍ତିଗଣ ଉପବିଷ୍ଟ ହେଲେ । ତତ୍ପରେ ଶୀଳଭଦ୍ର ହୁଏନ୍‌ସାଂଙ୍କୁ ପ୍ରଶ୍ନ କଲେ, "ଆପଣ କେଉଁ ଦେଶରୁ ଆସିଅଛନ୍ତି ?" ହୁଏନ୍‌ସାଂ ଉତ୍ତର କଲେ, "ମୁଁ ଆପଣଙ୍କଠାରୁ ଯୋଗଶାସ୍ତ୍ର ଶିକ୍ଷା କରିବା ଉଦ୍ଦେଶ୍ୟରେ ଚୀନ ଦେଶରୁ ଆସିଅଛି ।" ଏହା ଶ୍ରବଣ କରି ଶିଷ୍ୟ ବୁଦ୍ଧଭଦ୍ରଙ୍କୁ ଆସିବା ସକାଶେ ଶୀଳଭଦ୍ର ଆଦେଶ କଲେ । ସେତେବେଳେ ତାହାଙ୍କ ଚକ୍ଷୁଦ୍ୱୟ ଅଶ୍ରୁପୂର୍ଣ୍ଣ ହୋଇଗଲା । ବୁଦ୍ଧଭଦ୍ର ତାହାଙ୍କ ଭ୍ରାତୁଷ୍ପୁତ୍ର । ତାହାଙ୍କ ବୟସ ସତୁରି ବର୍ଷରୁ ବେଶୀ ଥିଲା । ସେ ସୂତ୍ର ଓ ଶାସ୍ତ୍ରରେ ଅଧିକ ପାରଦର୍ଶୀ ଥିଲେ ଓ ଧର୍ମ ବିଷୟ କଥୋପକଥନରେ ଏକାନ୍ତ ପ୍ରବୀଣ ଥିଲେ । ଶୀଳଭଦ୍ର ତାହାଙ୍କୁ ସମ୍ବୋଧନ କରି କହିଲେ, "ତିନିବର୍ଷ ପୂର୍ବେ ସଂଘଟିତ ମୋର ରୋଗ ଓ ପୀଡାର ଇତିହାସ ଏହି ସମବେତ ମଣ୍ଡଳୀ ସମ୍ମୁଖରେ ବର୍ଣ୍ଣନା କର ।"

ଏହା ଶ୍ରବଣ କରି ବୁଦ୍ଧଭଦ୍ର ଘନ ଘନ ଦୀର୍ଘ ନିଃଶ୍ୱାସ ତ୍ୟାଗ-ପୂର୍ବକ କନ୍ଦନ କରିବାକୁ ଲାଗିଲେ । ତତ୍ପରେ ଅଶ୍ରୁ-ସମ୍ବରଣପୂର୍ବକ ପୂର୍ବ ଇତିହାସ ବର୍ଣ୍ଣନା କରି କହିଲେ, "ମୋର ଏହି ଉପାଧ୍ୟାୟ କେତେକ ଦିବସ ପୂର୍ବରେ ଶୂଳ ରୋଗରେ ପୀଡିତ ହୋଇଥିଲେ । ପ୍ରତ୍ୟେକ ଥର ପୀଡ଼ାର ଆଗମରେ ତାହାଙ୍କ ହସ୍ତପଦ ସଙ୍କୁଚିତ

ହେଉଥିଲା । ସେ ଯନ୍ତ୍ରଣାରେ ଚିତ୍କାର କରି ଉଠୁଥିଲେ । ସେତେ-ବେଳେ କେହି ତାଙ୍କୁ ସତେ ଯେପରି ଅଗ୍ନିରେ ଦଗ୍ଧ କମ୍ବା ଛୁରିକାରେ ଆଘାତ କରି ପକାଉଥିଲା; କିନ୍ତୁ ଅଳ୍ପ ସମୟ ମଧ୍ୟରେ ଯନ୍ତ୍ରଣାର ଉପଶମ ହେଉଥିଲା । ଏହି ପ୍ରକାରେ ସେ କୋଡିଏ ବର୍ଷରୁ ଅଧିକ କାଳ କଷ୍ଟ ଭୋଗ କରିଥିଲେ ; କିନ୍ତୁ ତିନିବର୍ଷ ପୂର୍ବେ ତାହାଙ୍କ ଯନ୍ତ୍ରଣା ଏଡ଼େ ତୀବ୍ର ଓ ଅସହ୍ୟ ହୋଇଥିଲା ଯେ, ଜୀବନ ପ୍ରତି ମମତା ତ୍ୟାଗ କରି ସେ ଅନାହାରରେ ପ୍ରାଣ ବିସର୍ଜନ କରିବାକୁ ସଂକଳ୍ପ କରିଥିଲେ । ଦିନେ ସେ ଅର୍ଦ୍ଧରାତ୍ରରେ ସ୍ୱପ୍ନରେ ତିନିଗୋଟି ଦେବତା ଦର୍ଶନ କଲେ । ତନ୍ମଧ୍ୟରୁ ଜଣକର ଦେହ ସ୍ୱର୍ଣ୍ଣବର୍ଣ୍ଣ, ଅପରଟିର ଉଜ୍ଜ୍ୱଳ ସ୍ଫଟିକବର୍ଣ୍ଣ ଓ ତୃତୀୟଟିର ଶୁଭ୍ର ରଜତବର୍ଣ୍ଣ । ଆକାର ଓ ରୂପ କମନୀୟ ଏବଂ ସେମାନେ ପ୍ରଭୁମୟ ପରିଚ୍ଛଦ ପରିଧାନ କରିଥିଲେ । ଉପାଧ୍ୟାୟଙ୍କ ନିକଟକୁ ସେମାନେ ଆସି କହିଲେ, "ତୁମ୍ଭର ଏହି ଶରୀରରୁ ନିଷ୍କୃତି ଲଭି ସକାଶେ ତୁମ୍ଭେ କି ଚିନ୍ତିତ ଅଛ ? ଧର୍ମଶାସ୍ତ୍ର-ସମୂହ ଏହି ଶିକ୍ଷା ପ୍ରଦାନ କରୁଅଛି ଯେ, ଶରୀର କ୍ଲେଶ ଭୋଗ ସକାଶେ ଜନ୍ମଗ୍ରହଣ କରିଅଛି । ଶରୀରକୁ ଘୃଣା କରି ବିସର୍ଜନ କରିବା — ଏହା କୌଣସି ଶାସ୍ତ୍ରାନୁମୋଦିତ ନୁହେଁ । ତୁମ୍ଭେ ତୁମ୍ଭର ପୂର୍ବ ଜନ୍ମରେ କୌଣସି ଦେଶର ରାଜା ଥିଲ ଓ ବହୁ ପ୍ରାଣୀଙ୍କୁ କ୍ଲେଶ ଦାନ କରି-ଥିଲ; ତେଣୁ ଇହଜନ୍ମରେ ତୁମ୍ଭେ କ୍ଲେଶ ଭୋଗ କରୁଅଛ । ପୂର୍ବ ଜନ୍ମର ପାପାନ୍ୱେଷଣ କର ଏବଂ ଅକପଟ ଭାବରେ ଅନୁତାପ କର । ଉପସ୍ଥିତ କ୍ଲେଶ ଧୀର ଭାବରେ ଓ ଧୈର୍ଯ୍ୟସହ ସହ୍ୟ କର । ମନୋ-ଯୋଗସହକାରେ ସୂତ୍ର ଓ ଶାସ୍ତ୍ର ବ୍ୟାଖ୍ୟାନ କର । ତାହାହେଲେ ଏହି ଯନ୍ତ୍ରଣାରୁ ମୁକ୍ତ ହେବ; କିନ୍ତୁ ତୁମ୍ଭେ ତୁମ୍ଭ ଶରୀରକୁ ଯଦି ଘୃଣା କରିବ, ତାହାହେଲେ ତୁମ୍ଭ ଯନ୍ତ୍ରଣାର ଉପଶମ ହେବ ନାହିଁ ।" ଏହା ଶୁଣି ଉପାଧ୍ୟାୟ ଭକ୍ତିସହକାରେ ସେମାନଙ୍କୁ ପୂଜା କଲେ । ତତ୍ପରେ ସ୍ୱର୍ଣ୍ଣବର୍ଣ୍ଣ ଦେବତା ସ୍ଫଟିକବର୍ଣ୍ଣ ଦେବତାଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ

କର ଉପାଧ୍ୟାୟଙ୍କୁ କହିଲେ, "ତୁମ୍ଭେ ଜାଣ ନାହିଁ—ଏ ଅବଲୋକିତେଶ୍ୱର ବୋଧିସତ୍ତ୍ୱ ଅଟନ୍ତି ।" ତତ୍ପରେ ରଜତବର୍ଣ୍ଣ ଦେବତାଙ୍କ ପ୍ରତି ଅଙ୍ଗୁଳି ସଙ୍କେତ କରି କହିଲେ, "ଏ ମୈତ୍ରେୟ ବୋଧିସତ୍ତ୍ୱ"। ଉପାଧ୍ୟାୟ ତତ୍‌କ୍ଷଣାତ୍ ମୈତ୍ରେୟ ବୋଧିସତ୍ତ୍ୱଙ୍କୁ ପ୍ରଣାମ କରି କହିଲେ, "ଆପଣଙ୍କର ଭୃତ୍ୟ ଶୀଲଭଦ୍ର ସର୍ବଦା ପ୍ରାର୍ଥନା କରୁଅଛି ଯେ, ସେ ଆପଣଙ୍କ ସମୁନ୍ନତ ପ୍ରାସାଦରେ ଜନ୍ମଗ୍ରହଣ କରିବ; କିନ୍ତୁ ସେ ଜାଣେ ନାହିଁ ଯେ, ତାହାର ସେ ଆକାଙ୍‌କ୍ଷା ପୂର୍ଣ୍ଣ ହେବ କି ନାହିଁ ।" ସେ ଉତ୍ତର କଲେ, "ତୁମ୍ଭେ ପ୍ରକୃତ ଧର୍ମତତ୍ତ୍ୱ ପ୍ରଚାର କରିବ ଓ ତତ୍ପରେ ସେଠାରେ ଜନ୍ମଗ୍ରହଣ କରିବ ।" ସ୍ୱର୍ଣ୍ଣବର୍ଣ୍ଣ ଦେବତା କହିଲେ, "ମୁଁ ମଞ୍ଜୁଶ୍ରୀ ବୋଧିସତ୍ତ୍ୱ । ତୁମ୍ଭେ ଜୀବନ ବିସର୍ଜନ କରିବାକୁ ସଂକଳ୍ପ କରୁଥିବା ଦେଖି ତହିଁରୁ ତୁମ୍ଭଙ୍କୁ ନିବୃତ୍ତ କରିବା ସକାଶେ ଆମ୍ଭେମାନେ ଆସିଅଛୁଁ । ତୁମ୍ଭେ ଆମ୍ଭମାନଙ୍କ କଥାରେ ବିଶ୍ୱାସ ସ୍ଥାପନ କରି ଅନ୍ୟମାନଙ୍କ ମଙ୍ଗଳ ସକାଶେ ପ୍ରକୃତ ଧର୍ମତତ୍ତ୍ୱ, ଯୋଗଶାସ୍ତ୍ର ଓ ଅନ୍ୟାନ୍ୟ ଶାସ୍ତ୍ର-ଶିକ୍ଷା ପ୍ରଦାନ କର । ତାହାହେଲେ ତୁମ୍ଭ ଶରୀର କ୍ରମେ କ୍ରମେ ପୀଡାମୁକ୍ତ ହେବ । ତୁମ୍ଭେ ଭୁଲିବ ନାହିଁ—ଚୀନ ଦେଶରୁ ଏକ ଶ୍ରମଣ ଆସୁଅଛନ୍ତି ଓ ସେ ଶାସ୍ତ୍ରାଲୋଚନା କରିବାରେ ଆନନ୍ଦ ପ୍ରକାଶ କରନ୍ତି ଏବଂ ତୁମ୍ଭଠାରୁ ଶାସ୍ତ୍ର ଅଧ୍ୟୟନ କରିବାକୁ ଇଚ୍ଛା କରି-ଅଛନ୍ତି । ତୁମ୍ଭେ ତାହାଙ୍କୁ ମନୋଯୋଗସହକାରେ ଶିକ୍ଷା ପ୍ରଦାନ କରିବ ।"

ଶୀଲଭଦ୍ର ଏହା ଶ୍ରବଣ କରି ତାହାଙ୍କୁ ପ୍ରଣାମପୂର୍ବକ ଉତ୍ତର କଲେ, "ମୁଁ ଆପଣମାନଙ୍କ ଆଜ୍ଞା ପାଳନ କରିବି ।" ତତ୍ପରେ ଦେବ-ତ୍ରୟ ଅନ୍ତର୍ଦ୍ଧାନ ହେଲେ । ସେହି ଦିବସରୁ ଉପାଧ୍ୟାୟ ଶୀଲଭଦ୍ର ଶୂଳରୋଗରୁ ଆରୋଗ୍ୟ ଲାଭ କଲେ ।

ସମବେତ ସନ୍ନ୍ୟାସିମଣ୍ଡଳୀ ଏହି ଅତ୍ୟଦ୍ଭୁତ ଘଟଣା ଶ୍ରବଣ କରି ବିସ୍ମୟରେ ଅଭିଭୂତ ହୋଇଗଲେ । ହୁଏନ୍‌ସାଂ ମଧ୍ୟ ଆନନ୍ଦରେ ଉତ୍ଫୁଲ୍ଲ ହୋଇଉଠିଲେ । ସେ ପୁନର୍ବାର ପ୍ରଣାମ କରି ତାହାଙ୍କୁ କହିଲେ, "ଆପଣ ଯାହା କହିଲେ, ତାହା ଯଦି ପ୍ରକୃତ ହୋଇଥାଏ, ତାହା ହେଲେ ହୁଏନ୍‌ସାଂ ଆପଣଙ୍କଠାରୁ ଧର୍ମୋପଦେଶ ଶ୍ରବଣ କରି ତାହା ଯଥାଶକ୍ତି ପାଳନ କରିବ ।" ତତ୍ପରେ ଶୀଳଭଦ୍ର ତାହାଙ୍କୁ ପ୍ରଶ୍ନ କଲେ, "କେତେ ବର୍ଷ ହେଲା ଆପଣ ଏହି ଯାତ୍ରାରେ ବାହାରି-ଅଛନ୍ତି ?" ସେ ଉତ୍ତର କଲେ, "ତିନି ବର୍ଷ ।" ତତ୍ପରେ ସ୍ୱପ୍ନଲବ୍ଧ ଆଦେଶସକଳ ସମ୍ପୂର୍ଣ୍ଣରୂପେ ପାଳିତ ହେଲା ଓ ସେ ହୁଏନ୍‌ସାଂଙ୍କୁ ଶିଷ୍ୟରୂପରେ ଗ୍ରହଣ କରି ତାହାଙ୍କ ହୃଦୟରେ ଅପାର ଆନନ୍ଦ ଦାନ କଲେ ।

ଏତଦ୍ଦ୍ୱାରେ ସେ ସେହିଠାରୁ ବିଦାୟ ଗ୍ରହଣ କରି ବାଲାଦିତ୍ୟ ନରପତିଙ୍କ ବିଦ୍ୟାଗାରକୁ ଗମନ କଲେ ଓ ସେଠାରେ ବୁଦ୍ଧଭଦ୍ରଙ୍କ ଚତୁସ୍ତଳ ଗୃହରେ ଅବସ୍ଥାନ କଲେ । ବୁଦ୍ଧଭଦ୍ର ସପ୍ତ ଦିବସ କାଳ ତାହାଙ୍କ ସତ୍କାର କଲେ । ତତ୍ପରେ ସେ ଧର୍ମପାଳ ବୋଧିସତ୍ତ୍ୱଙ୍କ ଆବାସ ସ୍ଥଳର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଏକ ଗୃହକୁ ଯାଇ ଅବସ୍ଥାନ କଲେ । ସେହିଠାରେ ତାହାଙ୍କ ସକାଶେ ସକଳ ପ୍ରକାର ଦ୍ରବ୍ୟ ପ୍ରଦତ୍ତ ହେଲା । ସେ ପ୍ରତ୍ୟହ ୧୨୦ ଗୋଟି ଜମ୍ୱିର, ୨୦ ଗୋଟି ଗୁଆ, ୨୦ ଗୋଟି ଜାଇଫଳ, ୨୫ ତୋଳା କର୍ପୂର, ୪୫ ଛଟାଙ୍କି ମହାଶାଳୀ ତଣ୍ଡୁଳ ପ୍ରାପ୍ତ ହେଉଥିଲେ । ମହାଶାଳୀ ତଣ୍ଡୁଳ ଆକାରରେ କାଳକ ତୁଲ୍ୟ ଏବଂ ଶୁଭ୍ର ଓ ସୁଗନ୍ଧଯୁକ୍ତ ଓ ଅନ୍ୟ କୌଣସି ତଣ୍ଡୁଳ ଏହାର ତୁଳନୀୟ ନୁହେ । ଏହା କେବଳ ମଗଧରେ ଉତ୍ପନ୍ନ ହେଉଥିଲା ଓ କେବଳ ରାଜା ଓ ଖ୍ୟାତନାମା ଧର୍ମାଚାର୍ଯ୍ୟମାନଙ୍କୁ ପ୍ରଦତ୍ତ ହେଉଥିଲା । ତେଣୁ ଏହା କୁଂ-ତି-ଦନ୍ ମଇ ( ମହାଶାଳୀ ) ନାମରେ ଅଭିହିତ

ଏହା ବ୍ୟତୀତ ପ୍ରତିମାସରେ ତିନ ସେର ତୈଳ, ପ୍ରତ୍ୟହ ପ୍ରୟୋଜନାନୁଯାୟୀ ଲହୁଣୀ ଓ ଅନ୍ୟାନ୍ୟ ସାମଗ୍ରୀ ପ୍ରଦତ୍ତ ହେଉଥିଲା । ତାହାଙ୍କ ପରିଚର୍ଯ୍ୟା ପାଇଁ ଗୋଟିଏ ହାତୀ ଓ ଜଣେ ବ୍ରହ୍ମଚାରୀ ନିଯୁକ୍ତ ହେଲେ । ବ୍ରହ୍ମଚାରୀଙ୍କ ଉପରେ ଅନ୍ୟ କୌଣସି କାର୍ଯ୍ୟଭାର ନ୍ୟସ୍ତ ନ ଥିଲା ।

ନାଳନ୍ଦ ମନ୍ଦିରର ଅଧ୍ୟକ୍ଷ ଏହି ପ୍ରକାରେ ଅସଂଖ୍ୟ ଅତିଥିଙ୍କ ସତ୍କାର କରୁଥିଲେ । ସେଠାରେ ହୁଏନ୍‌ସାଂଙ୍କ ବ୍ୟତୀତ ଭିନ୍ନ ଦେଶର ଅସଂଖ୍ୟ ଲୋକ ଆସି ଆଶ୍ରୟ ଗ୍ରହଣ କରୁଥିଲେ । ଅନ୍ୟ କୌଣସିଠାରେ ସେମାନଙ୍କ ପ୍ରତି ଏପରି ସୌଜନ୍ୟ ପ୍ରକାଶିତ ହେଉ ନ ଥିଲା ।

---

## ନାଳନ୍ଦ ମଠରେ ଜୀବନଯାପନ ବ୍ୟବସ୍ଥା

ନାଳନ୍ଦ ମଠକୁ 'ସଦାବ୍ରତ ମଠ' ବୋଇଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ଏହା ସମ୍ବନ୍ଧରେ ପ୍ରବାଦ ଏହି—ମଠର ଦକ୍ଷିଣ ପାର୍ଶ୍ୱସ୍ଥ ଆମ୍ର ଉଦ୍ୟାନ ମଧ୍ୟରେ ଗୋଟିଏ ଜଳାଶୟ ଥିଲା । ତନ୍ମଧ୍ୟରେ ନାଳନ୍ଦ ନାମଧେୟ ନାଗ ବାସ କରୁଥିଲେ ଓ ତାହାର ନାମାନୁସାରେ ମଠର ନାମକରଣ ହୋଇଥିଲା । ଆଉ ମଧ୍ୟ ପ୍ରବାଦ ଅଛି ଯେ, ତଥାଗତ ବୋଧିସତ୍ତ୍ୱାବସ୍ଥାରେ ରାଜା ଏହି ଦେଶର ନରପତି ଥିଲେ ଓ ଏହି ସ୍ଥାନରେ ତାହାଙ୍କ ରାଜଧାନୀ ନିର୍ମାଣ କରିଥିଲେ । ସେ ଦରିଦ୍ର ଓ ଅନାଥମାନଙ୍କ ପ୍ରତି ଦୟାପରବଶ ହୋଇ ତାହାଙ୍କ ସମସ୍ତ ଧନ ସେମାନଙ୍କ ମଙ୍ଗଳାର୍ଥେ ବିତରଣ କରିଥିଲେ । ଏହାର ସ୍ମାରକ ସ୍ୱରୂପ ଏହି ସ୍ଥାନକୁ 'ସଦାବ୍ରତ ମଠ' ଆଖ୍ୟା ପ୍ରଦତ୍ତ ହୋଇଥିଲା ।

ପ୍ରଥମରେ ଉକ୍ତ ଆମ୍ର ଉଦ୍ୟାନ ଶ୍ରେଷ୍ଠୀଙ୍କ ଅଧିକୃତ ଥିଲା । ତତ୍ପରେ ପଞ୍ଚ ଶତ ବଣିକ ଦଶଲକ୍ଷ ସ୍ୱର୍ଣ୍ଣମୁଦ୍ରାରେ ଏହା କିଣି କରି ବୁଦ୍ଧଙ୍କୁ ଦାନ

କଲେ । ଏଠାରେ ବୁଦ୍ଧ ତିନିମାସ କାଳ ସ୍ୱଧର୍ମ-ତତ୍ତ୍ୱ ପ୍ରଚାର କରିଥିଲେ ଏବଂ ଉକ୍ତ ବଣିକମାନଙ୍କ ମଧ୍ୟରୁ ଅନେକେ ସେମାନଙ୍କ ପୁଣ୍ୟର ଫଳ ସ୍ୱରୂପ ଅର୍ହତ୍-ତତ୍ତ୍ୱ ପ୍ରାପ୍ତ ହୋଇଥିଲେ ।

## ନାଳନ୍ଦ ମଠର ଗଠନ ବର୍ଣ୍ଣନା

ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ପରେ ଶକ୍ରାଦିତ୍ୟ ନାମକ ଏହି ଦେଶର ବୃଦ୍ଧ ନରପତି ବୁଦ୍ଧଙ୍କ ପ୍ରତି ପ୍ରଗାଢ଼ ଭକ୍ତିର ନିଦର୍ଶନ ସ୍ୱରୂପେ ଏହି ମଠ ନିର୍ମାଣ କଲେ । ତାହାଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ବୁଦ୍ଧ ଗୁପ୍ତ ରାଜସିଂହାସନ ଆରୋହଣ କଲେ ଓ ଉକ୍ତ ମଠର ରକ୍ଷଣାବେକ୍ଷଣ କଲେ ଏବଂ ଏହାର ଦକ୍ଷିଣ ପାର୍ଶ୍ୱରେ ଆଉ ଏକ ମଠ ନିର୍ମାଣ କଲେ । ତାହାଙ୍କ ମୃତ୍ୟୁ ପରେ ତାହାଙ୍କ ପୁତ୍ର ତଥାଗତ-ରାଜା ଏହାର ପୂର୍ବ ପାର୍ଶ୍ୱରେ ଆଉ ଏକ ମଠ ସ୍ଥାପନ କଲେ । ତଥାଗତ-ରାଜାଙ୍କ ପୁତ୍ର ବାଳାଦିତ୍ୟ ମଧ୍ୟ ଏହାର ଉତ୍ତର-ପୂର୍ବକୁ ଆଉ ଏକ ମଠ ନିର୍ମାଣ କଲେ । କେତେକ ଦିନ ଉତ୍ତାରେ ରାଜା ବାଳାଦିତ୍ୟଙ୍କ ରାଜତ୍ୱ ସମୟରେ ଚୀନ ଦେଶରୁ କେତେକ ସନ୍ନ୍ୟାସୀ ତାହାଙ୍କଠାରୁ ଦାନ ଗ୍ରହଣ କରିବା ସକାଶେ ଉପସ୍ଥିତ ହୋଇଥିଲେ ଏବଂ ରାଜା ଆନନ୍ଦିତ ହୃଦୟରେ ସେମାନଙ୍କୁ ତାହାଙ୍କ ସମସ୍ତ ସମ୍ପତ୍ତି ଓ ରାଜ୍ୟ ଦାନ କରି ସଂସାର-ତ୍ୟାଗୀ ହେଲେ । ତାହାଙ୍କ ପୁତ୍ର ବଜ୍ର ଏହାର ଉତ୍ତର ପାର୍ଶ୍ୱରେ ଆଉ ଏକ ମଠ ନିର୍ମାଣ କଲେ । ତାହାଙ୍କ ଉତ୍ତାରେ ମଧ୍ୟ-ଭାରତର ଏକ ନରପତି ଏହାର ସମୀପରେ ଆଉ ଗୋଟିଏ ମଠ ସ୍ଥାପନ କଲେ । ଏହି ପ୍ରକାରେ କ୍ରମାଗତ ଛଅ ଜଣ ନରପତି ଏହି ମଠର ଶ୍ରୀବୃଦ୍ଧି ସାଧନ କରିଥିଲେ ।

ଏହି ମଠର ଚତୁଃପାର୍ଶ୍ୱ ଇଷ୍ଟକ ପ୍ରାଚୀରଦ୍ୱାରା ବେଷ୍ଟିତ ହୋଇଥିଲା । ତହିଁର ଏକ ଦ୍ୱାର ବୃହତ୍ ବିଦ୍ୟାଗାରାଭ୍ୟନ୍ତରକୁ ଉନ୍ମୁକ୍ତ ହୋଇଥିଲା ।

ମଠର ମଧ୍ୟସ୍ଥଳରେ ଆଠ ଗୋଟି ବୃହତ୍ କକ୍ଷ ଉକ୍ତ ବିଦ୍ୟାଗାରର ଉପର ପାର୍ଶ୍ୱରେ ଅବସ୍ଥିତ ଥିଲା । ମଠର ବିଚିତ୍ର କାରୁକାର୍ଯ୍ୟବିଶିଷ୍ଟ ଚୂଡ଼ାସମୂହ ସୂକ୍ଷ୍ମାଗ୍ର ପର୍ବତଶିଖର ତୁଲ୍ୟ ଅପୂର୍ବ ଶୋଭା ସମ୍ପାଦନ କରୁଥିଲା । ମାନମନ୍ଦିରସମୂହ ପ୍ରାତଃକାଳୀନ କୁଜ୍ଝଟିକାରେ ଲୁକ୍‌କାୟିତ ହୋଇ ରହୁଥିଲା ଏବଂ ଊର୍ଦ୍ଧ୍ୱତଳର କକ୍ଷଗୁଡ଼ିକ ଅଭ୍ର ଭେଦ କରୁଥିଲା । ବାୟୁ ଓ ମେଘର ଘାତପ୍ରତିଘାତରେ ସେମାନଙ୍କ ରୂପ ପ୍ରତିମୁହୂର୍ତ୍ତରେ ପରିବର୍ତ୍ତିତ ହୋଇ ଗବାକ୍ଷମାର୍ଗରେ ଦୃଷ୍ଟିଗୋଚର ହେଉଥିଲା ଓ ଅତ୍ୟୁଚ୍ଚ ଚୂଡ଼ାର ଅତି ଊର୍ଦ୍ଧ୍ୱଦେଶରେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମିଳନର ଅପୂର୍ବ ଦୃଶ୍ୟ ମଧ୍ୟ ଦୃଷ୍ଟିପଥରେ ପତିତ ହେଉଥିଲା । ସ୍ଫଟିକ ତୁଲ୍ୟ ନିର୍ମଳ ଜଳପୂର୍ଣ୍ଣ ଗଭୀର ପୁଷ୍କରିଣୀରେ ନୀଳୋତ୍ପଳ ପ୍ରସ୍ଫୁଟିତ ହୋଇ ରକ୍ତବର୍ଣ୍ଣ କନକ-କୁସୁମାବଳୀର ଶ୍ରୀ ଧାରଣ କରୁଥିଲା । ସ୍ଥାନେ ସ୍ଥାନେ ଶାଖାବହୁଳ ଆମ୍ରୋଦ୍ୟାନ ପଥିକଗଣଙ୍କୁ ଶୀତଳ ଛାୟା ବିତରଣ କରୁଥିଲା ।

ମଠର ବହିଃପ୍ରାଙ୍ଗଣରେ ସନ୍ନ୍ୟାସୀମାନଙ୍କ କକ୍ଷ ଏବଂ ତନ୍ମଧ୍ୟରେ ଚାରିଗୋଟି ବେଦୀ ଥିଲା । ମଠଗୁଡ଼ିକର ଛାତର ପ୍ରାନ୍ତଭାଗ ବୃହତ୍ ଓ ବିଭିନ୍ନ ବର୍ଣ୍ଣରେ ରଞ୍ଜିତ ଥିଲା । ସ୍ତମ୍ଭଶ୍ରେଣୀ ପ୍ରବାଳ ତୁଲ୍ୟ ରକ୍ତବର୍ଣ୍ଣ ଓ ବିବିଧ କାରୁକାର୍ଯ୍ୟମଣ୍ଡିତ ହୋଇଥିଲା । ଛାତର ଆବରଣୀରେ ସହସ୍ର କିରଣ ପ୍ରତିଫଳିତ ହୋଇ ଦୃଶ୍ୟାବଳୀର ଶୋଭା ବର୍ଦ୍ଧନ କରୁଥିଲା ।

---

## ଭାରତବର୍ଷର ସଂଘାରାମସମୂହ

ସେତେବେଳେ ଭାରତବର୍ଷରେ ଅସଂଖ୍ୟ ମଠ ବିଦ୍ୟମାନ ଥିଲା ; କିନ୍ତୁ ବିଶାଳତା ଓ ସୌନ୍ଦର୍ଯ୍ୟରେ ନାଳନ୍ଦ ମଠ ଅତୁଳନୀୟ ଥିଲା । ଏହି ମଠାଧିବାସୀ ଓ ଆଗନ୍ତୁକ ଦଶ ସହସ୍ର ସନ୍ନ୍ୟାସୀ ଏଠାରେ ଅବସ୍ଥାନ କରୁଥିଲେ । ସେମାନେ ମହାଯାନ, ଅଷ୍ଟାଦଶ ଗ୍ରନ୍ଥ, ବେଦ, ବେଦାଙ୍ଗ ହେତୁବିଦ୍ୟା, ଶବ୍ଦବିଦ୍ୟା, ଚିକିତ୍ସାବିଦ୍ୟା, ଇନ୍ଦ୍ରଜାଲ ବିଦ୍ୟା ଓ ଷଡ଼ଦର୍ଶନ

ପ୍ରଭୃତି ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ତନ୍ମଧ୍ୟରୁ ଏକ ସହସ୍ର ସନ୍ନ୍ୟାସୀ କୋଡିଏ ପ୍ରକାର ଶାସ୍ତ୍ର, ପଞ୍ଚଶତ ସନ୍ନ୍ୟାସୀ ତିରିଶ ପ୍ରକାର ଶାସ୍ତ୍ର ଏବଂ ହୁଏନ୍‌ସାଂଙ୍କ ସହିତ ଦଶଜଣ ସନ୍ନ୍ୟାସୀ ପଚାଶ ପ୍ରକାର ସୂତ୍ର ଓ ଶାସ୍ତ୍ର ବ୍ୟାଖ୍ୟାନ କରି ପାରୁଥିଲେ । କେବଳ ଶୀଲଭଦ୍ର ସମସ୍ତ ପ୍ରକାର ଶାସ୍ତ୍ର ଓ ସୂତ୍ର ଅଧ୍ୟୟନ କରି ଆୟତ୍ତ କରିଥିଲେ । ସ୍ୱୀୟ ସଦ୍‌ଗୁଣାବଳୀ ଓ ପ୍ରୌଢ଼ବୟସ ପ୍ରଭାବରେ ସେ ସନ୍ନ୍ୟାସିମଣ୍ଡଳୀରେ ଅଗ୍ରଗଣ୍ୟ ହୋଇଥିଲେ । ମଠ ମଧ୍ୟରେ ପ୍ରତ୍ୟହ ଏକଶତ ବେଦିକାରେ ଧର୍ମଶାସ୍ତ୍ର ଆଲୋଚିତ ହେଉଥିଲା ଓ ଛାତ୍ରଗଣ ଉକ୍ତ ଆଲୋଚନାରେ ଯୋଗଦାନ କରି ଶାସ୍ତ୍ର-ବ୍ୟାଖ୍ୟାନ ଶ୍ରବଣ କରୁଥିଲେ । ଏହି ମଠାଧିବାସୀ ସନ୍ନ୍ୟାସିଗଣ ସ୍ୱଭାବତଃ ଧୀର, ଗମ୍ଭୀର ଓ ଉନ୍ନତ ଚରିତ୍ର-ବିଶିଷ୍ଟ ଥିଲେ । ମଠ ପ୍ରତିଷ୍ଠାର ସପ୍ତଶତ ବର୍ଷ ମଧ୍ୟରେ ଜଣେ ସୁଦ୍ଧା ନୀତିବିଗର୍ହିତ କାର୍ଯ୍ୟ କରି ନ ଥିଲେ ।

ଦେଶର ନରପତି ସନ୍ନ୍ୟାସୀମାନଙ୍କୁ ସମ୍ମାନ ଓ ଭକ୍ତି କରୁଥିଲେ; ମଠର ବ୍ୟୟନିର୍ବାହ ସକାଶେ ଏକଶତ ଗ୍ରାମର ରାଜସ୍ୱ ଦାନ କରିଥିଲେ । ଏହି ସମସ୍ତ ଗ୍ରାମବାସୀ ଦୁଇଶତ ଗୃହସ୍ଥ ପ୍ରତ୍ୟହ ଶତ ଶତ ପିକଲ*, ତଣ୍ଡୁଳ ଓ ଶତ ଶତ କଟ୍ଟୀ * ଦୁଗ୍ଧ ଓ ଲବଣୀ ଦାନ କରୁଥିଲେ । ଏଠାରେ ଛାତ୍ରମାନଙ୍କ ସକାଶେ ପ୍ରଚୁର ପରିମାଣରେ ଖାଦ୍ୟପେୟର ବ୍ୟବସ୍ଥା ଥିବାରୁ ସେମାନଙ୍କ ଚାରି ପ୍ରୟୋଜନୀୟ ବସ୍ତୁର *କେବେ ହେଲେ ଅଭାବ ହେଉ ନ ଥିଲା । ଏହିଠାରେ ସେମାନେ ଶିକ୍ଷାର ପୂର୍ଣ୍ଣତା ଲାଭ କରୁଥିଲେ ।

ହୁଏନ୍‌ସାଂ ନାଳନ୍ଦରେ କତିପୟ ଦିବସ ଅବସ୍ଥାନ କରି ରାଜଗୃହକୁ ଗମନ କଲେ ।

*୧ ପିକଲ—ମ ୧।୨୭ ସେର * ୨ କଟ୍ଟୀ –୨ ମହଣ *ବସ୍ତ୍ର, ଆହାର, ଶଯ୍ୟା ଓ ଔଷଧ ।

ପୁରାତନ ରାଜଗୃହର ନାମ କୁଶାଗାରପୁର । ଏହା ମଗଧର କେନ୍ଦ୍ରସ୍ଥଳରେ ଅବସ୍ଥିତ ଥିଲା । ପୂର୍ବକାଳରେ ଏଠାରେ ଅନେକ ନରପତି ରାଜଧାନୀ କରିଥିଲେ । ଏହି ସ୍ଥାନରେ ସୁଗନ୍ଧ କୁଶ ଉତ୍ପନ୍ନ ହେଉଥିଲା; ତେଣୁ ଏହା କୁଶାଗାରପୁର ନାମରେ ଅଭିହିତ ହୋଇ-ଥିଲା । ଏହାର ଚତୁର୍ଦ୍ଦିଗ ପ୍ରାଚୀର ତୁଲ୍ୟ ଉଚ୍ଚ ପର୍ବତଦ୍ୱାରା ପରିବେଷ୍ଟିତ ଥିଲା । ପଶ୍ଚିମ ପାର୍ଶ୍ୱରେ ଏକ ସଙ୍କୀର୍ଣ୍ଣ ପ୍ରବେଶ ମାର୍ଗ ଥିଲା । ଉତ୍ତର ପାର୍ଶ୍ୱରେ ଗୋଟିଏ ଦ୍ୱାର ମଧ୍ୟ ଥିଲା । ଏହା ଉତ୍ତରରୁ ଦକ୍ଷିଣକୁ ଦୀର୍ଘ ଓ ପୂର୍ବରୁ ପଶ୍ଚିମକୁ ଅପରିସର ଓ ଆୟତନରେ ୧୬୦ ଲି ଥିଲା । ତନ୍ମଧ୍ୟରେ ଆଉ ଗୋଟିଏ କ୍ଷୁଦ୍ର ସହର ମଧ୍ୟ ଥିଲା । ଚତୁର୍ଦ୍ଦିଗରେ କନକବୃକ୍ଷପୂର୍ଣ୍ଣ ବନ, ବର୍ଷଯାକ ତହିଁରେ ଫୁଲ ଫୁଟିଥିଲା ଓ ଫନସକଳ କନକବର୍ଣ୍ଣ ପରି ଦିଶୁଥିଲା ।

ରାଜପ୍ରାସାଦସ୍ଥ ଉତ୍ତରଦ୍ୱାରର ବହିର୍ଭାଗରେ ଏକ ସ୍ତୂପ ଥିଲା । ଏହି ସ୍ଥାନରେ ଦେବଦତ୍ତ ଓ ରାଜା ଅଜାତଶତ୍ରୁ ବୁଦ୍ଧଙ୍କ ପ୍ରାଣବିନାଶ ସକାଶେ ଧନପାଳ ନାମକ ମଦ୍ୟପ ହସ୍ତୀକୁ ଉତ୍ତେଜିତ କରି ଛାଡ଼ି-ଦେଇଥିଲେ ।

ଏହାର ଉତ୍ତର-ପୂର୍ବ ପାର୍ଶ୍ୱରେ ଏକ ସ୍ତୂପ ଥିଲା । ଏହି ସ୍ଥାନରେ ସାରିପୁତ୍ର ଭିକ୍ଷୁ ଅଶ୍ୱଜିତଙ୍କ ମୁଖରୁ ଶାସ୍ତ୍ର-ବ୍ୟାଖ୍ୟାନ ଶ୍ରବଣ କରି ସୁଫଳ (ଅର୍ହ-ତତ୍ତ୍ୱ) ପ୍ରାପ୍ତ ହୋଇଥିଲେ ।

---

## ଶ୍ରୀ ଗୁପ୍ତ

ଏହାର ଅନତି ଦୂରରେ ଗୋଟିଏ ଗର୍ତ୍ତର ପରିଖା ଥିଲା । ଏହି-ଠାରେ ଶ୍ରୀଗୁପ୍ତ ଧର୍ମବିଦ୍ୱେଷୀଗଣଙ୍କ ପ୍ରରୋଚନାରେ ପରିଖାରେ ଲୁକ୍କାୟିତ ଅଗ୍ନି ଓ ବିଷମିଶ୍ରିତ ଖାଦ୍ୟଦ୍ରବ୍ୟଦ୍ୱାରା ବୁଦ୍ଧଙ୍କ ପ୍ରାଣ ବିନାଶ କରିବାକୁ ସଂକଳ୍ପ କରିଥିଲେ ।

ଏହି ପରିଖାର ଉତ୍ତର-ପୂର୍ବ ପାର୍ଶ୍ୱକୁ ସହରର ଏକ କୋଣରେ ଆଉ ଏକ ସ୍ତୂପ ଥିଲା । ଏହିଠାରେ ପ୍ରସିଦ୍ଧ ଚିକିତ୍ସକ ଜୀବକ ବୁଦ୍ଧଙ୍କ ସକାଶେ ଏକ ସଙ୍ଘଗୃହ ନିର୍ମାଣ କରି ଦେଇଥିଲେ । ଜୀବକଙ୍କ ଜନ୍ମ-ଗୃହ ଏହି ସ୍ତୂପର ସନ୍ନିକଟରେ ଅଦ୍ୟାପି ଦୃଷ୍ଟିଗୋଚର ହୁଏ ।

କୁଶାଗାର ପୁରର ଚଉଦ ପନ୍ଦର ଲି ଉତ୍ତର-ପୂର୍ବକୁ ଗୃଧ୍ରକୂଟ ପର୍ବତ ଅବସ୍ଥିତ । ଗୃଧ୍ରକୂଟ ପର୍ବତ କେତେଗୁଡ଼ିଏ ଶ୍ରେଣୀବଦ୍ଧ ପର୍ବତର ସମଷ୍ଟି ମାତ୍ର । ଉତ୍ତର ପାର୍ଶ୍ୱସ୍ଥ ଶୃଙ୍ଗ ପାର୍ଶ୍ୱବର୍ତ୍ତୀ ଅପରାପର ପର୍ବତଠାରୁ ଉଚ୍ଚ ଓ ଏକାକୀ ସଦର୍ପରେ ଦଣ୍ଡାୟମାନ ହୋଇ ରହିଅଛି । ଏହା ଆକାରରେ ଗୃଧ୍ର ସଦୃଶ ଏବଂ ଏହାର ଶୃଙ୍ଗାଗ୍ର ପ୍ରାସାଦଚୂଡ଼ା ତୁଲ୍ୟ ; ଏଣୁକରି ଏହା ଗୃଧ୍ରକୂଟ ନାମରେ ଅଭିହିତ ହୋଇଅଛି । ପର୍ବତ-ଗାତ୍ରରେ ପ୍ରବାହିତ ପ୍ରସ୍ରବଣସମୂହର ଜଳ ଅତ୍ୟନ୍ତ ନିର୍ମଳ, ଶିଳା-ଗୁଡ଼ିକ ଫଳକାକାର ଓ ବୃକ୍ଷସମୂହ ପଲ୍ଲବବହୁଳ ।

ତଥାଗତ ଇହ ସଂସାରରେ ଅବସ୍ଥାନ କାଳରେ ବାରମ୍ବାର ଏହିଠାରେ ବହୁ ସମୟ ଯାପନ କରୁଥିଲେ । ଏହି ସ୍ଥାନରେ ସେ ସଦ୍ଧର୍ମ ପୁଣ୍ଡରୀକ, ମହାପ୍ରାଜ୍ଞ ଓ ଅନ୍ୟାନ୍ୟ ଅସଂଖ୍ୟ ସୂତ୍ର ପ୍ରଣୟନ କରି ପ୍ରଚାର କରିଥିଲେ ।

---

## କଳନ୍ଦକ ବଂଶୋଦ୍ୟାନ

ଏହି ପାର୍ବତ୍ୟ ନଗରର ପ୍ରାୟ ଏକ ଲି ଉତ୍ତରରେ କଳନ୍ଦକ ବଂଶୋଦ୍ୟାନ ବିଦ୍ୟମାନ ଥିଲା । ଅଦ୍ୟାପି ଏଠାରେ ଏକ ଇଷ୍ଟକାଳୟ ବିଦ୍ୟମାନ ଅଛି । ପୂର୍ବକାଳରେ ବୁଦ୍ଧ ଏଠାକୁ ବହୁବାର ଆସି ଅବସ୍ଥାନ କରିଥିଲେ ଓ ଏହି ସ୍ଥାନରେ ସେ ବିନୟ ଶାସ୍ତ୍ରର ଅବଶ୍ୟ ପାଳନୀୟ ନିୟମସମୂହ ବିଧିବଦ୍ଧ କରିଥିଲେ । ଉପର୍ଯ୍ୟୁକ୍ତ ଉଦ୍ୟାନପତିଙ୍କ ନାମ କରନ୍ଦ । ପୂର୍ବେ ସେ ଏହି ଉଦ୍ୟାନକୁ ଧର୍ମବିରୋଧୀମାନଙ୍କ ଦାନ

କରିଥିଲେ; କିନ୍ତୁ ବୁଦ୍ଧଙ୍କ ଦର୍ଶନ ଲାଭ ପରେ ଓ ତାହାଙ୍କ ପ୍ରତିପାଦିତ ଧର୍ମତତ୍ତ୍ୱର ଗଭୀର ସତ୍ୟସମୂହ ଶ୍ରବଣ କଲା ଉତ୍ତାରେ, ସେ ଇତିପୂର୍ବେ ତାହା ତାହାଙ୍କୁ ଦାନ କରି ନ ଥିବା ଯୋଗୁଁ ଅତ୍ୟନ୍ତ ଦୁଃଖିତ ହୋଇଥିଲେ । ପୃଥିବୀପ୍ରେତ ତାହାଙ୍କ ମନୋଗତ ଭାବ ଅବଗତ ହୋଇ ଏଡ଼େ ଅଦ୍ଭୁତ ଘଟଣାସମୂହ ଉତ୍ପାଦନ କଲେ ଯେ, ସେମାନେ ସମସ୍ତେ ଭୟରେ ଅସ୍ଥିର ହୋଇଉଠିଲେ । ତତ୍ପରେ ସେମାନଙ୍କୁ ବିତାଡ଼ିତ କରିବା ଉଦ୍ଦେଶ୍ୟରେ କହିଲେ, "ଏହି ସ୍ଥାନର ଅଧିକାରୀ ବୁଦ୍ଧଙ୍କୁ ଏହି ଉଦ୍ୟାନ ଦାନ କରିବା ସକାଶେ ଇଚ୍ଛା କରନ୍ତି । ଆପଣମାନେ ଅବିଳମ୍ବରେ ଏହି ସ୍ଥାନ ପରିତ୍ୟାଗ କରି ଚାଲିଯାଆନ୍ତୁ ।" ଧର୍ମଦ୍ରୋହିଗଣ ସେମାନଙ୍କ ମନର ବିରକ୍ତି ଗୋପନ କରି ଉକ୍ତ ସ୍ଥାନ ତ୍ୟାଗ କଲେ । ଉଦ୍ୟାନାଧିପତି ଆନନ୍ଦଗଦ୍‌ଗଦ ହୃଦୟରେ ସେଠାରେ ଏକ ବିହାର ନିର୍ମାଣ କରାଇଲେ ଓ ତାହାର ସମାପ୍ତି ଉତ୍ତାରେ ସେଠାରେ **ଆସି** ରହିବା ପାଇଁ ବୁଦ୍ଧଙ୍କୁ ଅନୁରୋଧ କଲେ ଓ ବୁଦ୍ଧ ଉକ୍ତ ଦାନ ଗ୍ରହଣ କଲେ ।

ଉଦ୍ୟାନର ପୂର୍ବ ପାର୍ଶ୍ୱରେ ଏକ ସ୍ତୂପ ଥିଲା । ତାହା ରାଜା ଅଜାତଶତ୍ରୁ ନିର୍ମାଣ କରାଇଥିଲେ । ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ଉତ୍ତାରେ ବିଭିନ୍ନ ନରପତିଗଣ ତାହାଙ୍କ ଦେହାବଶେଷର ଭିନ୍ନ ଭିନ୍ନ ଅଂଶ ପ୍ରାପ୍ତ ହେଲେ । ରାଜା ଅଜାତଶତ୍ରୁ ଯେଉଁ ଅଂଶ ପାଇଥିଲେ, ତାହାକୁ ଗୋଟିଏ ସ୍ତୂପ ମଧ୍ୟରେ ରକ୍ଷାକରି ପୂଜା କଲେ । ଅଶୋକ ନରପତି ହୃଦୟରେ ଧର୍ମଭାବ ପୋଷଣପୂର୍ବକ ପ୍ରତିସ୍ଥାନରେ ମନ୍ଦିର ନିର୍ମାଣ କରିବା ଇଚ୍ଛା କରି, ଏହି ସ୍ତୂପ ଭଗ୍ନ କଲେ ଓ ତନ୍ମଧ୍ୟସ୍ଥ ବୁଦ୍ଧଙ୍କ ଦେହାବଶେଷ ବାହାର କରି ନେଲେ; କିନ୍ତୁ ତହିଁରୁ କିୟଦଂଶ ତନ୍ମଧ୍ୟରେ ରହିଗଲା । ତହିଁରୁ ଅଦ୍ୟାପି ବେଳେ ବେଳେ ଶୁଭ୍ରୋଜ୍ଜ୍ୱଳ ଆଲୋକ ନିର୍ଗତ ହୁଏ ।

---

## ପ୍ରଥମ ଧର୍ମସଭା

ଏହି ବଂଶୋଦ୍ୟାନର ପାଖ ଛଅ କି ଦକ୍ଷିଣ-ପଶ୍ଚିମକୁ ଏକ ପର୍ବତ ପାର୍ଶ୍ବରେ ଉପର୍ଯ୍ୟୁକ୍ତ ଉଦ୍ୟାନ ତୁଲ୍ୟ ଅପର ଏକ ଉଦ୍ୟାନ ଓ ତନ୍ମଧ୍ୟରେ ଏକ ଗୁହା ଥିଲା । ଏହି ସ୍ଥାନରେ ମହାମାନ୍ୟ ମହାକାଶ୍ୟପ ତାହାଙ୍କ ୯୯୯ ଆର୍ହତଙ୍କ ସହ ବୁଦ୍ଧଙ୍କ ନିର୍ବାଣପ୍ରାପ୍ତି ଉତ୍ତରେ ସମବେତ ହୋଇ ତ୍ରିପିଟକ ସଂଗ୍ରହ କରିଥିଲେ । ଏହାର ସଂଗ୍ରହ ସମୟରେ ବହୁ ସଂଖ୍ୟକ ସନ୍ନ୍ୟାସୀ ସମ୍ମିଳିତ ହୋଇଥିଲେ । କାଶ୍ୟପ ସେମାନଙ୍କୁ ସମ୍ବୋଧନ କରି କହିଲେ, "ତୁମ୍ଭେ ଅଦ୍ୟାପି ମନୁଷ୍ୟର ସ୍ୱାଭାବିକ ଦୁର୍ବଳତାରୁ ମୁକ୍ତ ହୋଇ ନାହିଁ । ତୁମ୍ଭର ଅବସ୍ଥିତିଦ୍ୱାରା ଏହି ନିଷ୍କଳଙ୍କ ସନ୍ନ୍ୟାସିମଣ୍ଡଳୀକୁ କଳଙ୍କିତ କର ନାହିଁ ।" ଆନନ୍ଦ ଏହା ଶ୍ରବଣ କରି ଲଜ୍ଜାରେ ସେ ସ୍ଥାନ ତ୍ୟାଗ କଲେ; କିନ୍ତୁ ଏକ ରାତ୍ରି ମଧ୍ୟରେ ପ୍ରଗାଢ଼ ମନୋନିବେଶ ସହକାରେ ସେ ତ୍ରିଲୋକବନ୍ଧନ ଛିନ୍ନ କରି ଆର୍ହତ ତୁଲ୍ୟ ପୂର୍ଣ୍ଣତା ପ୍ରାପ୍ତ ହେଲେ । ତତ୍ପରେ ସେ ସମ୍ମିଳନୀର ଦ୍ୱାରଦେଶରେ ଉପସ୍ଥିତ ହୋଇ ବିନମ୍ରପୁରଃସର ପ୍ରଣାମ କଲେ । କାଶ୍ୟପ ତାହାଙ୍କୁ ଦେଖି ପ୍ରଶ୍ନକଲେ, "ତୁମ୍ଭେ କି ବନ୍ଧନମୁକ୍ତ ହୋଇ-ଅଛ ?" ଆନନ୍ଦ ଉତ୍ତର କଲେ, "ହଁ" । କାଶ୍ୟପ କହିଲେ, "ତାହା ହେଲେ ଦ୍ୱାରୋଦ୍‌ଘାଟନ କରିବା ଆବଶ୍ୟକ ନାହିଁ । ତୁମ୍ଭେ ଇଚ୍ଛାନୁସାରେ ପ୍ରବେଶ କରିପାର ।" ତତ୍ପରେ ଆନନ୍ଦ ଦ୍ୱାରସ୍ଥ ଏକ କ୍ଷୁଦ୍ର ଛିଦ୍ର ମଧ୍ୟଦେଇ ପ୍ରବିଷ୍ଟ ହୋଇ ସନ୍ନ୍ୟାସିଗଣଙ୍କ ପଦତଳରେ ପ୍ରଣତ ହେଲେ । କାଶ୍ୟପ ତାହାଙ୍କ ହସ୍ତ ଧାରଣ କରି କହିଲେ,"ତୁମ୍ଭେ ସମସ୍ତ ଅସମ୍ପୂର୍ଣ୍ଣତାରୁ ମୁକ୍ତ ହୋଇ ପବିତ୍ର ଫଳ ଲାଭ କରିବ, ଏହା ଦେଖିବା ସକାଶେ ଅତ୍ୟନ୍ତ ଚିନ୍ତିତ ହୋଇ ମୁଁ ତୁମ୍ଭଙ୍କୁ ବର୍ଜ୍ଜନ କରିଥିଲି । ଏହା ଜାଣି ତୁମ୍ଭର ହୃଦୟରୁ ଅମଙ୍ଗଳ ଭାବ ଦୂର କରିବା ଉଚିତ ।" ଆନନ୍ଦ କହିଲେ, "ମୁଁ ଯଦି ଅହିତ ଚିନ୍ତା ପୋଷଣ କରି-

ଥାଆନ୍ତ, ତାହା ହେଲେ ମୁଁ ବନ୍ଧନମୁକ୍ତ ହେଲି ବୋଲି କପରି ଆପଣ କହୁଛନ୍ତି ?” ତତ୍ପରେ ସେ କାଶ୍ୟପଙ୍କ ପଦଦେଶରେ ବିନମ୍ର-ପୁରଃସର ପ୍ରଣତ ହୋଇ ଆସନ ଗ୍ରହଣ କଲେ ।

## ଆନନ୍ଦଙ୍କ ସୂତ୍ରପିଟକ ଆବୃତ୍ତି

ତତ୍ପରେ ସେମାନେ ସେଠାରେ ବର୍ଷାକାଳୀନ ବିଶ୍ରାମ ସମୟରୁ ୧୫ ଦିନ ଯାପନ କଲେ । କାଶ୍ୟପ ପୁଣି ଆନନ୍ଦଙ୍କୁ ସମ୍ବୋଧନ କରି କହିଲେ, “ବୁଦ୍ଧ ସନ୍ନ୍ୟାସିମଣ୍ଡଳୀରେ ତୁମ୍ଭଙ୍କୁ ଶିଷ୍ୟ ବା ଶିକ୍ଷାର୍ଥୀ ବୋଲି ଅଭିହିତ କରିଥିଲେ । ତୁମ୍ଭେ ଧର୍ମତତ୍ତ୍ୱ ସମ୍ପୂର୍ଣ୍ଣରୂପେ ଆୟତ୍ତ କରିଅଛ । ବର୍ତ୍ତମାନ ବେଦକାରୋହଣପୂର୍ବକ ଏହି ମଣ୍ଡଳୀର ମଙ୍ଗଳାର୍ଥେ ସୂତ୍ର-ସମ୍ବନ୍ଧର ସାର ତୁଲ୍ୟ ସୂତ୍ରପିଟକ ଆବୃତ୍ତି କର ।” ଏହା ଶୁଣି ଆନନ୍ଦ ତାହାଙ୍କ ଆଦେଶରେ ଗାତ୍ରୋତ୍ଥାନ କଲେ ଓ ବୁଦ୍ଧଙ୍କ ପରିନିର୍ବାଣ ପର୍ବତ* ପ୍ରତି ପ୍ରଣତ ହୋଇ ବେଦକାରୋହଣପୂର୍ବକ ସୂତ୍ରସମ୍ବନ୍ଧ ଆବୃତ୍ତି କଲେ ଓ ସନ୍ନ୍ୟାସିମଣ୍ଡଳୀ ସେ ସମସ୍ତ ଲିପିବଦ୍ଧ କଲେ । ତତ୍ପରେ କାଶ୍ୟପ ବିନୟ ପିଟକ ନାମକ ନୀତିଶାସ୍ତ୍ର ଆବୃତ୍ତି କରିବା ସକାଶେ ଉପାଳିଙ୍କୁ ଅନୁରୋଧ କଲେ । ଏହା ଉତ୍ତାରେ ସ୍ୱୟଂ କାଶ୍ୟପ ଅଭିଧର୍ମ ପିଟକ ବା ଶାସ୍ତ୍ରାର୍ଥ ସଂଗ୍ରହ ଆବୃତ୍ତି କଲେ । ତତ୍ପରେ ତିନିମାସ ମଧ୍ୟରେ ତ୍ରିପିଟକ ସଂଗ୍ରହ ସମାପ୍ତ ଓ ସେ ସମସ୍ତ ତାଳପତ୍ରରେ ଲିପିବଦ୍ଧ କରି ସର୍ବତ୍ର ବିଣ୍ଟନ କଲେ । ଏହା ଦେଖି ସନ୍ନ୍ୟାସିଗଣ ପରସ୍ପର କଥୋପକଥନ କଲେ, “ଆମ୍ଭମାନଙ୍କ ଏହି ଶାସ୍ତ୍ରସଂଗ୍ରହ ବୁଦ୍ଧଙ୍କ ଦୟାର ନିଦର୍ଶନ ବୋଲି ବିବେଚିତ ହେବ; ଯେହେତୁ ତାହାଙ୍କ ଦୟାରେ ଆମ୍ଭେ-ମାନେ ସମସ୍ତେ ଏ ସମସ୍ତ ଶ୍ରବଣ କରିବାର ସୁଯୋଗ ଲଭିଥିଲୁଁ ।”

* ବୁଦ୍ଧଙ୍କ ସମାଧି

କାଶ୍ୟପ ଏହି ସନ୍ନ୍ୟାସିମଣ୍ଡଳୀ ମଧ୍ୟରେ ଅଧ୍ୟକ୍ଷ ଥିବା ଯୋଗୁଁ ଏହା ସ୍ଥବିରମଣ୍ଡଳୀ ନାମରେ ଅଭିହିତ ହୋଇଅଛି ।

ଏହି ସ୍ଥାନର କୋଡିଏ ଲି ପଶ୍ଚିମରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଏଠାରେ ମହାସଂଘିକମଣ୍ଡଳୀର ଅଧିବେଶନ ହୋଇ-ଥିଲା । ଯେଉଁ ପ୍ରାପ୍ତପୂର୍ଣ୍ଣଜ୍ଞାନ * ଓ ଅପ୍ରାପ୍ତପୂର୍ଣ୍ଣ ଜ୍ଞାନ † ସନ୍ନ୍ୟାସିଗଣ କାଶ୍ୟପଙ୍କ ସଙ୍ଘରେ ସ୍ଥାନପ୍ରାପ୍ତ ହୋଇ ନ ଥିଲେ, ଉଭୟ ଶ୍ରେଣୀର ସନ୍ନ୍ୟାସୀ ଏହି ସ୍ଥାନରେ ସମବେତ ହୋଇ ପରସ୍ପର ମଧ୍ୟରେ କଥୋପ-କଥନ କଲେ, "ବୁଦ୍ଧଙ୍କ ଜୀବଦ୍ଦଶାରେ ସେ ଆମ୍ଭ ସମସ୍ତଙ୍କର ଏକମାତ୍ର ପ୍ରଭୁ ଥିଲେ । ବର୍ତ୍ତମାନ ତାହାଙ୍କ ତିରୋଧାନ ହୋଇଥିବାରୁ ଏମାନେ ଆମ୍ଭମାନଙ୍କୁ ବର୍ଜ୍ଜନ କରୁଅଛନ୍ତି । ବୁଦ୍ଧଙ୍କ ଦୟା ବଳମୟରେ ଆମ୍ଭେମାନେ ମଧ୍ୟ ଧର୍ମପିଟକ ସଂଗ୍ରହ ନ କରିବା କାହିଁକି ?" ତତ୍ପରେ ସେମାନେ ସୂତ୍ରପିଟକ, ବିନୟ ପିଟକ, ଅଭିଧର୍ମ ପିଟକ ବିବିଧ ପିଟକ ଓ ଧରଣୀ ପିଟକ—ଏହି ପଞ୍ଚପିଟକ ସଂଗ୍ରହ କଲେ । ଏହି ସଙ୍ଘରେ ସାଧାରଣ ବ୍ୟକ୍ତି ଓ ଧର୍ମାକାଙ୍କ୍ଷୀଗଣ ଉପସ୍ଥିତ ହୋଇ-ଥିବାରୁ ତାହା ମହାସଙ୍ଘିକମଣ୍ଡଳୀ ନାମରେ ଅଭିହିତ ହୋଇଥିଲା ।

ଏହାର ପରିଧି କୋଡିଏ ଲି ଓ ଏଥିରେ ଏକମାତ୍ର ପ୍ରବେଶ ଦ୍ୱାର ଥିଲା । ଯେତେବେଳେ ରାଜା ବିମ୍ବିସାର କୁଶାଗାରପୁରରେ ଅବସ୍ଥାନ କରୁଥିଲେ, ସେତେବେଳେ ଏହି ସ୍ଥାନ ଅତ୍ୟନ୍ତ ଜନାକୀର୍ଣ୍ଣ ଥିଲା । ବାସଗୃହସମୂହ ପରସ୍ପର ଘନଭାବରେ ସଂଲଗ୍ନ ଥିବାରୁ ବାରମ୍ବାର ଗୃହଦାହ ହେଉଥିଲା । ତେଣୁ ରାଜା ଆଦେଶ କଲେ ଯେ, ଯେଉଁ ଗୃହସ୍ୱାମୀର ଅବହେଳା ଯୋଗୁଁ ଗୃହଦାହ ହେବ, ସେ "ଶୀତବନ"ରେ ନିର୍ବାସିତ ହୋଇ ରହିବ । ଏହି ଶୀତବନ ତତ୍କାଳୀନ ଶ୍ମଶାନ ଭୂମି ।

* ଶୈଚ । † ଅଶୈଚ

ଏହି ଆଦେଶ ପ୍ରଚାରରେ ଅଳ୍ପ ଦିବସ ଉତ୍ତାରେ ରାଜପ୍ରାସାଦରେ ଅଗ୍ନି ଲାଗି ଭସ୍ମୀଭୂତ ହେଲା । ରାଜା କହିଲେ, "ମୁଁ ଶାସନକର୍ତ୍ତା, ମୁଁ ଯଦି ଧର୍ମ ଲଙ୍ଘନ କରିବି, ତାହାହେଲେ ଧର୍ମଲଙ୍ଘନକାରୀଙ୍କୁ ଶାସନ କରି ପାରିବି ନାହିଁ ।" ସେ ଯୁବରାଜଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ଉପର୍ଯ୍ୟୁକ୍ତ ଶ୍ମଶାନ ଭୂମିରେ ଅବସ୍ଥାନ କରିବା ସକାଶେ ଗୃହତ୍ୟାଗ କଲେ ।

ବିମ୍ବିସାର ରାଜଧାନୀ ସନ୍ନିକଟସ୍ଥ ଶ୍ମଶାନ ଭୂମିରେ ଅବସ୍ଥାନ କରୁଥିବା ବେଳେ ପୁଣି ବୈଶାଳୀ ନରପତି ସୈନ୍ୟ ପ୍ରେରଣ କରି ତାଙ୍କୁ ବନ୍ଦୀ କରିବା ସକାଶେ ଉଦ୍ୟତ ହେଲେ । ରାଜଦ୍ୱାରର ପ୍ରହରୀଗଣ ଏହା ଅବଗତ ହୋଇ ବିମ୍ବିସାରଙ୍କୁ ସମ୍ବାଦ ଦେଲେ ଓ ତାହାଙ୍କ ଶ୍ମଶାନସ୍ଥ ଆବାସ ସ୍ଥଳ ଦୃଢ଼ଭାବରେ ରକ୍ଷା କରିବାକୁ ଲାଗିଲେ । ଏହି ସ୍ଥାନରେ ରାଜା ସର୍ବପ୍ରଥମରେ ଗୃହଦାହ କରିଥିବାରୁ ତାହା ରାଜଗୃହ ନାମରେ ଅଭିହିତ ହେଲା । ଏହାହିଁ ନୂତନ ନଗର । ତତ୍ପରେ ରାଜା ଅଜାତଶତ୍ରୁ ପିତାଙ୍କ ସିଂହାସନ ଆରୋହଣ କରି ଏହି ସ୍ଥାନରେ ସ୍ୱୀୟ ରାଜଧାନୀ ସ୍ଥାପନ କଲେ । ଅଶୋକଙ୍କ ରାଜତ୍ୱ ପର୍ଯ୍ୟନ୍ତ ରାଜଧାନୀ ଏହି ସ୍ଥାନରେ ଅବସ୍ଥିତ ଥିଲା । ଅଶୋକ ପାଟଳୀପୁତ୍ରକୁ ରାଜଧାନୀ ଉଠାଇନେଇ ବ୍ରାହ୍ମଣମାନଙ୍କୁ ରାଜଗୃହ ଦାନ କଲେ । ରାଜଗୃହ ବର୍ତ୍ତମାନ କେବଳ ଏକ ସହସ୍ର ବ୍ରାହ୍ମଣ-ପରିବାରଙ୍କ ଆବାସ ସ୍ଥଳ ।

---

## ମହାପୁରୁଷ ଜ୍ୟୋତିଷ୍କ

ରାଜଗୃହର ଦକ୍ଷିଣ-ପଶ୍ଚିମ କୋଣରେ ଏକ ସ୍ତୂପ ଥିଲା । ଏହିଠାରେ ଜ୍ୟୋତିଷ୍କନାମକ ଏକ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ବାସଗୃହ ଥିଲା । ଏହା ସମୀପସ୍ଥ ସ୍ଥାନରେ ବୁଦ୍ଧଦେବ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ନାଳନ୍ଦ ମଠର ଉତ୍ତର-ପଶ୍ଚିମ ପାର୍ଶ୍ୱରେ ଦୁଇଶତ ଫୁଟ ଉଚ୍ଚ ଏକ ବିହାର ଥିଲା । ତାହା ରାଜା ବାଲାଦିତ୍ୟ ନିର୍ମାଣ କରିଥିଲେ । ଏହାର କାରୁକାର୍ଯ୍ୟ ଅତ୍ୟନ୍ତ ମନୋମୁଗ୍ଧକର । ଏଠାରେ ବୋଧିଦ୍ରୁମ ତଳସ୍ଥ ମୂର୍ତ୍ତି ପରି ବୁଦ୍ଧଙ୍କର ଗୋଟିଏ ମୂର୍ତ୍ତି ଥିଲା । ଏହାର ଉତ୍ତର-ପଶ୍ଚିମ ପାର୍ଶ୍ୱରେ ପୂର୍ବତନ ଚତୁର୍ବୁଦ୍ଧଙ୍କ ପ୍ରସ୍ତରମୂର୍ତ୍ତି ମଧ୍ୟ ରକ୍ଷିତ ହୋଇଥିଲା । ଏହାର ଦକ୍ଷିଣରେ ରାଜା ଶୀଳାଦିତ୍ୟଙ୍କ ନିର୍ମିତ ପିତ୍ତଳାଚ୍ଛାଦିତ ବିହାର ଥିଲା । ଉକ୍ତ ବିହାର ଅସମ୍ପୂର୍ଣ୍ଣ ଅବସ୍ଥାରେ ରହିଥିଲା । ଏହାର ଆକାରରୁ ଅନୁମିତ ହେଉଥିଲା, ସମ୍ପୂର୍ଣ୍ଣ ହୋଇଥିଲେ ଏହା ଏକଶତାଧିକ ଫୁଟ ଉଚ୍ଚ ହୋଇଥାଆନ୍ତା ।

ଏହାର ଦୁଇଶତ ପାଦ ପୂର୍ବକୁ ଅଶୀଫୁଟ ଉଚ୍ଚ ବୁଦ୍ଧଙ୍କ ତାମ୍ରମୂର୍ତ୍ତି ଷଡ଼୍‌ସ୍ତମ୍ଭବିଶିଷ୍ଟ ଏକ ମଣ୍ଡପରେ ରକ୍ଷିତ ହୋଇଥିଲା । ପୂର୍ବକାଳରେ ଏହା ରାଜା ପୂର୍ଣ୍ଣବର୍ମା ନିର୍ମାଣ କରାଇଥିଲେ । ଏହାର ପୂର୍ବ ପାର୍ଶ୍ୱକୁ ବହୁ ଦୂରରେ ଏକ ସ୍ତୂପ ଥିଲା । ଯେତେବେଳେ ବୁଦ୍ଧ ପୂର୍ଣ୍ଣଜ୍ଞାନ-ପ୍ରାପ୍ତ ହୋଇ ରାଜଗୃହ ଅଭିମୁଖରେ ଗମନ କରୁଥିଲେ, ସେତେବେଳେ ରାଜା ବିମ୍ବିସାର ବହୁସଂଖ୍ୟକ ଲୋକ ସମଭିବ୍ୟାହାରରେ ଏହି ସ୍ଥାନରେ ତାହାଙ୍କ ଦର୍ଶନଲାଭ କରିଥିଲେ ।

---

## ହଂସ ମଠ

ଏହାର ତିରିଶ ଲି ପୂର୍ବକୁ ଇନ୍ଦ୍ରଶିଲାଗୁହା ପର୍ବତ । ଏହାର ପୂର୍ବ ପାର୍ଶ୍ୱସ୍ଥ ସାନୁଦେଶରେ ଏକ ସଂଘାରାମ ଓ ତତ୍‌ସମ୍ମୁଖରେ ହଂସ ନାମକ ଏକ ସ୍ତୂପ ଥିଲା । ପୂର୍ବକାଳରେ ଏହି ସଂଘାରାମ ହୀନଯାନା-ବଲମ୍ବୀମାନଙ୍କ ସକାଶେ ପ୍ରଦତ୍ତ ହୋଇଥିଲା । ଏହି ସ୍ଥାନର ଅଧିବାସି-

ଗଣ କମିକ ଗତିରେ ଜ୍ଞାନମାର୍ଗରେ ଅଗ୍ରସର ହୋଇଥିଲେ । ଏହି ଅବସ୍ଥାରେ ସେମାନେ ନିର୍ବିଧ ବିଶୁଦ୍ଧ ଚଟଣୀ ବ୍ୟବହାର କରି ପାରୁଥିଲେ । ଏକଦା ସଂଘାରାମ ତତ୍ତ୍ୱାବଧାରକ ଆବଶ୍ୟକ ଖାଦ୍ୟ ସାମଗ୍ରୀ ସଂଗ୍ରହ କରି ନ ପାରି କିଂକର୍ତ୍ତବ୍ୟବିମୂଢ଼ ହୋଇ ସଂଘାରାମ ସନ୍ନିକଟରେ ବିମର୍ଷଚିତ୍ତରେ ଦଣ୍ଡାୟମାନ ହୋଇଥିଲେ । ଏହି ସମୟରେ ଦେଖିଲେ ଯେ, କେତେଗୁଡିଏ ବନ୍ୟ ରାଜହଂସ ଶ୍ରେଣୀବଦ୍ଧ ହୋଇ ଉଡିଯାଉଅଛନ୍ତି । ପରିହାସରେ ସେ କହିଲେ, "ଆଜି ସନ୍ନ୍ୟାସୀଙ୍କର ଅତ୍ୟନ୍ତ ଅଭାବର ଦିବସ । ପ୍ରଭୋ, ଏହି ସୁଯୋଗ ପରିତ୍ୟାଗ କରନ୍ତୁ ନାହିଁ । ଏହା କହି ହଂସମାନଙ୍କୁ ସେ ସ୍ତୁତି କରିବାକୁ ଲାଗିଲେ । ତାହାଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଶ୍ରେଷ୍ଠ ହଂସଟି ଆକାଶମାର୍ଗରୁ ପ୍ରତ୍ୟାବୃତ୍ତ ହୋଇ ଭୂତଳରେ ପତିତ ହେଲା । ଭିକ୍ଷୁ ଏହି ଅଦ୍ଭୁତ ବ୍ୟାପାର ସନ୍ଦର୍ଶନରେ ବିସ୍ମୟ ଓ ଭୟରେ ଅଭିଭୂତ ହେଲେ ଓ ସନ୍ନ୍ୟାସୀ ଭ୍ରାତାମାନଙ୍କ ମଧ୍ୟରେ ଏହି ସମ୍ବାଦ ପ୍ରଚାର କଲେ । ସନ୍ନ୍ୟାସିଗଣ ଏହା ଶୁଣି କିଛି କହିଲେ ନାହିଁ; କିନ୍ତୁ ସେମାନଙ୍କ ହୃଦୟ ଭୟ ଓ ଭକ୍ତିରେ ପୂର୍ଣ୍ଣ ହେଲା ଏବଂ ଘନ ଘନ ଦୀର୍ଘ ନିଃଶ୍ୱାସ ଓ ଚକ୍ଷୁରୁ ଅବିରଳ ଅଶ୍ରୁଧାରା ପ୍ରବାହିତ ହେବାକୁ ଲାଗିଲା । ପରସ୍ପର ମଧ୍ୟରେ ସେମାନେ କଥୋପକଥନ କଲେ, "ଏ ଜଣେ ବୋଧିସତ୍ତ୍ୱ, ଆମ୍ଭମାନଙ୍କ ମଧ୍ୟରେ କିଏ ଏତେ ସାହସୀ ଯେ, ଏହାର ମାଂସାସ୍ୱାଦନ କରିବ ?" ଯେତେବେଳେ ତଥାଗତ ତାହାଙ୍କ ଉପଦେଶ ପ୍ରଦାନର କମିକ ନିୟମ ବାନ୍ଧିବନ୍ଧ କଲେ, ସେତେବେଳେ ତାହାଙ୍କ ପ୍ରଥମ ଉପଦେଶ ବାକ୍ୟାବଳୀକୁ ଅନ୍ତିମ ଉପଦେଶ ବୋଲି ମନେ କରିବାକୁ ବାରଣ କରିଥିଲେ । ଆଉ ଏ ସମସ୍ତର ପରିବର୍ତ୍ତନ ନାହିଁ ବୋଲି ମନେ ନ କରିବାକୁ ସେ ଆମ୍ଭମାନଙ୍କୁ ସାବଧାନ କରିଦେଇଥିଲେ । ଉପଯୁକ୍ତ କାରଣରୁ ସେ ଏହି ଉପଦେଶ ପ୍ରଦାନ କରିଥିଲେ । ଏହି ସମୟରୁ ସେମାନେ ମହାଯାନର ନୀତି ଗ୍ରହଣ କଲେ । ଆଉ ନିର୍ବିଧ

ବିଶୁଦ୍ଧ ଖାଦ୍ୟ ଦ୍ରବ୍ୟ ବ୍ୟବହାର କଲେ ନାହିଁ । ତତ୍ପରେ ସେମାନେ ଭାବୀ ବଂଶଧରଙ୍କ ମଙ୍ଗଳାର୍ଥେ ରାଜହଂସର ସମାଧି ସକାଶେ ଏକ ଉଚ୍ଚ ମନ୍ଦିର ନିର୍ମାଣ କରାଇଲେ ।

---

## ଅବଲୋକିତେଶ୍ୱରଙ୍କ ମୂର୍ତ୍ତି

ଏହା ଉତ୍ତାରେ ହୁଏନ୍‌ସାଂ ନାନା ପବିତ୍ର ସ୍ଥାନ ପରିଦର୍ଶନ କରି, ପ୍ରତ୍ୟେକ ସ୍ଥାନରେ ଭକ୍ତିପୂର୍ବକ ପୂଜାକଲେ ଓ ନାଳନ୍ଦ ମଠକୁ ପ୍ରତ୍ୟାବର୍ତ୍ତନ କରି ଆଚାର୍ଯ୍ୟପ୍ରବର ଶୀଳଭଦ୍ରଙ୍କୁ ବହୁ ସହସ୍ରସଂଖ୍ୟକ ଶ୍ରୋତାଙ୍କ ସମକ୍ଷରେ ଯୋଗଶାସ୍ତ୍ର ବ୍ୟାଖ୍ୟାନ କରିବା ସକାଶେ ଅନୁରୋଧ କଲେ । ଶୀଳଭଦ୍ରଙ୍କ ବ୍ୟାଖ୍ୟାନ ସମାପ୍ତିର ଅଳ୍ପ ସମୟ ଉତ୍ତାରେ ଜଣେ ବ୍ରାହ୍ମଣ ସଭାମଣ୍ଡପର ବହିର୍ଦ୍ଦେଶରେ କରୁଣ ଭାବରେ କ୍ରନ୍ଦନ ଓ ତତ୍‌କ୍ଷଣାତ୍ ହାସ୍ୟ କରିବାକୁ ଲଗିଲେ । ସମବେତ ବ୍ୟକ୍ତିଙ୍କ ମଧ୍ୟରୁ କେହି କେହି "ସେ କାହିଁକି ସେପରି ହେଉଛି" ବୋଲି ପ୍ରଶ୍ନ କଲେ । ସେ ଉତ୍ତର କଲେ, "ମୁଁ ପୂର୍ବ-ଭାରତର ଜଣେ ଅଧିବାସୀ । ପୂର୍ବରେ ମୁଁ ପୋତାରକ ପର୍ବତୋପରି ଅବସ୍ଥିତ ଅବଲୋକିତେଶ୍ୱରଙ୍କ ମୂର୍ତ୍ତି ସମ୍ମୁଖରେ ରାଜପଦ ପ୍ରାପ୍ତି ସକାଶେ ସ୍ତୁତି କରିଥିଲି । ତତ୍ପରେ ବୋଧିସତ୍ତ୍ୱ ମୋ ସମ୍ମୁଖରେ ଆବିର୍ଭୂତ ହୋଇ ଏହି ବାକ୍ୟରେ ତିରସ୍କାର କଲେ ।" "ଏପରି ସ୍ତୁତି କର ନାହିଁ । ଆଜିଠାରୁ ଅମୁକ ବର୍ଷ, ଅମୁକ ମାସ ଓ ଅମୁକ ଦିନରେ ଆଚାର୍ଯ୍ୟପ୍ରବର ଶୀଳଭଦ୍ର ଚୀନ୍ ଦେଶାଗତ ଆଚାର୍ଯ୍ୟଙ୍କ ସକାଶେ ଯୋଗଶାସ୍ତ୍ର ବ୍ୟାଖ୍ୟାନ କରିବେ । ତୁମ୍ଭେ ସେଠାକୁ ଯାଇ ତାହା ଶ୍ରବଣ କର । ଏହା ଶ୍ରବଣ କଲା ଉତ୍ତାରେ ତୁମ୍ଭେ ବୁଦ୍ଧଙ୍କ ଦର୍ଶନ ଲାଭ କରି ପାରିବ । ରାଜା ହେବାର ଲାଭ କଣ ?"

ବ୍ରାହ୍ମଣ କହିଲେ, "ଚୀନ୍ ଦେଶରୁ ଆଚାର୍ଯ୍ୟ ଆସିଥିବା ଓ ତାହାଙ୍କ ସକାଶେ ଆଚାର୍ଯ୍ୟପ୍ରବର ଶୀଲଭଦ୍ର ଭବିଷ୍ୟଦ୍‌ବାଣୀ ଅନୁଯାୟୀ ଶାସ୍ତ୍ର ବ୍ୟାଖ୍ୟାନ କରିଥିବା ମୁଁ ଦେଖିଅଛି । ତେଣୁକରି ମୁଁ ଏକାବେଳକେ କାନ୍ଦୁଅଛି ଓ ହସୁଅଛି ।

ଏହି କାରଣରୁ ଆଚାର୍ଯ୍ୟଶ୍ରେଷ୍ଠ ଶୀଲଭଦ୍ର ଉକ୍ତ ସ୍ଥାନରେ ଅବସ୍ଥାନପୂର୍ବକ ପନ୍ଦର ମାସ କାଳ ସୂତ୍ରସମୂହର ବ୍ୟାଖ୍ୟାନ ଓ ଶ୍ରବଣ କରିବା ସକାଶେ ତାହାଙ୍କୁ ଅନୁରୋଧ କଲେ । ଶାସ୍ତ୍ର ବ୍ୟାଖ୍ୟାନ ସମାପ୍ତି ଉତ୍ତାରେ ଉକ୍ତ ବ୍ରାହ୍ମଣ ସଙ୍ଗରେ ଜଣେ ଲୋକ ଶୀଲାଦିତ୍ୟ ନରପତିଙ୍କ ନିକଟକୁ ପ୍ରେରଣ କଲେ । ଶୀଲାଦିତ୍ୟ ତାହାଙ୍କ ଭରଣ-ପୋଷଣ ସକାଶେ ତିନିଗୋଟି ଗ୍ରାମର ରାଜସ୍ୱ ଦାନ କଲେ ।

ମଠରେ ଅବସ୍ଥାନ କାଳରେ ହୁଏନ୍‌ସାଂ ଯୋଗଶାସ୍ତ୍ର ବ୍ୟାଖ୍ୟାନ ତିନିଥର, ନ୍ୟାୟାନୁସାର ଶାସ୍ତ୍ର ଥରେ, ହିନ୍-ହିଆଂ-ତୁଇ-ଫା-ମିଂଥରେ, ହେତୁବିଦ୍ୟା, ଶବ୍ଦ ବିଦ୍ୟା ଓ ସା-ଲିଆଂ ଶାସ୍ତ୍ର ଦୁଇ ଦୁଇଥର, ପ୍ରାଣ୍ୟମୂଳ ଶାସ୍ତ୍ରଟୀକା ଓ ଶତଶାସ୍ତ୍ର ତିନିଥର ଲେଖାଏଁ ଶ୍ରବଣ କରିଥିଲେ । ସେ କାଶ୍ମୀରର ବିଭିନ୍ନ ସ୍ଥାନରେ ଅବସ୍ଥାନ କାଳରେ କୋଷ, ବିଭାଷା ଓ ଷଟ୍‌ପଦାଭିଧର୍ମ୍ମଶାସ୍ତ୍ରବ୍ୟାଖ୍ୟା ଶ୍ରବଣ କରିଥିଲେ; କିନ୍ତୁ ଏହି ମଠକୁ ଆଗମନ କରି କେତେକ ସନ୍ଦେହ ମୋଚନାର୍ଥେ ପୁନର୍ବାର ଉକ୍ତ ଶାସ୍ତ୍ରସମୂହ ଅଧ୍ୟୟନ କରିବାକୁ ଇଚ୍ଛାକଲେ । ଏ ସମସ୍ତ ଅଧ୍ୟୟନ କରି ବେଦ ଓ ସଂସ୍କୃତ ବ୍ୟାକରଣ ପ୍ରଭୃତିର ଅଧ୍ୟୟନରେ ପ୍ରବୃତ୍ତ ହେଲେ ।

---

## ଭାରତୀୟ ଲିପିର ଉତ୍ପତ୍ତି—ବ୍ୟାକରଣ ଶାସ୍ତ୍ର

ପ୍ରତ୍ୟେକ କଳ୍ପର ପ୍ରାରମ୍ଭରେ ବ୍ରହ୍ମା ଶାସ୍ତ୍ର ପ୍ରଣୟନ କରି ତତ୍ପରେ ଦେବ ଓ ମାନବଙ୍କ ବ୍ୟବହାରାର୍ଥେ ତାହା ପ୍ରେରଣ କରନ୍ତି । ବ୍ରହ୍ମାଙ୍କ-

ଦ୍ୱାରା ପ୍ରଚ୍ଚରିତ ହୋଇଥିବାରୁ ଏହା ବ୍ରହ୍ମଶାସ୍ତ୍ର ନାମରେ ଅଭିହିତ ହୋଇଅଛି । ବ୍ରହ୍ମଶାସ୍ତ୍ର ଦଶଲକ୍ଷ ଶ୍ଲୋକବିଶିଷ୍ଟ ଏକ ପ୍ରକାଣ୍ଡ ଗ୍ରନ୍ଥ । ଏକ ପ୍ରାଚୀନ ଭାଷ୍ୟରେ ଏହା ବ୍ୟାକରଣ ଶାସ୍ତ୍ର ନାମରେ ବର୍ଣ୍ଣିତ ହୋଇଅଛି । ଏହି ବ୍ୟାକରଣ ଶବ୍ଦ ଓ ଭାଷାବିଜ୍ଞାନ ଏବଂ ସ୍ମୃତି ସହାୟକ ଶାସ୍ତ୍ର ।

ବୈବସ୍ୱତ କଳ୍ପ (ପୂର୍ବକଳ୍ପ)ର ପ୍ରାରମ୍ଭରେ ବ୍ରହ୍ମାଜୀ ଏହି ଶାସ୍ତ୍ର ପ୍ରଚାର କରିଥିଲେ । ଏହି ସମୟରେ ଏଥିରେ ଦଶଲକ୍ଷ ଶ୍ଲୋକ ସନ୍ନିବେଶିତ ହୋଇଥିଲା । ଏହା ଉତ୍ତାରେ ବୈବସ୍ୱତ ସିଦ୍ଧ-କଳ୍ପ ( ପ୍ରତିଷ୍ଠା କଳ୍ପ )ର ପ୍ରାରମ୍ଭରେ ଶଙ୍କରଜୀ ଏହି ସଂଖ୍ୟା ହ୍ରାସ କରି ଏକ ଲକ୍ଷ ଶ୍ଲୋକ ରଖିଲେ । ତତ୍ପରେ ଗାନ୍ଧାରସ୍ଥ ଶାଲାତୁର ନଗରବାସୀ ପାଣିନିନାମକ ଜଣେ ବ୍ରାହ୍ମଣ ଏଥିରୁ ଅଷ୍ଟ ସହସ୍ର ଶ୍ଲୋକ ରଖିଲେ । ଏହି ବ୍ୟାକରଣ ବର୍ତ୍ତମାନ ଭାରତବର୍ଷରେ ବ୍ୟବହୃତ ହେଉଅଛି ।

ଅଳ୍ପ ଦିବସ ପୂର୍ବେ ଦାକ୍ଷିଣାତ୍ୟର ଏକ ବ୍ରାହ୍ମଣ ତଦ୍ଦେଶୀୟ ରାଜାଙ୍କ ଅନୁରୋଧରେ ଏହି ସଂଖ୍ୟାକୁ ସାର୍ଦ୍ଧ ଦୁଇ ସହସ୍ରକୁ ହ୍ରାସ କରିଆଣିଲେ । ଏହି ଗ୍ରନ୍ଥସମସ୍ତ ସୀମାନ୍ତ ପ୍ରଦେଶ ଓ ଅନ୍ୟାନ୍ୟ ଅଞ୍ଚଳରେ ପ୍ରଚଳିତ ଥିଲେ ହେଁ ଭାରତବର୍ଷର ପଣ୍ଡିତଗଣ ଏହାକୁ ଅନୁସରଣ କରୁ ନ ଥିଲେ ତଥାପି ଏହାକୁ ପଶ୍ଚିମାଞ୍ଚଳର ମୂଳ ଶବ୍ଦ ଓ ଭାଷାତତ୍ତ୍ୱ ଶାସ୍ତ୍ର ବୋଲି-ଯାଉଥିଲା । ଆଉ ଅନେକଗୁଡିଏ କ୍ଷୁଦ୍ର କ୍ଷୁଦ୍ର ଗ୍ରନ୍ଥ ଥିଲା । ତହିଁରୁ ଗୋଟିକରେ ଏକ ସହସ୍ର ଓ ଅପର ଏକ ବ୍ୟାକରଣରେ ତିନି ସହସ୍ର ଶ୍ଲୋକ ଥିଲା । ତାହା ଧାତୁ ଓ ବର୍ଣ୍ଣମାଳା ସମ୍ବନ୍ଧୀୟ । ଆଉ ଏକ ଗ୍ରନ୍ଥ ବର୍ଣ୍ଣବିଭାଗ ସମ୍ବନ୍ଧୀୟ ( ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନ ବର୍ଣ୍ଣ ) । ମଣ୍ଡଳନାମକ ଆଉ ଏକ ବ୍ୟାକରଣରେ ତିନି ସହସ୍ର ଓ ଉଣାଦି ନାମକ ଗ୍ରନ୍ଥରେ ସାର୍ଦ୍ଧ ଦୁଇ ସହସ୍ର ଶ୍ଲୋକ ଥିଲା । ଶେଷୋକ୍ତ ଗ୍ରନ୍ଥଦ୍ୱୟ ଧାତୁ ଓ ବର୍ଣ୍ଣବିଭାଗ ସମ୍ବନ୍ଧୀୟ । ଅଷ୍ଟଧାତୁ ବା ଧାତୁବୃତ୍ତି ନାମକ ଆଉ ଏକ ବ୍ୟାକରଣରେ

ଅଷ୍ଟଶତ ଶ୍ଲୋକ ଅଛି । ତାହା ବର୍ଣ୍ଣମୂଳ ଓ ବର୍ଣ୍ଣବିଭାଗ ବିଷୟକ । ଏହିଗୁଡ଼ିକ ଭାରତବର୍ଷରେ ପ୍ରଚଳିତ ବ୍ୟାକରଣ ଶାସ୍ତ୍ର ।

---

## ସଂସ୍କୃତ ବ୍ୟାକରଣ ଓ ସୁବନ୍ତ ପ୍ରକରଣ

କର୍ତ୍ତୃବାଚ୍ୟକୁ କର୍ମ ବାଚ୍ୟରେ ପରିଣତ କରିବାର ଦୁଇଗୋଟି ନିୟମ ଅଛି । ପ୍ରଥମ—ତିଙ୍‌ନ୍ତ ବାଚ୍ୟ । ଏହାର ରୂପ ଅଠର ପ୍ରକାର । ଦ୍ୱିତୀୟ—ସୁବନ୍ତ ଜାତ । ଏହାର ରୂପ ଚବିଶ ପ୍ରକାର । ତିଙ୍‌ନ୍ତ ପଦ ସୁଶୀସମ୍ପନ୍ନ ରଚନାରେ ବ୍ୟବହୃତ ହୁଏ । ଲଘୁ ସାହିତ୍ୟରେ ଏହାର ବ୍ୟବହାର ବିରଳ । ସୁବନ୍ତପଦ ସର୍ବପ୍ରକାର ରଚନାରେ ବ୍ୟବହୃତ ହୁଏ । ତିଙ୍‌ନ୍ତ ପଦର ଅଷ୍ଟାଦଶ ରୂପ ସମାନ ଦୁଇ ଭାଗରେ ବିଭକ୍ତ— ପ୍ରଥମ—ପରସ୍ମୈପଦ, ଦ୍ୱିତୀୟ—ଆତ୍ମନେ ପଦ । ପ୍ରତ୍ୟେକ ପଦର ନଅ ରୂପ ମିଶି ଉଭୟ ପଦର ଅଠର ରୂପ । ବଚନ ତିନି ପ୍ରକାର । ଯଥା—ଏକ ବଚନ, ଦ୍ୱିବଚନ ଓ ବହୁ ବଚନ । ତଦ୍ରୂପ ପୁରୁଷ ତିନି ପ୍ରକାର । ଯଥା—ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ ଓ ତୃତୀୟ ପୁରୁଷ । ପ୍ରତ୍ୟେକ ବସ୍ତୁର ପୁରୁଷ ଓ ବଚନ ଅଛି । ଉଭୟ ବାଚ୍ୟରେ ଧାତୁ ଏକ; କିନ୍ତୁ ଅନ୍ତିମ ପ୍ରତ୍ୟୟ ଭିନ୍ନ ଭିନ୍ନ । ପରସ୍ମୈପଦରେ କୌଣସି ବସ୍ତୁ ଥିବା ବା ନ ଥିବା ଅର୍ଥରେ 'ଭୂ' ଧାତୁ ବ୍ୟବହୃତ ହୁଏ । ଅଛି ଅର୍ଥରେ 'ଭୂ' ଧାତୁ ତିନି ପ୍ରକାରରେ ବ୍ୟକ୍ତ ହୁଏ । ଯଥା—ତୃତୀୟ ପୁରୁଷର ଏକ ବଚନରେ 'ଭବତି', ଦ୍ୱିବଚନରେ 'ଭବତଃ' ଓ ବହୁବଚନରେ 'ଭବନ୍ତି'; ଦ୍ୱିତୀୟ ପୁରୁଷ ଏକବଚନରେ 'ଭବସି'; ଦ୍ୱିବଚନରେ 'ଭବଥଃ' ଓ ବହୁବଚନରେ ଭବଥ; ଉତ୍ତମ ପୁରୁଷ ଏକ ବଚନରେ 'ଭବାମି', ଦ୍ୱିବଚନରେ 'ଭବାବଃ' ଓ ବହୁବଚନରେ 'ଭବାମଃ' ।

ଆତ୍ମନେପଦର ନଅ ପ୍ରକାର ରୂପରେ କେବଳ 'ବ୍ୟନ୍ତ' ପ୍ରତ୍ୟୟ ପ୍ରୟୋଗ ହୁଏ । ଏହିସବୁରୁ ଦେଖି ନେବାକୁ ହୁଏ ଯେ, ସଂସ୍କୃତ ବ୍ୟାକରଣରେ ଦ୍ୱି-ଅର୍ଥ ବୋଧକ ଶବ୍ଦର ବ୍ୟବହାର ନାହିଁ ଏବଂ ଲେଖକ ଅତି ସୁନ୍ଦର ଭାବରେ ଶବ୍ଦର ଅର୍ଥ ପ୍ରକାଶ କରିପାରେ । ସୁବନ୍ତ ପଦରେ ରୂପ ଚବିଶ ପ୍ରକାର । କାରକ ଆଠ ପ୍ରକାର । ଯଥା—କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଅଧିକରଣ, ସମ୍ବନ୍ଧ ପଦ ଓ ସମ୍ବୋଧନ; ତିନି ବଚନରେ ବ୍ୟବହୃତ ହୁଏ । ଏହି ପ୍ରକାରେ କାରକର ରୂପ ୨୪ ପ୍ରକାର । ପୁଣି ଲିଙ୍ଗ ତିନି ପ୍ରକାର—ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଲୀବଲିଙ୍ଗ । ଉଦାହରଣ ସ୍ୱରୂପ ପୁରୁଷ ଶବ୍ଦର ରୂପ ନିମ୍ନରେ ପ୍ରଦତ୍ତ ହେଲା—

| | ଏକବଚନ | ଦ୍ୱିବଚନ | ବହୁବଚନ |
|---|---|---|---|
| କର୍ତ୍ତା | ପୁରୁଷଃ | ପୁରୁଷୌ | ପୁରୁଷାଃ |
| କର୍ମ | ପୁରୁଷଂ | ପୁରୁଷୌ | ପୁରୁଷାନ୍ |
| କରଣ | ପୁରୁଷେଣ | ପୁରୁଷାଭ୍ୟାଂ | ପୁରୁଷାଭିଃ ୧ |
| ସମ୍ପ୍ରଦାନ | ପୁରୁଷାୟ | ପୁରୁଷାଭ୍ୟାଂ | ପୁରୁଷେଷୁ ୨ |
| ଅପାଦାନ | ପୁରୁଷାତ୍ | ପୁରୁଷାଭ୍ୟାଂ | ପୁରୁଷେଷୁ ୩ |
| ସମ୍ବନ୍ଧପଦ | ପୁରୁଷସ୍ୟ | ପୁରୁଷାଭ୍ୟାଂ ୪ | ପୁରୁଷାଣାଂ |
| ଅଧିକରଣ | ପୁରୁଷେ | ପୁରୁଷୟୋଃ | ପୁରୁଷାଣାଂ ୫ |
| ସମ୍ବୋଧନ | ହେ ପୁରୁଷ | ହେ ପୁରୁଷୌ | ହେ ପୁରୁଷାଃ |

ଏହି ପ୍ରକାରର ଗୋଟାଏ ଦୁଇଟା ଉଦାହରଣରୁ କାରକ ବୁଝିଂଯାଇ ପାରିବ । ସମସ୍ତ ବିଷୟର ଆଲୋଚନା ଏଠାରେ କଷ୍ଟକର ।

---

ଶୁଦ୍ଧ (୧) ପୁରୁଷୈଃ (୨) ପୁରୁଷେଭ୍ୟଃ, (୩) ପୁରୁଷେଭ୍ୟଃ (୪) ପୁରୁଷୟୋଃ (୫) ପୁରୁଷେଷୁ । ଭ୍ରମାତ୍ମକ ଶବ୍ଦଗୁଡ଼ିକ ହୁଏନ୍ତାଙ୍କ ଅସମ୍ପୃକ୍ତ ଶିକ୍ଷା ଯୋଗୁଁ ଅଥବା ଅନୁବାଦକଙ୍କ ଭ୍ରମ ଯୋଗୁ ଏଥିରେ ସନ୍ନିବେଶିତ ହୋଇଅଛି ।

ହୁଏନ୍‌ସାଂ ସଂସ୍କୃତ ବ୍ୟାକରଣ ଅଧ୍ୟବସାୟ ସହକାରେ ସମ୍ପୂର୍ଣ୍ଣ-ରୂପେ ଅଧ୍ୟୟନ କରିଥିଲେ ଓ ସେ ପଣ୍ଡିତମାନଙ୍କ ସହିତ କଥୋପକଥନ କରି ସଂସ୍କୃତ ଭାଷାରେ ଅଶେଷ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସେ ପାଞ୍ଚବର୍ଷ ମଧ୍ୟରେ ଅନେକ ବୌଦ୍ଧଗ୍ରନ୍ଥ ସଂଗ୍ରହ କରି ଅଧ୍ୟବସାୟ ସହକାରେ ସେ ସମସ୍ତ ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ଅଧ୍ୟୟନ କରି ସମ୍ପୂର୍ଣ୍ଣ-ରୂପେ ଆୟତ୍ତ କରିଥିଲେ ।

---

## ହିରଣ୍ୟ ପର୍ବତ— କପୋତକ ମଠରେ ପ୍ରବେଶ

ଏହି ସ୍ଥାନରୁ ପୁନର୍ବାର ସେ ହିରଣ୍ୟ ପର୍ବତକୁ ଗମନ କଲେ । ତାହାଙ୍କ ଗମନମାର୍ଗରେ ସେ କପୋତକ ମଠ ପରିଦର୍ଶନ କଲେ । ଏହାର ଦୁଇ ତିନି ଲି ଦକ୍ଷିଣକୁ ଏକ ପାହାଡ଼ ଅଛି । ତାହାର ପାର୍ଶ୍ୱଦେଶ ଉନ୍ନତ ଓ ରୁକ୍ଷ ଏବଂ ଶୃଙ୍ଗ ଅତ୍ୟୁଚ୍ଚ । ବର୍ଦ୍ଧନଶୀଳ ତୃଣ ଓ ପର୍ଣ୍ଣବହୁଳ ବୃକ୍ଷରାଜି, ନିର୍ମଳ ଜଳବିଶିଷ୍ଟ ପ୍ରସ୍ରବଣ ଓ ସୌରଭମୟ ଉଜ୍ଜ୍ୱଳ ବର୍ଣ୍ଣ ପୁଷ୍ପରାଜିରେ ଏହା ଅତ୍ୟନ୍ତ ରମଣୀୟ ଦୃଷ୍ଟିଗୋଚର ହୁଏ । ପାହାଡ଼ଟି ଅତ୍ୟନ୍ତ ବିସ୍ମୟକର ବ୍ୟାପାରସମ୍ବଳିତ ମନ୍ଦିରଗୁଡ଼ିକରେ ପରିପୂର୍ଣ୍ଣ ଥିଲା ।

ଏହି ମୁକ୍ତ ସ୍ଥାନର ମଧ୍ୟସ୍ଥଳରେ ବିହାର ଓ ତନ୍ମଧ୍ୟରେ ବୋଧିସତ୍ତ୍ୱ ଅବଲୋକିତେଶ୍ୱରଙ୍କର ଗୋଟିଏ ଚନ୍ଦନକାଷ୍ଠ ମୂର୍ତ୍ତି ଥିଲା । ଏହାର ରୂପ ସ୍ୱର୍ଗୀୟ ଓ ମହିମାମୟ ଭାବଦ୍ୟୋତକ । ଏହି ମୂର୍ତ୍ତି ସମକ୍ଷରେ ବହୁ-ସଂଖ୍ୟକ ଲୋକ ଉପବାସରେ ରହି,ସପ୍ତ ଦିବସ ଅଥବା ଚତୁର୍ଦ୍ଦଶ ଦିବସ କାଳ ବନ୍ଦନା କରୁଥିଲେ । ନିଷ୍ଠାପର ଉପାସକଗଣ ତତ୍‌କ୍ଷଣାତ୍ ଚନ୍ଦନ କାଷ୍ଠ ମୂର୍ତ୍ତି ମଧ୍ୟରୁ ଦେଦୀପ୍ୟମାନ ବୋଧିସତ୍ତ୍ୱ ମୂର୍ତ୍ତି ଦର୍ଶନ କରୁଥିଲେ ଅନେକ ଲୋକ ବୋଧିସତ୍ତ୍ୱଙ୍କ ଦର୍ଶନ ଲାଭ କରିଥିଲେ ଓ ଏହି କାରଣରୁ ଉପାସକଙ୍କ ସଂଖ୍ୟା ବୃଦ୍ଧି ହେଉଥିଲା ।

ପ୍ରତ୍ୟହ ସମାଗତ ଉପାସକଙ୍କଦ୍ୱାରେ ମୂର୍ତ୍ତି କଳୁଷିତ ହେବା ଭୟରେ ମଠର ସେବକଗଣ ମୂର୍ତ୍ତିଠାରୁ ସପ୍ତପଦ ଦୂରର ଚତୁର୍ଦ୍ଦିଗରେ ସୂକ୍ଷ୍ମାଗ୍ର ଲୌହଶଲାକା ସମ୍ବଳିତ ସ୍ତମ୍ଭଶ୍ରେଣୀ ପ୍ରୋଥିତ କରିଥିଲେ ; ସୁତରାଂ ଉପାସକଗଣ ସ୍ତମ୍ଭର ଅପର ପାର୍ଶ୍ୱରେ ରହି ତାହାଙ୍କ ପୂଜା ସମ୍ପାଦନ କରୁଥିଲେ। ତଥାପି ମୂର୍ତ୍ତି ନିକଟକୁ ଅସି ନ ପାରି ଦୂରରୁ ପୁଷ୍ପ ନିକ୍ଷେପ କରୁଥିଲେ । ଯେଉଁମାନଙ୍କ ପୁଷ୍ପ ମୂର୍ତ୍ତି ହସ୍ତରେ ସଂଲଗ୍ନ ହୋଇ ରହୁଥିଲା, ସେମାନେ ଅତ୍ୟନ୍ତ ଭାଗ୍ୟବାନ୍ ବିବେଚିତ ହେଉଥିଲେ ଓ ମନେ କରୁଥିଲେ ଯେ, ବୋଧିସତ୍ତ୍ୱ ସେମାନଙ୍କ ମନୋବାଞ୍ଛା ପୂରଣ କରିବେ । ହୁଏନ୍‌ସାଂ ପୂଜା କରିବା ସକାଶେ ଇଚ୍ଛା କରି ପୁଷ୍ପମାଳା-ହସ୍ତରେ ଉକ୍ତ ସ୍ଥାନକୁ ଗମନ କଲେ । ସର୍ବାନ୍ତଃକରଣରେ ସେଠାରେ ବୋଧିସତ୍ତ୍ୱଙ୍କୁ ସ୍ତୁତି କଲେ ଏବଂ ହସ୍ତ ଓ ଜାନୁପାତପୂର୍ବକ ବନ୍ଦନା କାମନା କଲେ ।

---

## ଅବଲୋକିତେଶ୍ୱରଙ୍କ ମୂର୍ତ୍ତିଠାରେ ପୁଷ୍ପ ପ୍ରଦାନ ଓ ଶପଥ ଗ୍ରହଣ

ପ୍ରଥମ, ଶିକ୍ଷା ସମାପ୍ତ କରି ନିର୍ବିଘ୍ନରେ ଓ ଶାନ୍ତିରେ ମୁଁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବି; ତାହାହେଲେ ମୋର ଏହି ପୁଷ୍ପମାଳା ଆପଣଙ୍କ ହସ୍ତରେ ସଂଲଗ୍ନ ହୋଇରହୁ ।

ଦ୍ୱିତୀୟ, ମୋର ଅଭିଳଷିତ ପୁଣ୍ୟ ସଞ୍ଚୟ ଓ ଜ୍ଞାନଲାଭ ଯୋଗୁ ମୁଁ ତୁଷିତ ସ୍ୱର୍ଗରେ ଜନ୍ମଗ୍ରହଣ କରିବି ଓ ମୈତ୍ରେୟ ବୋଧିସତ୍ତ୍ୱଙ୍କୁ ପୂଜା କରିବା ସକାଶେ ଅନୁମତି ପ୍ରାପ୍ତ ହେବି, ତାହାହେଲେ ପୁଷ୍ପମାଳା ଆପଣଙ୍କ ବାହୁଦ୍ୱୟରେ ସଂଲଗ୍ନ ହେଉ ।

ତୃତୀୟ, ଧର୍ମଶାସ୍ତ୍ରରେ ଲିଖିତ ଅଛି ଯେ, ପୃଥିବୀର କେତେକ ପ୍ରାଣୀଙ୍କ ସ୍ୱଭାବ ବୁଦ୍ଧଙ୍କ ସ୍ୱଭାବ ତୁଲ୍ୟ ନୁହେଁ । ହୁଏନ୍‌ସାଂର ସ୍ୱଭାବ କି ପ୍ରକାର ତାହା ସେ ଅଜ୍ଞାନତାବଶତଃ ନିଜେ ଅବଗତ ନୁହେଁ । ଯଦି

ତାହାର ସ୍ୱଭାବ ବୁଦ୍ଧଙ୍କ ସ୍ୱଭାବ ତୁଲ୍ୟ ହୋଇଥାଏ ଓ ସ୍ୱୀୟ ଆଚରଣ-ପ୍ରଭାବରେ ତାହାଙ୍କ ତୁଲ୍ୟ ପୂର୍ଣ୍ଣତା ପ୍ରାପ୍ତ ହେବ, ତାହାହେଲେ ପୁଷ୍ପମାଳା ଗଳଦେଶରେ ଲମ୍ବମାନ ହୋଇରହୁ ।

ଏହା କହି ଦୂରରୁ ପୁଷ୍ପମାଳା ନିକ୍ଷେପ କଲେ ଓ ତାହାଙ୍କ ପ୍ରାର୍ଥନାନୁଯାୟୀ ପୁଷ୍ପମାଳାସମୂହ ହସ୍ତ, ବାହୁ ଓ ଗଳଦେଶରେ ଲମ୍ବିତ ହେଲା । ଅଭୀଷ୍ଟସିଦ୍ଧିରେ ହୁଏନ୍‌ସାଂ ନିରତିଶୟ ପ୍ରୀତ ହେଲେ । ତାହାଙ୍କ ସମୀପସ୍ଥ ଉପାସକ ଓ ବିହାରର ତତ୍ତ୍ୱାବଧାରକଗଣ ଏ ସମସ୍ତ ବ୍ୟାପାର ସନ୍ଦର୍ଶନରେ କରତାଳି ପ୍ରଦାନପୂର୍ବକ ଭୂମିରେ ପଦାଘାତ କରି କହିଲେ, "କି ଆଶ୍ଚର୍ଯ୍ୟ ବ୍ୟାପାର ! ଏହା ଉତ୍ତାରେ ଯଦି ଆପଣ ପୂର୍ଣ୍ଣ ଜ୍ଞାନ ଲାଭ କରନ୍ତି, ତାହାହେଲେ ଅଦ୍ୟ ଦିବସର ଘଟଣା ସ୍ମରଣ କରି ଆମ୍ଭମାନଙ୍କ ପରିତ୍ରାଣ ସକାଶେ ଆପଣ ସର୍ବ ପ୍ରଥମ ଏଠାକୁ ଶୁଭ-ଗମନ କରିବେ ।"

---

## ହିରଣ୍ୟ ପର୍ବତସ୍ଥ ଗୃହସମୂହ

ଏହି ସ୍ଥାନରୁ ବିଦାୟ ଗ୍ରହଣ କରି ବହୁସ୍ଥାନ ଦେଇ ସେ ପରି-ଶେଷରେ ହିରଣ୍ୟ ଦେଶରେ ଉପନୀତ ହେଲେ । ଏଠାରେ ଦଶ-ଗୋଟି ମଠ ଥିଲି ଓ ତନ୍ମଧ୍ୟରେ ଚାରି ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସନ୍ନ୍ୟାସିଗଣ ପ୍ରଧାନତଃ ହୀନଯାନ ଅଧ୍ୟୟନ କରୁଥିଲେ ଓ ସେମାନେ ସର୍ବାସ୍ତିବାଦୀ ମତାବଲମ୍ବୀ ଥିଲେ ।

ଅଳ୍ପଦିନ ପୂର୍ବେ ସୀମାନ୍ତ ପ୍ରଦେଶବର୍ତ୍ତୀ ଜଣେ ନରପତି ହିରଣ୍ୟ ନରପତିଙ୍କୁ ସିଂହାସନ ଚ୍ୟୁତ କରି, ତାହାଙ୍କ ରାଜଧାନୀକୁ ସନ୍ନ୍ୟାସି-ଗଣଙ୍କୁ ଦାନ କଲେ । ରାଜା ଏଠାରେ ଆଉ ଦୁଇଗୋଟି ମଠ ନିର୍ମାଣ କରାଇଲେ ଓ ପ୍ରତ୍ୟେକ ମଠରେ ଏକ ସହସ୍ର ଲେଖାଏଁ ସନ୍ନ୍ୟାସୀ ଅବସ୍ଥାନ କରିବା ବ୍ୟବସ୍ଥା କରିଦେଲେ । ଏହି ସ୍ଥାନରେ ଦୁଇଜଣ

ଖ୍ୟାତନାମା ସହୋଦର ବାସ କରୁଥିଲେ । ଏକ ଭ୍ରାତାଙ୍କ ନାମ ତଥାଗତ ଗୁପ୍ତ ଓ ଅପର ଭ୍ରାତାଙ୍କ ନାମ କ୍ଷାନ୍ତିସିଂହ । ଉଭୟେ ସର୍ବାସ୍ତିବାଦୀ ମତାବଲମ୍ବୀ । ଏହି ସ୍ଥାନରେ ଏକ ବର୍ଷକାଳ ଅବସ୍ଥାନ କରି ହୁଏନ୍‌ସାଂ ବିଭାଷା ନ୍ୟାୟାନୁସାର ଓ ଅନ୍ୟାନ୍ୟ ଧର୍ମଶାସ୍ତ୍ର ଅଧ୍ୟୟନ କଲେ ।

ରାଜଧାନୀର ଦକ୍ଷିଣରେ ଏକ ସ୍ତୂପ ଥିଲା । ଏହି ସ୍ଥାନରେ ପୂର୍ବ-କାଳରେ ବୁଦ୍ଧ ମାନବ ଓ ଦେବଙ୍କ ମଙ୍ଗଳାର୍ଥେ ତିନମାସ କାଳ ଧର୍ମ ପ୍ରଚାର କରିଥିଲେ । ଏହାର ସନ୍ନିକଟବର୍ତ୍ତୀ ସ୍ଥାନରେ ବୁଦ୍ଧ ଛିପ୍ର ଗତିରେ ପାଦ ଚାରଣ କରୁଥିବା ସଙ୍କେତ ବିଦ୍ୟମାନ ଥିଲା । ଏହି ଦେଶର ପଶ୍ଚିମ ସୀମାନ୍ତରେ ଗଙ୍ଗା ନଦୀର ଦକ୍ଷିଣକୁ ଏକ କ୍ଷୁଦ୍ର ପର୍ବତ ଅଛି । ଏହିଠାରେ ବୁଦ୍ଧ ତିନ ମାସକାଳ ବିଶ୍ରାମ କରିଥିଲେ ଓ ଯକ୍ଷ ବକୁଳକୁ କରଗତ କରିଥିଲେ ।

ପର୍ବତର ଦକ୍ଷିଣ-ପୂର୍ବ ପାର୍ଶ୍ୱସ୍ଥ ଶୃଙ୍ଗରେ ଏକ ପ୍ରକାଣ୍ଡ ପ୍ରସ୍ତର ଥିଲା । ତଦୁପରି ବୁଦ୍ଧ ଉପବେଶନ କରିଥିବା ସଙ୍କେତ ଅଦ୍ୟାପି ବିଦ୍ୟମାନ ଅଛି । ଉକ୍ତ ସଙ୍କେତ ଏକ ଇଞ୍ଚ ଗଭୀର, ପାଞ୍ଚଫୁଟ ଦୁଇ ଇଞ୍ଚ ଦୀର୍ଘ ଓ ଚାରି ଫୁଟ ଏକ ଇଞ୍ଚ ପ୍ରସ୍ଥବିଶିଷ୍ଟ । ଉକ୍ତ ପ୍ରସ୍ତରୋପରି ବୁଦ୍ଧ ତାହାଙ୍କ ଜଳପାତ୍ର ସ୍ଥାପନ କରିଥିବାର ଚିହ୍ନ ଅଛି । ତାହା ଏକ ଇଞ୍ଚ ଗଭୀର; ଉକ୍ତ ଚିହ୍ନ ଅଷ୍ଟ ପୁଷ୍ପଦଳ ତୁଲ୍ୟ ।

ଏହି ଦେଶର ସମସ୍ତ ଦକ୍ଷିଣାଞ୍ଚଳ ଜନଶୂନ୍ୟ ଓ ଅରଣ୍ୟମୟ । ଏଠାରେ ବୃହତ୍‌କାୟ ଅତ୍ୟନ୍ତ ହସ୍ତୀ ଥିଲେ ।

# ଚତୁର୍ଥ ଖଣ୍ଡ

## ଚମ୍ପା ଦର୍ଶନ ଓ କାମରୂପ ନରପତଙ୍କ ନିମନ୍ତ୍ରଣ

ଏହି ସ୍ଥାନରୁ ଗଙ୍ଗା ନଦୀର ଦକ୍ଷିଣ କୂଳେ କୂଳେ ଗଲେ ପୂର୍ବ ଦିଗକୁ ତିନିଶତ ଲି ଦୂରରେ ଚମ୍ପାରାଜ୍ୟ ପଡ଼େ । ଏଠାରେ ଦଶଗୋଟି ସଂଘାରାମ ଥିଲା ଓ ତନ୍ମଧ୍ୟରେ ତିନିଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେମାନେ ସମସ୍ତେ ହୀନଯାନାବଲମ୍ବୀ ।

ଚମ୍ପା ନଗର ଉଚ୍ଚ ଇଷ୍ଟକ ପ୍ରାଚୀର ଓ ଗଭୀର ପରିଖା-ପରିବେଷ୍ଟିତ ହୋଇ ସୁରକ୍ଷିତ ହୋଇଥିଲା ।

ପୂର୍ବକାଳରେ କଳ୍ପାରମ୍ଭରେ ମନୁଷ୍ୟମାନେ ଗୁହାବାସୀ ଥିଲେ । ତତ୍ପରେ ଏକ ଦେବକୁମାରୀ ସ୍ୱର୍ଗରୁ ଅବତରଣ କରି ଗଙ୍ଗାନଦୀକୂଳରେ ବିଚରଣ କରୁଁ କରୁଁ ତହିଁରେ ଅବଗାହନ କଲେ । ଗଙ୍ଗାର ଦୈବୀ-ଶକ୍ତି ପ୍ରଭାବରେ ତାହାଙ୍କ ଗର୍ଭରୁ ଚାରି ପୁତ୍ର ଜାତ ହେଲେ । ଜନନୀ ସେମାନଙ୍କ ମଧ୍ୟରେ ଜମ୍ବୁଦ୍ୱୀପକୁ ଚାରି ଭାଗରେ ବିଭକ୍ତ କରିଦେଲେ । ସେମାନେ ସ୍ୱାଧିକାରଭୁକ୍ତ ଭୂଖଣ୍ଡମାନ ଲଙ୍ଘନ କରି ଅନ୍ୟାନ୍ୟ ନଗରମାନ ନିର୍ମାଣ କଲେ । ଚମ୍ପା ନଗର ତନ୍ମଧ୍ୟରୁ ଅନ୍ୟତମ ।

ଏହି ଦେଶର ସୀମାନ୍ତରୁ ବହୁ ଯୋଜନ ଦକ୍ଷିଣରେ ବୃହତ୍ ପର୍ବତୋପରି ଦୁଇ ଶତ ଲି ପରିମିତ ନିବିଡ଼ ଅରଣ୍ୟାନୀ ବିଦ୍ୟମାନ ଥିଲା । ଏହି ଅରଣ୍ୟରେ ଦଳବଦ୍ଧ ହୋଇ ବହୁସଂଖ୍ୟକ ହସ୍ତୀ ସ୍ୱଚ୍ଛନ୍ଦରେ ବିଚରଣ କରୁଥିଲେ । ତେଣୁକରି ହିରଣ୍ୟ ଓ ଚମ୍ପାରେ ଗଜାରୋହୀ ସୈନ୍ୟ ସଂଖ୍ୟା ଖୁବ୍ ବେଶୀ । ହସ୍ତିବିଶେଷଜ୍ଞମାନେ ଘନ ଘନ ହସ୍ତୀ ଧରିବାକୁ ଯାଉଥିଲେ । ଏହି ଦେଶରେ ହସ୍ତୀ ଦ୍ୱାରା ବହନ

ଓ ଆରୋହଣ ସକାଶେ ବ୍ୟବହୃତ ହେଉଥିଲା । ହେଁଠା ବାଘ, ଗଣ୍ଡାର ଚିତାବାଘ ପ୍ରଭୃତି ହିଂସ୍ରଜନ୍ତୁ ବାସ କରୁଥିବାରୁ ଲୋକେ ସେହି ଅରଣ୍ୟ ମଧ୍ୟକୁ ଯିବାକୁ ସାହସ କରୁ ନ ଥିଲେ ।

---

## ଚମ୍ପାରେ ପ୍ରବେଶ—ଦୈବଫଳ

ଏହି ସ୍ଥାନରେ ପ୍ରଚଳିତ ଏକ କମ୍ବଦନ୍ତୀରୁ ଜଣାଯାଏ ଯେ, ବୁଦ୍ଧ ପୃଥିବୀରେ ଅବତୀର୍ଣ୍ଣ ହେବାର ବହୁ ଦିନ ପୂର୍ବେ ଏଠାରେ ଜଣେ ଗୋରକ୍ଷକ ଥିଲା । ତାହାର ଶତ ଶତ ଗୋରୁ ଥିଲେ । ଦିନେ ଉକ୍ତ ଅରଣ୍ୟ ମଧ୍ୟରେ ଯାଉଁ ଯାଉଁ ଗୋଟିଏ ଗୋରୁ ଯୂଥଭ୍ରଷ୍ଟ ହୋଇ କେଉଁ ଅଜ୍ଞାତ ସ୍ଥାନକୁ ଚାଲିଗଲା । ଅଭ୍ୟାସାନୁଯାୟୀ ସନ୍ଧ୍ୟାସମୟରେ ଉକ୍ତ ଗୋରୁ ପ୍ରତ୍ୟାବର୍ତ୍ତନପୂର୍ବକ ଦଳରେ ମିଳିତ ହେଲାରୁ ଦେଖାଗଲା ଯେ, ତାହାର ବର୍ଣ୍ଣ ଅତି ଉଜ୍ଜ୍ୱଳ, ରୂପ ଅତ୍ୟନ୍ତ ରମଣୀୟ ଓ ବୋ· ଭିନ୍ନ ପ୍ରକାର ହୋଇଅଛି । ତାହାକୁ ଦେଖି ଅନ୍ୟ ଗୋରୁମାନେ ଭୀତ ହେଲେ ଓ ତାହା ନିକଟକୁ ଆସିବାକୁ ସାହସ କଲେ ନାହିଁ । ଏହି ପ୍ରକାରେ ବହୁ ଦିବସ ଅତୀତ ହେଲା । ଗୋରକ୍ଷକ ବିସ୍ମୟାବିଷ୍ଟ ହୋଇ ଦିନେ ପ୍ରକୃତ ଘଟନା ଅବଗତ ହେବା ଅଭିପ୍ରାୟରେ ଉକ୍ତ ଗୋରୁର ଅନୁସରଣ କଲା ଓ ବହୁଦୂର ଯିବା ପରେ ଗୋରୁକୁ ଏକ ଗହ୍ୱରାଭ୍ୟନ୍ତରରେ ପ୍ରବେଶ କରୁଥିବା ଦେଖିଲା । ସେ ମଧ୍ୟ ତନ୍ମଧ୍ୟରେ ପ୍ରବିଷ୍ଟ ହେଲା ଓ ଚାରି ପାଞ୍ଚ ଲି ପଥ ଅତିକ୍ରମ କରି ସେ ଗୋଟିଏ ଉପତ୍ୟକାରେ ଆସି ପହଞ୍ଚିଲା । ହଠାତ୍ ସମସ୍ତ ବନଭୂମି ଆଲୋକରେ ଉଦ୍ଭାସିତ ହେଲା ଓ ମୁହୂର୍ତ୍ତମଧ୍ୟରେ ଏକ ରମଣୀୟ ଉଦ୍ୟାନ ଦେଖାଗଲା । ତହିଁରେ ନାନା ଜାତୀୟ ଅସଂଖ୍ୟ ପୁଷ୍ପ ପ୍ରସ୍ଫୁଟିତ ହୋଇଥିଲା । ଅଗ୍ନି-ଶିଖା ତୁଲ୍ୟ କୁସୁମମଞ୍ଜରୀ ଓ ଫଳଭାରରେ ବୃକ୍ଷସମୂହ ଆନତ ହୋଇ-ଥିଲେ । ଏପରି ଅଦୃଷ୍ଟପୂର୍ବ ଦୃଶ୍ୟ ସେ ଜୀବନରେ ଆଉ କେବେ ଦେଖି ନ ଥିଲା ।

ଗୋର୍କ୍ଷ ଯେଉଁ ବୃକ୍ଷର ନବ ପଲ୍ଲବ ଭକ୍ଷଣ କରୁଥିଲା, ସେ ବୃକ୍ଷର ପୀତବର୍ଣ୍ଣ ପଲ୍ଲବସକଳ ସୌରଭମୟ; ଏପର ବୃକ୍ଷ ଜୀବନରେ କେବେ ହେଲେ ତାଙ୍କ ଦୃଷ୍ଟିରେ ପଡ ନ ଥିଲା । ଫଳଗୁଡ଼କ ପୀତ ଓ ରକ୍ତବର୍ଣ୍ଣ ମିଶ୍ରିତ ସ୍ୱର୍ଣ୍ଣବର୍ଣ୍ଣ ତୁଲ୍ୟ, ସୌରଭମୟ ଓ ବୃହଦାକାର । ସେ ବୃକ୍ଷର ଗୋଟିଏ ଫଳ ତୋଳିଲା; କିନ୍ତୁ ହୃଦୟରେ ଲୋଭ ଜାଗ୍ରତ ହେଲେ ସୁଦ୍ଧା ତାହା ଆସ୍ୱାଦନ କରିବାକୁ ସାହସ କଲା ନାହିଁ । ଅଳ୍ପ କ୍ଷଣ ପରେ ଗୋରୁ ପୁଣି ଆଗକୁ ଚାଲିଲା ଓ ଗୋରକ୍ଷକ ପୁନଶ୍ଚ ତାହାର ଅନୁସରଣ କଲା । ଗୁହାମୁଖକୁ ଆସିବା ମାତ୍ରକେ ହଠାତ୍ ଗୋଟାଏ ରାକ୍ଷସ ତହିଁରୁ ବାହାରି ତା ହାତରୁ ଉକ୍ତ ଫଳଟି ଛଡ଼ାଇ ନେଇଗଲା । ଗୋରକ୍ଷକ ଗୃହକୁ ପ୍ରତ୍ୟାଗମନ କରି ଜଣେ ଆଚାର୍ଯ୍ୟଙ୍କୁ ଏହି ସମସ୍ତ ବିଷୟ ଜ୍ଞାପନ କଲା ଓ ଫଳର ଆକାର ବର୍ଣ୍ଣନା କଲା । ଆଚାର୍ଯ୍ୟ କହିଲେ, "ତୁମ୍ଭେ ଆଦୌ ତାହା ଭକ୍ଷଣ କରିବାକୁ ଚେଷ୍ଟା କରିବ ନାହିଁ । କୌଶଳରେ ଆଉ ଗୋଟିଏ ଫଳ ସଂଗ୍ରହ କରି ପଳାୟନ କରିବ ଓ ତାହା ମୋତେ ଆଣି ଦେବ ।"

ପର ଦିବସ ଗୋରକ୍ଷକ ପୁନର୍ବାର ଗୋରୁର ଅନୁସରଣ କରି, ଉକ୍ତ ବୃକ୍ଷ ନିକଟରେ ଉପସ୍ଥିତ ହେଲା ଓ ତହିଁର ଗୋଟିଏ ଫଳ ସଂଗ୍ରହ କରି ପଳାୟନ କରିବା ସମୟରେ ହଠାତ୍ ଉକ୍ତ ରାକ୍ଷସ ତାହା ହସ୍ତରୁ ଫଳଟି ଛଡ଼ାଇନେବା ପାଇଁ ଦେଖାଦେଲା । ଗୋରକ୍ଷକ ତତ୍‌କ୍ଷଣାତ୍ ଫଳଟି ମୁହଁ ଭିତରେ ପୂରାଇଦେଲା । ରାକ୍ଷସ ବଳପୂର୍ବକ ତାହାର ଗଳା ଚିପିଲା; କିନ୍ତୁ ସେ ଫଳଟି ଗଳାଧଃକରଣ କରି ପକାଇଲା । ଫଳଟି ଉଦରାଭ୍ୟନ୍ତରକୁ ପ୍ରବେଶ କଲାମାତ୍ରକେ ତାହାର ଶରୀର ଭୟଙ୍କର ଭାବରେ ଫୁଲିଗଲା । ସେହି ସମୟରେ କେବଳ ତାହାର ମସ୍ତକ ଗୁହାର ବହିର୍ଭାଗରେ ଥିଲା; କିନ୍ତୁ ଶରୀରର ଅବଶିଷ୍ଟାଂଶ ଗୁହା ମଧ୍ୟରେ ଥିଲା । ତେଣୁ ସେ ତହିଁରୁ ବହିର୍ଗତ ହୋଇ ପାରିଲା ନାହିଁ ।

ତତ୍ପରେ ତାହାର ଛାତ୍ରମାନେ ତାହାଙ୍କୁ ଅନ୍ୱେଷଣ କରିବାକୁ ଆସିଲେ ଓ ପରିଶେଷରେ ଗୁହାମୁଖରେ ତାହାର ଅଭୂତପୂର୍ବ ରୂପ ଦର୍ଶନ କରି ଭୀତ ହେଲେ । ସେମାନେ ତାହା ନିକଟରୁ ଅପସୃତ ହେଲାରୁ ସେ ତାହାର ଦୁର୍ଦ୍ଦଶା ବିଷୟ ବର୍ଣ୍ଣନା କରିବାକୁ ଲାଗିଲା ଓ ସେମାନେ ରାଜାଙ୍କୁ ପ୍ରତ୍ୟାବର୍ତ୍ତନ କରି ଅନ୍ୟାନ୍ୟ ଲୋକଙ୍କ ସହିତ ସେଠାକୁ ପୁନରାଗମନ କଲେ ଏବଂ ସମସ୍ତେ ମିଳିତ ହୋଇ ତାହାଙ୍କୁ ଉଦ୍ଧାର କରିବା ସକାଶେ ସେମାନଙ୍କର ସମସ୍ତ ବଳ ପ୍ରୟୋଗ କଲେ; ତଥାପି ତାହାଙ୍କୁ ଗୁହାମଧ୍ୟରୁ ଉଦ୍ଧାର କରି ପାରିଲେ ନାହିଁ । ରାଜା ଏହା ଶୁଣି ସ୍ୱୟଂ ଦେଖିବା ପାଇଁ ତାହା ନିକଟକୁ ଗମନ କଲେ ଓ ଭବିଷ୍ୟଦ୍‌ବିପଦ ଆଶଙ୍କା କରି ତାହାଙ୍କୁ ବାହାର କରିବା ସକାଶେ ଭୂମି ଖନନ କରାଇଲେ । ତଥାପି କିଛି ଫଳ ହେଲା ନାହିଁ । ଏହି ପ୍ରକାରେ ସେ ଗୁହାରେ ତାହାର ବହୁବର୍ଷ ଅତୀତ ହେଲା; କ୍ରମେ କ୍ରମେ ସେ ପାଷାଣରେ ପରିଣତ ହେଲା; କିନ୍ତୁ ତାହାର ମନୁଷ୍ୟାକାର ପରିବର୍ତ୍ତିତ ହେଲା ନାହିଁ ।

ଗୋରକ୍ଷକଙ୍କୁ ଗୋଟିଏ କୁହୁକଫଳ ପାଷାଣରେ ପରିଣତ କରିଥିବା ଜାଣି ରାଜା ମନ୍ତ୍ରୀମାନଙ୍କୁ କହିଲେ, "ଯେଉଁ ଔଷଧିଗୁଳ୍ମ-ଦ୍ୱାରା ତାହାର ଶରୀର ପରିବର୍ତ୍ତିତ ହୋଇଅଛି, ତାହାର ଶରୀରରେ ସେ ଔଷଧିର ଗୁଣ ଅଦ୍ୟାପି ବିଦ୍ୟମାନ ଥିବ ଓ ପାଷାଣରେ ପରିଣତ ହୋଇଥିଲେ ହେଁ ନିଶ୍ଚୟ ତନ୍ମଧ୍ୟରେ ଦୈବଗୁଣ ନିହିତ ଥିବ । ପାଷାଣର କିୟଦଂଶ କର୍ତ୍ତନ କରି ଆଣିବା ସକାଶେ କୁଠାର ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ସହିତ ଲୋକ ପ୍ରେରଣ କର ।" ରାଜାଙ୍କ ଆଦେଶରେ ମନ୍ତ୍ରିଗଣ ବିଶିଷ୍ଟ ଶିଳ୍ପକାରମାନଙ୍କ ସମଭିବ୍ୟାହାରରେ ସେଠାରେ ଉପସ୍ଥିତ ହେଲେ ; କିନ୍ତୁ ଦଶଦିନ କାଳ ପ୍ରସ୍ତର କର୍ତ୍ତନ କରିବାକୁ ଚେଷ୍ଟା କରି ତହିଁରୁ ଅଣୁମାତ୍ର ବିଚ୍ଛିନ୍ନ କରି ପାରିଲେ ନାହିଁ । ଉକ୍ତ ପାଷାଣ ମୂର୍ତ୍ତି ଅଦ୍ୟାପି ବିଦ୍ୟମାନ ଅଛି ।

ଏହି ସ୍ଥାନରୁ ସୁରିଶତ ଲି ପୂର୍ବ ଦିଗକୁ କଜୁଘିର ରାଜ୍ୟ ଅବସ୍ଥିତ । ଏହିଠାରେ ମଧ୍ୟ ହୁଏନ୍‌ସାଂ ପବିତ୍ର ସ୍ଥାନମାନ ପରିଦର୍ଶନ କରି ପୂଜା ଅର୍ପଣ କଲେ । ସେଠାରେ ଛଅ ସାତଟି ସଂଘାରାମ ଥିଲା ଓ ତହିଁରେ ତିନିଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ।

---

## ପୁଣ୍ଡ୍ରବର୍ଦ୍ଧନ—ଭଣ୍ଡ ସୁବର୍ଣ୍ଣ

ଏହିଠାରୁ ଛଅଶତ ଲି ପୂର୍ବରେ ଗଙ୍ଗା ନଦୀର ଅପର ପାର୍ଶ୍ୱରେ ପୁଣ୍ଡ୍ରବର୍ଦ୍ଧନ ରାଜ୍ୟ ଅବସ୍ଥିତ । ସେଠାରେ ମଧ୍ୟ ହୁଏନ୍‌ସାଂ ପୁଣ୍ୟସ୍ଥାନ-ସମୂହ ଦର୍ଶନ କଲେ । ଏଠାରେ ବାର ଗୋଟି ସଂଘାରାମ ଥିଲା ଓ ତନ୍ମଧ୍ୟରେ ତିନି ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ କେତେକ ମହାଯାନ ଓ କେତେକ ହୀନଯାନାବଲମ୍ବୀ ।

ରାଜଧାନୀର କୋଡିଏ ଲି ପଶ୍ଚିମକୁ ପୋ-ଚି-ଶ ସଂଘାରାମ । ଏଠାରେ ମନ୍ଦିରର ଚୂଡ଼ାସମୂହ ଅଗ୍ରିତ ଓ ଅତ୍ୟନ୍ତ ରମଣୀୟ । ଏହା ମଧ୍ୟରେ ସାତଶତ ସନ୍ନ୍ୟାସୀ ବାସ କରୁଥିଲେ । ଏହା ସନ୍ନିକଟରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଏହିଠାରେ ବୁଦ୍ଧ ତିନି ମାସ ଅବସ୍ଥାନ କରି ଧର୍ମଶିକ୍ଷା ପ୍ରଦାନ କରିଥିଲେ । ସ୍ତୂପରୁ ସର୍ବଦା ଉଜ୍ଜ୍ୱଳ ଆଲୋକ ନିର୍ଗତ ହେଉଥିଲା । ପୂର୍ବକାଳର ଚତୁର୍ବୁଦ୍ଧଙ୍କର ପାଦସ୍ମରଣ ଚିହ୍ନ ଏଠାରେ ବଦ୍ୟମାନ ଥିଲା ।

ଏହାର ସନ୍ନିକଟରେ ଏକ ବିହାର ଥିଲା ଓ ତନ୍ମଧ୍ୟରେ ଅବଲୋକିତେଶ୍ୱର ବୋଧିସତ୍ତ୍ୱଙ୍କ ମୂର୍ତ୍ତି ରକ୍ଷିତ ହୋଇଥିଲା । ନିଷ୍ଠାପର ଉପାସକର କାମନା ଏଠାରେ ସର୍ବଦା ପୂର୍ଣ୍ଣ ହେଉଥିଲା । ସେଠାରେ ମଧ୍ୟ ଦଶଗୋଟି ସଂଘାରାମ ଥିଲା ଓ ତହିଁରେ ତିନିଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ଏବଂ ସେମାନେ ସମସ୍ତେ ସମ୍ମତୀୟ ମତଭୁକ୍ତ ହୀନ-ଯାନ ଅଧ୍ୟୟନ କରୁଥିଲେ ।

ଏହାର ସନ୍ନିକଟରେ ଦୁଇଗୋଟି ସଂଘାରାମ ଥିଲା । ସେଠାରେ ସନ୍ନ୍ୟାସିଗଣ ଦୁଗ୍ଧ ଓ ଲବଣୀ ବ୍ୟବହାର କରୁ ନ ଥିଲେ । ଏହା ଦେବଦତ୍ତଙ୍କ ପ୍ରଦତ୍ତ ଶିକ୍ଷା ।

ରାଜଧାନୀର ସନ୍ନିକଟରେ ରକ୍ତଭିତ୍ତି ନାମରେ ଗୋଟିଏ ସଂଘାରାମ ଥିଲା । ବୁଦ୍ଧଙ୍କ ଧର୍ମ ପ୍ରଚଳନର ବହୁ ଦିବସ ପୂର୍ବେ ଏଠାକୁ ଦାକ୍ଷିଣାତ୍ୟରୁ ଜଣେ ସନ୍ନ୍ୟାସୀ ପରିଭ୍ରମଣରେ ଆସି ଧର୍ମବିରୋଧୀ ତାମ୍ରଫଳକଧାରୀ ଏକ ବ୍ୟକ୍ତିଙ୍କୁ ଶାସ୍ତ୍ରାଲୋଚନାରେ ପରାସ୍ତ କରିଥିଲେ । ଏହି ଘଟଣାର ସ୍ମାରକ ସ୍ୱରୂପ ରାଜା ଏଠାରେ ଏହି ସଂଘାରାମ ସ୍ଥାପନ କରିଥିଲେ । ଏହାର ସନ୍ନିକଟରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ବୁଦ୍ଧ ଏହିଠାରେ ସପ୍ତ ଦିବସକାଳ ଧର୍ମଶିକ୍ଷା ପ୍ରଦାନ କରିଥିଲେ ।

---

## ସମତଟ

ଏଠାରୁ ଦକ୍ଷିଣ-ପୂର୍ବ ଦିଗରେ ସମୁଦ୍ରକୂଳରେ ସମତଟ ନାମକ ଦେଶ ଅବସ୍ଥିତ । ଏହି ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟକର । ଏହିଠାରେ କୋଡ଼ିଏ ଗୋଟି ସଂଘାରାମ ଥିଲା ଓ ତହିଁରେ ତିନ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ସେମାନେ ସମସ୍ତେ ସ୍ଥବିର ସମ୍ପ୍ରଦାୟଭୁକ୍ତ । ଏଠାରେ ଅନେକ ବିଭିନ୍ନ ଦେବଦେବୀ ଉପାସକ ମଧ୍ୟ ବାସ କରୁଥିଲେ ।

ନଗରର ଅଦୂରରେ ଅଶୋକଙ୍କ ନିର୍ମିତ ଆଉ ଗୋଟିଏ ସ୍ତୂପ ଥିଲା । ଏହିଠାରେ ଦେବ ଓ ମାନବଙ୍କ ମଙ୍ଗଳାର୍ଥେ ବୁଦ୍ଧ ସପ୍ତ ଦିବସକାଳ ଧର୍ମଶିକ୍ଷା ପ୍ରଦାନ କରିଥିଲେ ।

ଏ ସ୍ଥାନର ଅଳ୍ପ ଦୂରରେ ଗୋଟିଏ ସଂଘାରାମ ଥିଲା ଓ ତହିଁରେ ବୁଦ୍ଧଙ୍କର ଆଠଫୁଟ ଉଚ୍ଚ ଏକ ରମଣୀୟ ମୂର୍ତ୍ତି ରକ୍ଷିତ ହୋଇଥିଲା ଏବଂ ଉକ୍ତ ମୂର୍ତ୍ତିରୁ ନିର୍ଗତ ସଦ୍ୟ ପ୍ରସ୍ଫୁଟିତ କୁସୁମଗନ୍ଧ ତୁଲ୍ୟ ସୌରଭରେ

ଚତୁର୍ଦ୍ଦିଗ ଆମୋଦିତ ହେଉଥିଲା । ବେଳେ ବେଳେ ତହିଁରୁ ପାଞ୍ଚ ପ୍ରକାର ଦିବ୍ୟ ଆଲୋକ ନିର୍ଗତ ହେଉଥିଲା । ଏହାର ଦର୍ଶନରେ ଅଥବା ବର୍ଣ୍ଣନା ଶ୍ରବଣରେ ହୃଦୟ ଅପୂର୍ବ ଧର୍ମଭାବରେ ଅଭିଭୂତ ହୋଇଉଠେ ।

## ଶ୍ରୀକ୍ଷେତ୍ର--କାମଲଙ୍କା

ଏହି ସ୍ଥାନରୁ ପର୍ବତ ଓ ଉପତ୍ୟକା ଲଙ୍ଘନ କରି ସମୁଦ୍ର ଉପକୂଳରେ ଉତ୍ତର-ପୂର୍ବ ଦିଗକୁ ଗଲେ 'ଶ୍ରୀକ୍ଷେତ୍ର' (ସିଲ୍‌ହଟ୍) ନାମକ ରାଜ୍ୟ ପଡ଼େ । ଏହାର ଦକ୍ଷିଣ-ପୂର୍ବ ଦିଗରେ ଏକ ଉପସାଗର କୂଳରେ 'କାମଲଙ୍କା' (କୁମିଲ୍ଲା) ଦେଶ । ଏହାର ପୂର୍ବକୁ ଦ୍ୱାରପତି (ପେଗୁ) । ଦ୍ୱାରପତିର ପୂର୍ବକୁ ଈଶାନପୁର, ଈଶାନପୁର ପୂର୍ବକୁ ମହାଚମ୍ପା (ଶ୍ୟାମ-ଦେଶ) । ମହାଚମ୍ପାର ପୂର୍ବରେ 'ଯମନ୍‌ଦ୍ୱୀପ' ଦେଶ (ଯବନ ଦେଶ) । ଏହି କ୍ଷୁଦ୍ରରାଜ୍ୟ ପର୍ବତ ଓ ଗଭୀର ସମୁଦ୍ର ପରିବେଷ୍ଟିତ । ହୁଏନ୍‌ସାଂ ଏ ସମସ୍ତ ରାଜ୍ୟକୁ ଯାଇ ନ ଥିଲେ ହେଁ ତତ୍ରତ୍ୟ ଅଧିବାସୀମାନଙ୍କ ରୀତି ନୀତି, ଆଚାର ବ୍ୟବହାର ସମ୍ବନ୍ଧରେ ଅଭିଜ୍ଞତା ଲାଭ କରି ପାରିଥିଲେ ।

ସମତଟ ଦେଶରୁ ନଅଶତ ଲି ପଶ୍ଚିମକୁ ତାମ୍ରଲିପ୍ତି । ତାମ୍ରଲିପ୍ତି ଏକ ଉପସାଗର କୂଳରେ ଅବସ୍ଥିତ । ଏଠାରେ ଦଶଗୋଟି ସଂଘାରାମ ଥିଲା ଓ ତହିଁରେ ଏକ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ହୁଏନ୍‌ସାଂ ଏହି ସ୍ଥାନରେ ଉପସ୍ଥିତ ହୋଇ ନଗର ସନ୍ନିକଟରେ ଅଶୋକଙ୍କ ନିର୍ମିତ ଦୁଇଶତ ଫୁଟ ଉଚ୍ଚ ଏକ ସ୍ତୂପ ଦେଖିଲେ । ଏହାର ସନ୍ନିକଟରେ ପୂର୍ବତନ ଚତୁର୍ବୁଦ୍ଧ ପାଦଚାରଣ କରୁଥିବା ଚିହ୍ନ ବିଦ୍ୟମାନ ଥିଲା ।

ଏହି ସମୟରେ ହୁଏନ୍‌ସାଂ ଶୁଣିଲେ, ସମୁଦ୍ର ପରିବେଷ୍ଟିତ ସିଂହଳ ନାମକ ଏକ ଦେଶ ଅଛି ଓ ସେଠାରେ ସ୍ଥବିରସମ୍ପ୍ରଦାୟଭୁକ୍ତ ବହୁସଂଖ୍ୟକ ସନ୍ନ୍ୟାସୀ ଓ ଯୋଗଶାସ୍ତ୍ର-ବିଶାରଦ ପଣ୍ଡିତ ବାସ କରନ୍ତି । ସମୁଦ୍ର ମାର୍ଗରେ ସପ୍ତଶତ ଯୋଜନ ପରିକ୍ରମ କଲେ ସିଂହଳରେ ଉପନୀତ ହେବା ସମ୍ଭବପର ।

## ସିଂହଳ—ଉଡ୍ରଦେଶ

ଦାକ୍ଷିଣାତ୍ୟର ଏକ ସନ୍ନ୍ୟାସୀଙ୍କ ନିକଟରେ ସିଂହଳ ବିଷୟରେ ଅନୁସନ୍ଧାନ କଲାରୁ ସେ କହିଲେ, "ସିଂହଳକୁ ଯାଇଥିବା ଜଳପଥ ଅତ୍ୟନ୍ତ ବିପଦସଙ୍କୁଳ । ସମୁଦ୍ର ମଧ୍ୟରୁ ଉତ୍‌ଥିତ ଝଞ୍ଜିକା ଓ ଉତ୍ତାଳ ତରଙ୍ଗସମୂହର ଉପଦ୍ରବରେ ଜୀବନ ସଙ୍କଟାପନ୍ନ ହୋଇ ଉଠେ । ଏତେଦୂର ଜଳପଥରେ ନ ଯାଇ ଦାକ୍ଷିଣାତ୍ୟର ଦକ୍ଷିଣ-ପୂର୍ବ ଦିଗସ୍ଥ ସ୍ଥାନରୁ ଜଳପଥରେ ଗଲେ ତିନି ଦିନରେ ସିଂହଳରେ ପହଞ୍ଚିବାକୁ ହୁଏ । ଆପଣ ସମୁଦ୍ର ଉପକୂଳରୁ ପାର୍ବତ୍ୟ ମାର୍ଗରେ ଗମନ କଲେ ସୁଦ୍ଧା ଆପଣଙ୍କ ଯାତ୍ରା ନିରାପଦ । ପୁଣି ଆପଣ ଉଡ୍ରଦେଶ (ଓଡ଼ିଶା) ଓ ଅନ୍ୟାନ୍ୟ ପବିତ୍ର ସ୍ଥାନମାନ ମାର୍ଗରେ ଦର୍ଶନ କରି ପାରିବେ ।"

ଏହି ସ୍ଥାନରୁ ହୁଏନ୍‌ସାଂ ଦକ୍ଷିଣ-ପଶ୍ଚିମ ମାର୍ଗରେ ଉଡ୍ରଦେଶ ଅଭିମୁଖରେ ଯାତ୍ରା କଲେ । ଉଡ୍ରଦେଶରେ ଏକ ସହସ୍ର ସଂଘାରାମ ଥିଲା ଏବଂ ତହିଁରେ ଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରି ମହାଯାନ ଅଧ୍ୟୟନ କରୁଥିଲେ । କେତେକ ବିଭିନ୍ନ ସମ୍ପ୍ରଦାୟଭୁକ୍ତ ଧର୍ମ-ବିରୋଧୀ ବ୍ୟକ୍ତି ସମବେତ ହୋଇ ଦେବୀଶକ୍ତି ଉପାସନା କରୁଥିଲେ । ସେଠାରେ ଅଶୋକଙ୍କ ନିର୍ମିତ ଦେବୀଶକ୍ତିସମ୍ପନ୍ନ ଦଶଗୋଟି ସ୍ତୂପ ଥିଲା ।

ଉଡ୍ର ଦେଶର ଦକ୍ଷିଣ-ପୂର୍ବ ସୀମାନ୍ତ ସମୁଦ୍ର ଉପକୂଳରେ ଚରିତ୍ର (ଚ-ଲି-ତ-ଲୋ) ନାମକ ଏକ ନଗର ଥିଲା । ଏହା ଏକ ପ୍ରଧାନ ବାଣିଜ୍ୟ ସ୍ଥଳ । ଉଡ୍ର ଦେଶର ବଣିକମାନେ ଏହି ସ୍ଥାନରୁ ବାଣିଜ୍ୟ ସକାଶେ ସମୁଦ୍ରପଥରେ ଯାତ୍ରା କରିବା ନିମିତ୍ତ ସମବେତ ହେଉଥିଲେ । ଅନ୍ୟାନ୍ୟ ଦେଶାଗତ ବଣିକଗଣ ସୁଦ୍ଧା ସମବେତ ହୋଇ ଏହି ସ୍ଥାନରୁ ବିଭିନ୍ନ ଅଞ୍ଚଳକୁ ଯାତ୍ରା କରୁଥିଲେ ।

ସିଂହଳ ଏହି ସ୍ଥାନରୁ ବିଂଶ ସହସ୍ର ଲି ଦୂରରେ ଅବସ୍ଥିତ । ମେଘାବରଣବିମୁକ୍ତ ରଜନୀରେ ବୁଦ୍ଧ-ଦନ୍ତ-ସ୍ତୂପାଗ୍ରରେ ସନ୍ନିବିଷ୍ଟ ବହୁମୂଲ୍ୟ ରତ୍ନମାନଙ୍କରୁ ସମୁଜ୍ଜ୍ୱଳ କିରଣ ନିର୍ଗତ ହୋଇ, ଏହି ସ୍ଥାନରୁ ଶୂନ୍ୟରେ ଉଜ୍ଜ୍ୱଳ ତାରକା ତୁଲ୍ୟ ସ୍ପଷ୍ଟଭାବରେ ଦୃଷ୍ଟିଗୋଚର ହେଉଥିଲା ।

---

## ଗଞ୍ଜାମ—କଳିଙ୍ଗ—ଦକ୍ଷିଣକୋଶଳ

ଏହି ସ୍ଥାନରୁ ଦୁଇଶତ ଲି ଦକ୍ଷିଣ-ପଶ୍ଚିମକୁ ନିବିଡ଼ ଅରଣ୍ୟ ପାରି ହେଲେ କଙ୍ଗୋଦ ରାଜ୍ୟ (ଗଞ୍ଜାମ) । କଙ୍ଗୋଦରୁ ଚତୁର୍ଦ୍ଦଶ ବା ପଞ୍ଚଦଶ ଶତ ଲି ଦକ୍ଷିଣ-ପଶ୍ଚିମକୁ ପୁଣି ନିବିଡ଼ ଅରଣ୍ୟ ଅତିକ୍ରମ କଲେ କଳିଙ୍ଗ ଦେଶ । ଏହିଠାରେ ଦଶଗୋଟି ସଂଘାରାମ ଥିଲା ଓ ସେହିଁରେ ପଞ୍ଚଶତ ସନ୍ନ୍ୟାସୀ ଅବସ୍ଥାନ କରି ସ୍ଥବିର ମତାନୁସାରେ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ପୂର୍ବରେ ଏହି ଦେଶ ଅତ୍ୟନ୍ତ ଜନାକୀର୍ଣ୍ଣ ଥିଲା; କିନ୍ତୁ ପଞ୍ଚ ଦୈବଶକ୍ତି-ସମ୍ପନ୍ନ ଜନୈକ ଋଷିଙ୍କ ଅଭିଶାପରେ ଦେଶ ଛାରଖାର ହୋଇଗଲା ଓ ଆବାଳବୃଦ୍ଧବନିତା ସମସ୍ତ ଅଧିବାସୀ ମୃତ୍ୟୁମୁଖରେ ପତିତ ହେଲେ । ପରେ ଅନ୍ୟଦେଶରୁ ଲୋକେ ଆସି ଏଠାରେ ବସତି କଲେ; କିନ୍ତୁ ପୂର୍ବ ପରି ଏହା ଆଉ ସେତେ ଜନାକୀର୍ଣ୍ଣ ନୁହେଁ ।

ଏହିଠାରୁ ଅଷ୍ଟାଦଶ ଲି ଉତ୍ତର-ପଶ୍ଚିମରେ ଦକ୍ଷିଣକୋଶଳ ଅବସ୍ଥିତ । ଦକ୍ଷିଣକୋଶଳ ନରପତି କ୍ଷତ୍ରିୟବଂଶଜ । ସେ ବୌଦ୍ଧ ଧର୍ମଶାସ୍ତ୍ରକୁ ସମ୍ମାନ କରୁଥିଲେ ଓ ବିଦ୍ୟା ଏବଂ ଶିଳ୍ପର ଏକ ପ୍ରଧାନ ପୃଷ୍ଠପୋଷକ ଥିଲେ । ଏଠାରେ ଏକଶତ ସଂଘାରାମ ଥିଲା ଓ ସେହିଁରେ ଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏଠାରେ ବହୁସଂଖ୍ୟକ ଧର୍ମବିରୋଧୀ ମଧ୍ୟ ଥିଲେ ଓ ଅନେକ ଦେବମନ୍ଦିର ମଧ୍ୟ ଥିଲା ।

ଅନତିଦୂରରେ ଦକ୍ଷିଣ ଦିଗକୁ ଏକ ପ୍ରାଚୀନ ସଂଘାରାମ ଓ ତତ୍‌ସମୀପରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏଠାରେ ଅଦ୍ଭୁତ ଧର୍ମବିଷୟ ପରିବର୍ତ୍ତନ ପ୍ରଦର୍ଶନ କରିଥିଲେ ଓ ଧର୍ମବିରୋଧୀଙ୍କୁ ପରାସ୍ତ କରିଥିଲେ । ଏହା ଉତ୍ତାରେ ନାଗାର୍ଜ୍ଜୁନ ବୋଧିସତ୍ତ୍ୱ ଆସି ଏଠାରେ ଅବସ୍ଥାନ କଲେ । ଏହି ସମୟରେ ସଦ୍‌ବାହୁ ନାମକ ନରପତି ରାଜତ୍ୱ କରୁଥିଲେ । ସେ ନାଗାର୍ଜ୍ଜୁନଙ୍କୁ ଅତ୍ୟନ୍ତ ସମ୍ମାନ କରୁଥିଲେ ଓ ତାହାଙ୍କର ସମସ୍ତ ଅଭାବ ମୋଚନ କରୁଥିଲେ ।

---

## ଦେବ ବୋଧିସତ୍ତ୍ୱ

ଦେବ ବୋଧିସତ୍ତ୍ୱ ଧର୍ମଶାସ୍ତ୍ର ବିଷୟକ କେତେକ ସନ୍ଦେହ ମୋଚନାର୍ଥେ ସିଂହଳରୁ ଏଠାକୁ ଆଗମନ କରିଥିଲେ । ଆଶ୍ରମର ଦ୍ୱାରଦେଶରେ ଉପସ୍ଥିତ ହୋଇ ସେ ଭିତରକୁ ପ୍ରବେଶ କରିବା ସକାଶେ ଅନୁମତି ପ୍ରାର୍ଥନା କଲେ । ଦ୍ୱାରରକ୍ଷକ ନାଗାର୍ଜ୍ଜୁନଙ୍କୁ ତାହାଙ୍କ ଆଗମନବାର୍ତ୍ତା ପ୍ରଦାନ କଲା । ନାଗାର୍ଜ୍ଜୁନ ତାହାଙ୍କ ନାମ ପୂର୍ବରୁ ଅବଗତ ହୋଇଥିଲେ । ସେ ଗୋଟିଏ ଥାଳିରେ ଜଳ ପୂର୍ଣ୍ଣ କରି ଜଣେ ଶିଷ୍ୟଙ୍କୁ ତାହାଙ୍କୁ ଦେଖାଇବା ପାଇଁ ଆଦେଶ କଲେ । ଦେବ ବୋଧିସତ୍ତ୍ୱ ଉକ୍ତ ଜଳ ପ୍ରତି ଦୃଷ୍ଟିପାତ କରି ତହିଁରେ ଏକ ସୂଚୀ ନିକ୍ଷେପ କଲେ । ଶିଷ୍ୟ ନାଗାର୍ଜ୍ଜୁନଙ୍କ ନିକଟକୁ ତାହା ନେଇଗଲା । ନାଗାର୍ଜ୍ଜୁନ ତାହା ଦର୍ଶନ କରି ଆନନ୍ଦ-ଗଦ୍‌ଗଦ ହୃଦୟରେ କହିଲେ, "ଏହି ନିର୍ମଳ ଜଳ ମୋହର ଗୁଣସୂଚକ; ଯେଉଁ ବ୍ୟକ୍ତି ଏଥିରେ ସୂଚୀ ନିକ୍ଷେପ କରିଅଛନ୍ତି, ତାଙ୍କର ଏଠାକୁ ଆଗମନର ଉଦ୍ଦେଶ୍ୟ ଏହି ଯେ, ତାହା ପୁଙ୍ଖାନୁପୁଙ୍ଖ ଭାବରେ ପରୀକ୍ଷା କରିବେ । ତାହା ହେଲେ ମୁଁ ତାହାଙ୍କ ସହିତ ଧର୍ମଶାସ୍ତ୍ରର ନିଗୂଢ଼ ତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିବି ଓ ସେ ତହିଁର ଆଲୋକ ଚତୁର୍ଦ୍ଦିଗରେ ବିକିରଣ କରିବେ ।" ତତ୍ପରେ ତାଙ୍କ

ଶୀଘ୍ର ତାଙ୍କ ସମକ୍ଷକୁ ଆଣିବା ପାଇଁ ଶିଷ୍ୟଙ୍କୁ ଆଦେଶ କଲେ । ସେ ଆଗମନ କଲାରୁ ତାଙ୍କୁ ଆସନ ପ୍ରଦାନ କଲେ ଓ ଜଳରେ ମତ୍ସ୍ୟର ଅବସ୍ଥାନ ତୁଲ୍ୟ ମଧୁର ବାକ୍ୟାଳାପରେ ପ୍ରବୃତ୍ତ ହେଲେ । ତହୁଁରେ ନାଗାର୍ଜୁନ କହିଲେ, "ମୁଁ ବର୍ତ୍ତମାନ ବୃଦ୍ଧ ଓ ଜରାଗ୍ରସ୍ତ ହୋଇଅଛି । ତୁମ୍ଭ ହୃଦୟରେ ବିଶୁଦ୍ଧ ଜ୍ଞାନାଲୋକ କି ନିହିତ ଅଛି ? ତୁମ୍ଭେ ମୋ ସ୍ଥାନ ଗ୍ରହଣ କରିବ ପାରିବ କି ?" ଦେବ ବୋଧିସତ୍ତ୍ୱ ଦଣ୍ଡାୟମାନ ହେଲେ ଓ ଭକ୍ତିପୁରଃସର ତାହାଙ୍କ ପଦତଳରେ ପ୍ରଣତ ହୋଇ ଉତ୍ତର କଲେ, "ଆପଣଙ୍କର ଏହି ଭୃତ୍ୟ ସାମାନ୍ୟ ଯୋଗ୍ୟତାସମ୍ପନ୍ନ ହେଲେ ହେଁ ଆପଣଙ୍କ ସ୍ନେହମୟ ଉପଦେଶାବଳୀ ବିତରଣ କରିବା ସକାଶେ ସାହସୀ ହେବ ।"

ଏଠାରେ ଇନ୍-ମିଂ (ହେତୁ ବିଦ୍ୟା) ନାମକ ଶାସ୍ତ୍ର ବ୍ୟାଖ୍ୟାନରେ ପାରଦର୍ଶୀ ଏକ ବ୍ରାହ୍ମଣ ବାସ କରୁଥିଲେ । ହୁଏନ୍‌ସାଂ ତାହାଙ୍କ ନିକଟରେ ସା-ଲ୍ୟାଂ-ଲୁନ୍ ଶାସ୍ତ୍ର ଅଧ୍ୟୟନ କରି ଏକମାସ କାଳ ଅତିବାହିତ କଲେ ।

---

## ଅନ୍ଧ୍ରଦେଶ

ଏହିଠାରୁ ଏକ ବୃହତ୍ ଅରଣ୍ୟ ପଥରେ ଦକ୍ଷିଣକୁ ନଅଶତ ଲି ପଥ ଅତିକ୍ରମ କରି ସେ ଆନ୍ଧ୍ର ଦେଶରେ ଉପନୀତ ହେଲେ । ରାଜଧାନୀର ସନ୍ନିକଟରେ ଏକ ସଂଘାରାମ ଥିଲା । ଗୃହନିର୍ମାଣରେ ବ୍ୟବହୃତ ବିଚିତ୍ର କାରୁକାର୍ଯ୍ୟମୟ କାଷ୍ଠ, ବର୍ତ୍ତୀର୍ଣ୍ଣ ପ୍ରାଙ୍ଗଣ ଓ ଅନ୍ୟାନ୍ୟ ସାମଗ୍ରୀରେ ସଂଘାରାମ ଅପୂର୍ବ ଶୋଭା ଧାରଣ କରିଥିଲା । ତତ୍ ସମ୍ମୁଖରେ ଆର୍ହତ ଅଚଳଙ୍କଦ୍ୱାରା ନିର୍ମିତ ଗୋଟିଏ ଅଦ୍ଭୁତ ପ୍ରସ୍ତର ସ୍ତୁପ ବିଦ୍ୟମାନ ଥିଲା ।

ସଂଘାରାମର କୋଡ଼ିଏ ଲି ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ପର୍ବତୋପରି ଆଉ ଗୋଟିଏ ସ୍ତୂପ ଥିଲା । ଏହି ସ୍ଥାନରେ ବୋଧିସତ୍ତ୍ୱ ଜିନ୍ ଇନ୍‌ମିଂ (ହେତୁ ବିଦ୍ୟା) ଶାସ୍ତ୍ର ପ୍ରଣୟନ କରିଥିଲେ ।

---

## ଧନ କଟକ

ଦକ୍ଷିଣକୁ ଏକ ସହସ୍ର ଲି ପଥ ଅତିକ୍ରମ କରି ହୁଏନ୍‌ସାଂ ଧନକଟକ ରାଜ୍ୟରେ ଉପନୀତ ହେଲେ । ରାଜଧାନୀର ପୂର୍ବପାର୍ଶ୍ୱସ୍ଥ ପର୍ବତର ସାନୁଦେଶରେ ପୂର୍ବଶିଳା ନାମରେ ଏକ ସଂଘାରାମ ଥିଲା ଓ ଏହାର ପଶ୍ଚିମ ପାର୍ଶ୍ୱରେ ଅବରଶିଳା ନାମରେ ଆଉ ଗୋଟିଏ ସଂଘାରାମ ଥିଲା । ଏହି ରାଜ୍ୟର ଏକ ପୂର୍ବତନ ନରପତି ବୁଦ୍ଧଙ୍କ ଉଦ୍ଦେଶ୍ୟରେ ଏହି ସଂଘାରାମଦ୍ୱୟ ସ୍ଥାପନ କରିଥିଲେ । ସେ ଏହି ପ୍ରକାର ବୃହତ୍ ନିର୍ମାଣପ୍ରଣାଳୀ ସମ୍ପୂର୍ଣ୍ଣରୂପେ ଅବଗତ ହୋଇଥିଲେ । ଏତତ୍ପାର୍ଶ୍ୱବର୍ତ୍ତୀ ରମଣୀୟ ଅରଣ୍ୟାନୀ, ମନୋମୁଗ୍ଧକର ପ୍ରସ୍ରବଣ ଓ ରକ୍ଷାକାରୀ ଦେବତାଗଣଙ୍କ ଯୋଗୁ ଜ୍ଞାନୀ ସନ୍ନ୍ୟାସିଗଣ ଏଠାରେ ଅବସ୍ଥାନ କରୁଥିଲେ । ବୁଦ୍ଧଙ୍କ ନିର୍ବାଣପ୍ରାପ୍ତିର ଏକ ସହସ୍ର ବର୍ଷର ମଧ୍ୟଭାଗରେ ଧର୍ମଲାଭ-ପ୍ରଣୋଦିତ ଗୃହସ୍ଥ ଓ ସନ୍ନ୍ୟାସିଗଣ ଏହିଠାରେ ବିଶ୍ରାମ ଗ୍ରହଣ କରୁଥିଲେ ଓ ବିଶ୍ରାମକାଳ ଅତୀତ ହେଲା ଉତ୍ତାରେ ସେମାନଙ୍କ ମଧ୍ୟରୁ ଯେଉଁମାନେ ଅର୍ହ-ତତ୍ତ୍ୱ ପ୍ରାପ୍ତ ହେଉଥିଲେ, ସେମାନେ ଶୂନ୍ୟମାର୍ଗରେ ଚାଲି ଯାଉଥିଲେ । ଏକ ସହସ୍ର ବର୍ଷ ଅତୀତ ହେଲାପରେ ଗୃହସ୍ଥ ଓ ସନ୍ନ୍ୟାସିଗଣ ଏଠାରେ ଏକତ୍ର ବାସକଲେ । ଏକଶତ ବର୍ଷ ହେଲା ପର୍ବତ-ଦେବତା ଭିନ୍ନ ଭିନ୍ନ ରୂପ ଧାରଣ କରି ଭ୍ରମଣକାରୀଙ୍କର ଉପଦ୍ରବ କରୁଥିଲା ଓ ସନ୍ନ୍ୟାସିଗଣ ଭୟରେ ସେହି ସ୍ଥାନକୁ ପରିତ୍ୟାଗ କରିଥିଲେ; ସୁତରାଂ ଏବେ ସେ ସ୍ଥାନ ନିର୍ଜନ ମରୁଭୂମିରେ ପରିଣତ ହୋଇଅଛି ।

ରାଜଧାନୀର ଅନତିଦୂରରେ ଦକ୍ଷିଣକୁ ଏକ ପ୍ରସ୍ତରମୟ ପର୍ବତ ଥିଲା । ମୈତ୍ରେୟ ବୋଧିସତ୍ତ୍ୱ କେବେ ପୂର୍ଣ୍ଣଜ୍ଞାନ ପ୍ରାପ୍ତ ହୋଇ ତାହାଙ୍କ ସନ୍ଦେହ ମୋଚନ କରିବେ, ଏଥିପାଇଁ ସେହି କାଳ ପ୍ରତୀକ୍ଷାରେ ଶାସ୍ତ୍ରବିଶାରଦ ଭବବିବେକ ଏହିଠାରେ ଅବସ୍ଥାନ କରୁଥିଲେ ।

---

## ଭୁବଷବେଜ

ଏହି ସ୍ଥାନରେ ଅବସ୍ଥାନ କାଳରେ ହୁଏନ୍‌ସାଂ ସଭୂତି ଓ ସୂର୍ଯ୍ୟ ନାମକ ଦୁଇଜଣ ଆଚାର୍ଯ୍ୟଙ୍କ ଦର୍ଶନ ଲାଭ କରିଥିଲେ । ଉଭୟେ ମହା ସଂଘିକା ମତାନୁଯାୟୀ ତ୍ରିପିଟକ ବ୍ୟାଖ୍ୟାନରେ ପାରଦର୍ଶୀ ଥିଲେ; ତେଣୁ ଏଠାରେ ସେ ଉପର୍ଯ୍ୟୁକ୍ତ ମତାନୁଯାୟୀ ମୂଳାଭିଧର୍ମ ଓ ଅନ୍ୟାନ୍ୟ ଶାସ୍ତ୍ର ଅଧ୍ୟୟନ କରି ବହୁମାସ ଯାପନ କଲେ । ସେମାନେ ମଧ୍ୟ ତାହାଙ୍କଠାରୁ ମହାଯାନାନ୍ତର୍ଗତ ବିଭିନ୍ନ ଶାସ୍ତ୍ର ସମ୍ବନ୍ଧରେ ଉପଦେଶ ଗ୍ରହଣ କଲେ । ଏହି ପ୍ରକାରେ ସେମାନେ ପରସ୍ପର ମଧ୍ୟରେ ସୌହାର୍ଦ୍ଦ ସ୍ଥାପନ କଲେ ଓ ଭିନ୍ନ ଭିନ୍ନ ପବିତ୍ର କ୍ଷେତ୍ର ଦର୍ଶନ କରିବା ସକାଶେ ଏକତ୍ର ଗମନ କଲେ ।

ଏହି ସ୍ଥାନରୁ ଏକ ସହସ୍ର କି ଦକ୍ଷିଣକୁ ଯାଇ ହୁଏନ୍‌ସାଂ(ସ୍ତେଲ) ରାଜ୍ୟରେ ଉପସ୍ଥିତ ହେଲେ । ରାଜଧାନୀର ଦକ୍ଷିଣ-ପୂର୍ବ ପାର୍ଶ୍ୱରେ ଅଶୋକନିର୍ମିତ ଏକ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ଅତ୍ୟଦ୍ଭୁତ ଆଧ୍ୟାତ୍ମିକ ଶକ୍ତି ପ୍ରଦର୍ଶନ କରିଥିଲେ ଓ ଧର୍ମ ବିରୋଧୀ-ମାନଙ୍କୁ ପରାସ୍ତ କରି ଦେବ ଓ ମାନବଙ୍କ ମଙ୍ଗଳାର୍ଥେ ଧର୍ମପ୍ରଚାର କରିଥିଲେ ।

ରାଜଧାନୀର ପଶ୍ଚିମରେ ଏକ ପ୍ରାଚୀନ ସଂଘାରାମ ଥିଲା । ଦେବ ବୋଧିସତ୍ତ୍ୱ ଏଠାରେ ଆର୍ହତ ଉତ୍ତରଙ୍କ ସହିତ ଶାସ୍ତ୍ରାଲୋଚନା କରି-

ଥିଲେ । ସପ୍ତମ ପ୍ରଶ୍ନମାଳା ଉତ୍ତାରେ ଆର୍ହତ କୌଣସି ପ୍ରଶ୍ନର ଉତ୍ତର ପ୍ରଦାନ କରି ପାରିଲେ ନାହିଁ; କିନ୍ତୁ ତାହାଙ୍କ ଅଲୌକିକ ଶକ୍ତି ପ୍ରଭାବରେ ସେ ତୁଷିତ ସ୍ୱର୍ଗକୁ ଗମନ କରି ମୈତ୍ରେୟ ବୋଧିସତ୍ତ୍ୱଙ୍କୁ ଉକ୍ତ ପ୍ରଶ୍ନସମୂହର ଉତ୍ତର ଜିଜ୍ଞାସା କଲେ । ବୋଧିସତ୍ତ୍ୱ ତାଙ୍କର ସମସ୍ତ ସଂଶୟ ମୋଚନ କଲେ ଏବଂ ତାହାଙ୍କୁ ସମ୍ବୋଧନ କରି କହିଲେ, "ଦେବ ବୋଧିସତ୍ତ୍ୱ ବହୁକାଳର ସଞ୍ଚିତ ପୁଣ୍ୟପ୍ରଭାବରେ ଭଦ୍ରକଳ୍ପ ମଧ୍ୟରେ ପୂର୍ଣ୍ଣଜ୍ଞାନ ପ୍ରାପ୍ତ ହେବେ । ତୁମ୍ଭେ ତାହାଙ୍କୁ ହତାଦର କରିବ ନାହିଁ ।" ତତ୍ପରେ ଉକ୍ତ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରି ତାହାଙ୍କ ପ୍ରଶ୍ନର ଉତ୍ତର ପ୍ରଦାନ କଲେ । ତାହା ଶ୍ରବଣ କରି ଦେବ କହିଲେ, "ଏହା ମୈତ୍ରେୟ ବୋଧିସତ୍ତ୍ୱଙ୍କ ଉତ୍ତର, ତୁମ୍ଭର ନୁହେଁ । ତୁମ୍ଭେ ଏହା ତାହାଙ୍କଠାରୁ ପ୍ରାପ୍ତ ହୋଇଅଛ ।" ଆର୍ହତ ଲଜ୍ଜିତ ହୋଇ ସ୍ୱୀୟ ଅପକୃଷ୍ଟତା ସ୍ୱୀକାର କରି, ତାହାଙ୍କୁ ପ୍ରଣାମପୂର୍ବକ ସେଠାରୁ ପ୍ରସ୍ଥାନ କଲେ ।

---

## ଦ୍ରାବିଡ଼-କାଞ୍ଚିପୁର

ନିବିଡ଼ ଅରଣ୍ୟ ମଧ୍ୟରେ ପଞ୍ଚଦଶ ବା ଷୋଡ଼ଶ ଶତ ଲି ଦକ୍ଷିଣକୁ ଗମନ କରି ହୁଏନ୍‌ସାଂ ଦ୍ରାବିଡ ଦେଶରେ ଉପସ୍ଥିତ ହେଲେ । କାଞ୍ଚିପୁର ଦ୍ରାବିଡ଼ ଦେଶର ରାଜଧାନୀ ଓ ଧର୍ମପାଳ ବୋଧିସତ୍ତ୍ୱଙ୍କ ଜନ୍ମ ସ୍ଥାନ । ସେ ଏହି ରାଜ୍ୟର ପ୍ରଧାନ ଅମାତ୍ୟଙ୍କ ପୁତ୍ର ଥିଲେ ଓ ବାଲ୍ୟ-କାଳରେ ଅଦ୍ଭୁତ ଜ୍ଞାନର ପରିଚୟ ପ୍ରଦାନ କରିଥିଲେ । ଯୌବନରେ ପଦାର୍ପଣ କଲାରୁ ତାହାଙ୍କ ଗୁଣରେ ମୁଗ୍ଧ ହୋଇ ରାଜା ତାହାଙ୍କୁ ଏକ ରାଜକୁମାରୀଙ୍କ ସହିତ ପରିଣୟସୂତ୍ରରେ ଆବଦ୍ଧ କରିବାକୁ ଇଚ୍ଛା କଲେ । ବୋଧିସତ୍ତ୍ୱ ବହୁକାଳ ଇନ୍ଦ୍ରିୟସଂଯମ ଶିକ୍ଷାକରି ଭୋଗବିଳାସ

ବାସନା ପରିତ୍ୟାଗ କରିଥିଲେ । ବିବାହର ପୂର୍ବ ସନ୍ଧ୍ୟାରେ ସେ ଦୁଃଖ ଓ ନୈରାଶ୍ୟରେ ଅଭିଭୂତ ହୋଇ ବୁଦ୍ଧଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ ହେଲେ ଓ ଯୁକ୍ତପୂର୍ବକ ସର୍ବାନ୍ତଃକରଣରେ ଉକ୍ତ ବିପଦରୁ ତାହାଙ୍କୁ ଉଦ୍ଧାର କରିବା ସକାଶେ ପ୍ରାର୍ଥନା କଲେ । ତତ୍ପରେ ବେତାଳରାଜ ତାହାଙ୍କୁ ରାଜଧାନୀରୁ ବହୁଦୂରବର୍ତ୍ତୀ ଏକ ପର୍ବତସ୍ଥିତ ବୌଦ୍ଧମଠରେ ନିକ୍ଷେପ କଲେ । ଉକ୍ତ ମଠସ୍ଥ ସନ୍ନ୍ୟାସିଗଣ ତାଙ୍କୁ ତସ୍କର ବୋଲି ଭାବିଥିଲେ; କିନ୍ତୁ ବୋଧିସତ୍ତ୍ୱ ଉକ୍ତ ଘଟନାବଳୀ ବର୍ଣ୍ଣନା କଲାରୁ ସେମାନେ ବିସ୍ମୟାବିଷ୍ଟ ହୃଦୟରେ ତାହାଙ୍କ ଦୃଢ-ସଙ୍କଳ୍ପର ଭୂୟସୀ ପ୍ରଶଂସା କଲେ । ଏହିଠାରେ ସେ ସନ୍ନ୍ୟାସ ଧର୍ମ ଗ୍ରହଣ କଲେ ଏବଂ ପ୍ରକୃତ ତତ୍ତ୍ୱଜ୍ଞାନ ଲାଭ କରିବା ସକାଶେ ତାହାଙ୍କର ସମସ୍ତ ଶକ୍ତି ନିୟୋଜିତ କଲେ । ଫଳତଃ ସେ ସର୍ବଶାସ୍ତ୍ରନିହିତ ତତ୍ତ୍ୱ-ସମୂହ ଅନାୟାସରେ ହୃଦୟଙ୍ଗମ କରି, ଧର୍ମଗ୍ରନ୍ଥ ପ୍ରଣୟନରେ ପ୍ରବୃତ୍ତ ହେଲେ । ସେ ପଞ୍ଚବିଂଶ ସହସ୍ର ଶ୍ଳୋକସମ୍ବଳିତ ଶବ୍ଦ-ବିଦ୍ୟା ସଂଯୁକ୍ତ ଶାସ୍ତ୍ର, ତନ୍ତ୍ରଶାସ୍ତ୍ର, ବୈପୁଲ୍ୟ ଓ ବିଦ୍ୟାମାତ୍ରସିଦ୍ଧି, ନ୍ୟାୟଦ୍ୱାର-ତାରକ ଶାସ୍ତ୍ରର ଭାଷ୍ୟ ଓ ଅନ୍ୟାନ୍ୟ ବହୁସଂଖ୍ୟକ ଗ୍ରନ୍ଥ ପ୍ରଣୟନ କଲେ । ଉକ୍ତ ଗ୍ରନ୍ଥସମୂହ ତାହାଙ୍କ ଅସାଧାରଣ ମେଧା ଓ ବିଶୁଦ୍ଧ ଜୀବନର ପରିଚୟ ପ୍ରଦାନ କରୁଅଛି । ସେ ତାହାଙ୍କ ଆତ୍ମଜୀବନ ଚରିତ ମଧ୍ୟ ରଚନା କରିଥିଲେ ।

କାଞ୍ଚିପୁର ଦାକ୍ଷିଣାତ୍ୟର ସମୁଦ୍ର ଉପକୂଳରେ ଅବସ୍ଥିତ । ଏହି-ଠାରୁ ସିଂହଳ ତିନି ଦିନର ଜଳପଥ ।

---

## ମାଲକୂଟ—ସିଂହଳର ଅଗ୍ରଯାତ୍ରୀଗଣ

ହୁଏନ୍‌ସାଂ ଏହି ରାଜ୍ୟ ତ୍ୟାଗ କରିବା ପୂର୍ବେ ସିଂହଳ ନରପତି ମାନଙ୍କଲୀଳା ସମ୍ବରଣ କରିଥିଲେ । ସେହି ସମୟରେ ରାଜ୍ୟ ଦୁର୍ଭିକ୍ଷ

ପ୍ରପୀଡ଼ିତ ହୋଇ ଅରାଜକତାରେ ପୂର୍ଣ୍ଣ ହୋଇଥିଲା । ସେଠାରେ ବୋଧିମେଘେଶ୍ୱର ଓ ଅଭୟଦ୍ରଂଷ୍ଟ୍ରା ନାମଧେୟ ଦୁଇଜଣ ଖ୍ୟାତନାମା ଆଚାର୍ଯ୍ୟ ବାସ କରୁଥିଲେ । ସେମାନେ ଶତଶତ ସନ୍ନ୍ୟାସୀ ସହ କାଞ୍ଚି-ପୁରରେ ଆସି ଉପସ୍ଥିତ ହେଲେ । ହୁଏନ୍‌ସାଂ ସେମାନଙ୍କ ସହିତ ସାକ୍ଷାତ୍ କରି ସେମାନଙ୍କୁ ଏହି ମର୍ମରେ ପ୍ରଶ୍ନ କଲେ, "ମୁଁ ଶୁଣିଅଛି ଯେ, ଆପଣମାନଙ୍କ ଦେଶର ଧର୍ମାଧ୍ୟକ୍ଷଗଣ ସ୍ଥବିର ମତାନୁଯାୟୀ ତ୍ରିପିଟକ ଓ ଯୋଗଶାସ୍ତ୍ର ବ୍ୟାଖ୍ୟାନ କରିବାରେ ସମର୍ଥ । ସେଠାକୁ ଯାଇ ଉକ୍ତ ଶାସ୍ତ୍ରସମୂହ ଅଧ୍ୟୟନ କରିବା ସକାଶେ ମୁଁ ଉତ୍କଣ୍ଠିତ । ମୁଁ ପଚାରେ, "ଆପଣମାନେ କାହିଁକି ଏଠାକୁ ଆସିଅଛନ୍ତି ?" ସେମାନେ ଉତ୍ତର କଲେ, "ଆମ୍ଭମାନଙ୍କ ରାଜ୍ୟର ନରପତି ଇହ ସଂସାର ତ୍ୟାଗ କରି-ଅଛନ୍ତି । ଦୁର୍ଭିକ୍ଷର କରାଳ କବଳରେ ଲୋକେ ସନ୍ତ୍ରସ୍ତ ହୋଇଅଛନ୍ତି । ଆମ୍ଭେମାନେ ଶୁଣିଥିଲୁ ଯେ, ଜମ୍ବୁଦ୍ୱୀପରେ ଖାଦ୍ୟ ଦ୍ରବ୍ୟର ପ୍ରାଚୁର୍ଯ୍ୟ ଓ ଶାନ୍ତି ବିରାଜିତ । ଏହା ମଧ୍ୟ ବୁଦ୍ଧଙ୍କ ଜନ୍ମଭୂମି ଓ ପବିତ୍ର କ୍ଷେତ୍ରରେ ପରିପୂର୍ଣ୍ଣ । ଏହି କାରଣରୁ ଆମ୍ଭେମାନେ ଏଠାକୁ ଆସିଅଛୁଁ । ପୁନଶ୍ଚ ଆମ୍ଭମାନଙ୍କ ମତାବଲମ୍ବୀ ଶାସ୍ତ୍ରଜ୍ଞଙ୍କ ମଧ୍ୟରେ ଆମ୍ଭମାନଙ୍କ ଅପେକ୍ଷା ଅଧିକ ବୟୋବୃଦ୍ଧ ଓ ସମ୍ମାନାସ୍ପଦ ଆଉ କେହି ନାହାନ୍ତି; ଅତଏବ ଆପଣଙ୍କର ଯଦି କୌଣସି ବିଷୟରେ ସନ୍ଦେହ ଥାଏ, ତାହାହେଲେ ଆସନ୍ତୁ, ଉକ୍ତ ବିଷୟସମୂହର ଆଲୋଚନା କରିବା ।"

ତତ୍ପରେ ହୁଏନ୍‌ସାଂ ଯୋଗ ଶାସ୍ତ୍ରରୁ କେତେକ ଉତ୍କୃଷ୍ଟ ଅଂଶ ଆବୃତ୍ତି କଲେ; କିନ୍ତୁ ଶୀଲଭଦ୍ରଙ୍କ ତୁଲ୍ୟ ସେମାନେ ତାହା ବ୍ୟାଖ୍ୟାନ କରି ପାରିଲେ ନାହିଁ ।

ଏହି ରାଜ୍ୟର ସୀମାରୁ ପ୍ରାୟ ତିନି ସହସ୍ର ଲି ଦୂରରେ ମାଲକୂଟ ଦେଶ ଅବସ୍ଥିତ । ସମୁଦ୍ର ଉପକୂଳରେ ଥିବାରୁ ଏହି ଦେଶ ନାନାବିଧ ରତ୍ନରେ ପରିପୂର୍ଣ୍ଣ ।

ରାଜଧାନୀର ପୂର୍ବ ପାର୍ଶ୍ୱରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ପୂର୍ବକାଳରେ ବୁଦ୍ଧ ଏହି ସ୍ଥାନରେ ଧର୍ମୋପଦେଶ ପ୍ରଦାନ କରି ସ୍ୱୀୟ ଆଧ୍ୟାତ୍ମିକ ଶକ୍ତିର ପରିଚୟ ପ୍ରଦାନ କରିଥିଲେ ଓ ବହୁସଂଖ୍ୟକ ଲୋକଙ୍କୁ ସ୍ୱମତରେ ଦୀକ୍ଷିତ କରିଥିଲେ ।

---

## ଚନ୍ଦନେର ବୃକ୍ଷ

ଏହି ରାଜ୍ୟର ଦକ୍ଷିଣକୁ ସମୁଦ୍ର ଉପକୂଳରେ ଭୁଙ୍ଗଗିରି ଓ ସର୍ବୋତ୍ତମ ମଳୟ ଗିରି ଅବସ୍ଥିତ । ଏହିଠାରେ ସୌରଭମୟ ଚନ୍ଦନ ବୃକ୍ଷ ମିଳେ । ଚନ୍ଦନ ବୃକ୍ଷର ଶୀତଳତା ଯୋଗୁଁ ଗ୍ରୀଷ୍ମକାଳରେ ନାନାବିଧ ସର୍ପ ଆସି ସେଗୁଡ଼ିକରେ ଆଶ୍ରୟ ନିଅନ୍ତି; କିନ୍ତୁ ଶୀତ କାଳରେ ସେମାନେ ଭୂମି ମଧ୍ୟରେ ଲୁକ୍କାୟିତ ହୋଇ ରହନ୍ତି; ସୁତରାଂ ଏହି ବୃକ୍ଷ ସହଜରେ ଚିହ୍ନାଯାଏ ।

ଏହିଠାରେ ସୁଗନ୍ଧ କର୍ପୂର ବୃକ୍ଷ ମଧ୍ୟ ଥିଲା । ଆର୍ଦ୍ରାବସ୍ଥାରେ ଏହି ବୃକ୍ଷରେ ଆଦୌ ସୁଗନ୍ଧ ନ ଥାଏ; କିନ୍ତୁ ଖଣ୍ଡ ଖଣ୍ଡ କରି କାଟି ଶୁଷ୍କ କଲେ ଓ ଚିରିଲେ ତନ୍ମଧ୍ୟରେ ତୁଷାରବର୍ଣ୍ଣ ମୁକ୍ତାକାର ଏକ ପ୍ରକାର ପଦାର୍ଥ ଦୃଷ୍ଟିଗୋଚର ହୁଏ । ଏହାହିଁ କର୍ପୂର ।

---

## ସିଂହଳରାଜ

ଏହି ସ୍ଥାନର ଉତ୍ତର-ପୂର୍ବ ପ୍ରାନ୍ତରେ ସମୁଦ୍ର କୂଳରେ ଗୋଟିଏ ନଗର ଥିଲା । ଏହି ନଗରର ଦକ୍ଷିଣକୁ ତିନି ସହସ୍ର ଲି ଦୂରରେ ସିଂହଳ ଦେଶ ଅବସ୍ଥିତ । ସିଂହଳର ଆୟତନ ସାତ ସହସ୍ର ଲି ଓ ରାଜଧାନୀର ଆୟତନ ଚାଳିଶ ଲି । ଏହା ଅତ୍ୟନ୍ତ ଜନାକୀର୍ଣ୍ଣ ଓ ଏଠାରେ ପ୍ରଚୁର

ଶସ୍ୟ ଉତ୍ପନ୍ନ ହେଉଥିଲା । ଏହି ଦେଶର ଅଧିବାସୀମାନେ କୃଷ୍ଣକାୟ, ଖର୍ବାକୃତି ଓ ଉତ୍ତେଜନାପ୍ରବଣ । ପ୍ରଥମରେ ଏହାର ନାମ ପୋ-ଚୁ ଥିଲା ଓ ଏଠାରେ ଅନେକ ଅମୂଲ୍ୟ ରତ୍ନ ମିଳୁଥିଲା । କେତେକ ଦିନ ଉତ୍ତାରେ ଦାକ୍ଷିଣାତ୍ୟର କୌଣସି ସ୍ତ୍ରୀ ସହିତ ପ୍ରତିବେଶୀ ରାଜ୍ୟନିବାସୀ ଏକ ବ୍ୟକ୍ତିର ବିବାହ ସମ୍ବନ୍ଧ ସ୍ଥିର ହେଲା । ଶ୍ୱଶୁରାଳୟକୁ ଯାତ୍ରା କରିବା ମାର୍ଗରେ ସେହି ସ୍ତ୍ରୀ ଓ ତାହାର ସହଯାତ୍ରୀମାନେ ଗୋଟାଏ ସିଂହ ଦ୍ୱାରା ଘେରିରେ ପଡ଼ିଲେ । ଭୃତ୍ୟ ଓ ଭାରବାହୀଗଣ ସିଂହ ଦର୍ଶନରେ ଏକାନ୍ତ ଭୟବିହ୍ୱଳ ହୋଇ ସ୍ତ୍ରୀକୁ ଶିବିକା ମଧ୍ୟରେ ଏକାକିନୀ ପରିତ୍ୟାଗ କରି ଇତସ୍ତତଃ ପଳାୟନ କଲେ । ସିଂହ ଆସି ଉକ୍ତ ସ୍ତ୍ରୀକୁ ବହୁ ଦୂରକୁ ନେଇଗଲା ଓ ଦୁର୍ଗମ ପର୍ବତ ମଧ୍ୟରେ ତାକୁ ରଖି ତାହାର ଆହାର ସକାଶେ ଫଳ ଓ ଶିକାର ସଂଗ୍ରହ କରିବାକୁ ଲାଗିଲା । କେତେକ ବର୍ଷ ଉତ୍ତାରେ ସେ ସ୍ତ୍ରୀ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ପ୍ରସବ କଲା । ସେମାନେ ମନୁଷ୍ୟାକୃତି ହେଲେ ହେଁ ଅତ୍ୟନ୍ତ ଉଗ୍ରସ୍ୱଭାବବିଶିଷ୍ଟ ହେଲେ ।

ପୁତ୍ର କ୍ରମେ ବୟଃପ୍ରାପ୍ତ ହେଲରୁ ମାତାଙ୍କୁ ପଚାରିଲା, "ମୋ ପିତା ତ ପଶୁ ଓ ମାତା ତ ମନୁଷ୍ୟ, ମୁଁ କଅଣ ?" ମାତା ତାହାର ଅବଗତି ନିମିତ୍ତ ସମସ୍ତ ଘଟନା ବର୍ଣ୍ଣନା କଲେ । ପୁତ୍ର କହିଲା, "ମନୁଷ୍ୟ ଓ ପଶୁ ଭିନ୍ନ ଜାତି, ତାହାହେଲେ ଏହାକୁ ପରିତ୍ୟାଗ କରି ଚାଲି-ଯାଉ ନାହିଁ କାହିଁକି ?" ମାତା ଉତ୍ତର କଲେ, ଚାଲିଯିବା ମୋ ଇଚ୍ଛା-ବିରୁଦ୍ଧ ନୁହେଁ; କିନ୍ତୁ ମୁଁ ଉପାୟ ଖୋଜି ପାଉ ନାହିଁ । ତତ୍ପରେ ପିତା (ସିଂହ) ପର୍ବତ, ଅରଣ୍ୟ ପ୍ରଭୃତିରେ ଭ୍ରମଣ କଲା ସମୟରେ ସେ ତାହାର ଅନୁସରଣ କଲା । ଦିନକରେ ତାହାର ଅନୁପସ୍ଥିତ ସମୟରେ ସୁଯୋଗ ଦେଖି ମାତା ଓ ଭଗିନୀକୁ ନେଇ ନିକଟବର୍ତ୍ତୀ ଏକ ଗ୍ରାମକୁ ଚାଲିଗଲା ଓ ସେଠାରୁ ମାତାର ପିତ୍ରାଳୟ ଥିବା ଗ୍ରାମକୁ ଯାଇ ଜ୍ଞାତି-

ମାନଙ୍କ ସନ୍ଧାନ କଲା । ଶୁଣିଲା ଯେ, ସେମାନଙ୍କ ବଂଶ ଲୋପ ହୋଇ-ଅଛି । ସେମାନେ ସେଠାରୁ ଯାଇ ଏକ ନିକଟବର୍ତ୍ତୀ ଗ୍ରାମରେ ଆଶ୍ରୟ ଗ୍ରହଣ କଲେ ।

ସିଂହରାଜ ପ୍ରତ୍ୟାବର୍ତ୍ତନ କରି ସ୍ତ୍ରୀ, ପୁତ୍ର ଓ କନ୍ୟା କାହାରିକୁ ନ ଦେଖି କ୍ରୋଧାନ୍ୱିତ ହେଲା ଓ ଭୀଷଣ ଗର୍ଜ୍ଜନସହକାରେ ଉକ୍ତ ଅରଣ୍ୟ-ବାସ ପରିତ୍ୟାଗ କଲା ଏବଂ ନିକଟବର୍ତ୍ତୀ ଗ୍ରାମସମୂହରେ ଅନେକ ପୁରୁଷ ଓ ସ୍ତ୍ରୀ ବଧ କଲା । ଗ୍ରାମବାସୀମାନେ ରାଜାଙ୍କ ନିକଟରୁ ଯାଇଁ ଏହି ବିଷୟ ଜ୍ଞାପନ କଲେ । ରାଜା ସାହସୀ ସୈନ୍ୟମାନଙ୍କୁ ଆହ୍ବାନ କରି ଶରଦ୍ୱାରା ସିଂହକୁ ବଧ କରିବା ସକାଶେ ଆଦେଶ ଦେଲେ । ସିଂହ ଏହା ଜାଣିପାରି ଭୀଷଣ ଗର୍ଜ୍ଜନ କଲା । ତାହାର ଗର୍ଜ୍ଜନରେ ମନୁଷ୍ୟ ତଥା ପଶୁ ସମସ୍ତେ ତ୍ରସ୍ତ ହୋଇଲେ ଓ ତାହାକୁ ଆକ୍ରମଣ କରିବାରେ କେହି ସାହସୀ ହେଲେ ନାହିଁ ।

---

## ପୁତ୍ର ହସ୍ତରେ ସିଂହରାଜର ମୃତ୍ୟୁ

ଏହି ପ୍ରକାର ନିଷ୍ଫଳ ଚେଷ୍ଟାରେ ବହୁ ଦିବସ ଅତୀତ ହେଲା । ତତ୍ପରେ ସିଂହକୁ ବଧ କରିବା ସକାଶେ ରାଜା ଏକ ସହସ୍ର ମୁଦ୍ରା ପୁରସ୍କାର ଘୋଷଣା କଲେ ।

ତତ୍ପରେ ପୁତ୍ର ମାତାଙ୍କୁ କହିଲା, "ମା, ଆମ୍ଭେମାନେ ଅଭାବଗ୍ରସ୍ତ ହୋଇ ବହୁ କଷ୍ଟ ଭୋଗ କରୁଅଛୁଁ । ମୁଁ ରାଜାଙ୍କ ଆହ୍ବାନ ରକ୍ଷା କରିବି । ତୁ କଣ କହୁଛୁ ?"

ମାତା ଉତ୍ତର ଦେଲେ, "ତାହା ଅସମ୍ଭବ, ସେ ପଶୁ ହେଲେ ହେଁ ତୋର ପିତା । ତୁ ଯଦି ତାହାକୁ ବଧ କରିବୁ, ତାହାହେଲେ ତୋତେ ମନୁଷ୍ୟ ବୋଲି କେହି କହିବେ ନାହିଁ ।" ପୁତ୍ର କହିଲା, "ମୁଁ ଯଦି ମୋର ଅଭିପ୍ରାୟାନୁଯାୟୀ କାର୍ଯ୍ୟ ନ କରେ, ତାହାହେଲେ ସେ କଦାପି ଏଠାରୁ

ଖୋଲିବ ନାହିଁ, ଆଉ ସେ ଆମ୍ଭମାନଙ୍କ ଅନ୍ୱେଷଣରେ ବହିର୍ଗତ ହୋଇ ଯଦି ଏହି ଗ୍ରାମ ମଧ୍ୟକୁ ଆସିବ, ତାହାହେଲେ ତାହା ସହିତ ଆମ୍ଭେମାନେ ଆସିଅଛୁ ବୋଲି ରାଜା ଜାଣିବେ ଓ ଆମ୍ଭମାନଙ୍କ ମୃତ୍ୟୁର ଆଉ ବିଳମ୍ବ ହେବ ନାହିଁ । ତା ପରେ ? କ୍ରୋଧରେ ଅଧୀର ହୋଇ ସିଂହ ଆମ୍ଭମାନଙ୍କୁ ବିପଦ୍‌ଗ୍ରସ୍ତ କରିବ । ତାହାହେଲେ ଜଣକ ସକାଶେ ଅନେକ ବ୍ୟକ୍ତି ତାହାଙ୍କ ଛତଗ୍ରସ୍ତ ହେବେ ! ମୁଁ ଏହି ବିଷୟରେ ବାରମ୍ବାର ଭାବନା କରୁଅଛି । ଏହା ହେବା ଅନୁଚିତ । ମୁଁ ରାଜାଙ୍କ ଆଦେଶ ଅବଶ୍ୟ ପାଳନ କରିବି ।”

ତତ୍ପରେ ସେ ସିଂହକୁ ଆକ୍ରମଣ କରିବା ସକାଶେ ବହିର୍ଗତ ହେଲା । ସିଂହ ପୁତ୍ରକୁ ଦେଖି ବାତ୍ସଲ୍ୟରସାପ୍ଳୁତ ହୋଇ ଆନନ୍ଦରେ ଅଭିଭୂତ ହେଲା ଓ ହିଂସ୍ରପ୍ରବୃତ୍ତି ପରିତ୍ୟାଗ କଲା । ପୁତ୍ର ଶାଣିତ ଛୁରିକା-ଦ୍ୱାରା ତାହାର ଗଳଦେଶ ଛିନ୍ନ ଓ ଉଦର ବିଦୀର୍ଣ୍ଣ କରିପକାଇଲା । ସେ ନିଦାରୁଣ ଯନ୍ତ୍ରଣାରେ କାତର ହେଲେହେଁ ପୁତ୍ର ପ୍ରତି ହୃଦୟରେ ଗଭୀର ସ୍ନେହ ପୋଷଣ କରିଥିଲା ଓ ଅପୂର୍ବ ଧୈର୍ଯ୍ୟସହକାରେ ଯନ୍ତ୍ରଣା ସହ୍ୟକରି ପ୍ରାଣବାୟୁ ବହିର୍ଗତ ହେବା ପର୍ଯ୍ୟନ୍ତ ନିଶ୍ଚଳଭାବରେ ପଡିରହିଲା ।

ରାଜା ସିଂହର ମୃତ୍ୟୁ-ସମ୍ବାଦ ପ୍ରାପ୍ତ ହୋଇ ଯତ୍ପରୋନାସ୍ତି ପ୍ରୀତ ହେଲେ । କିନ୍ତୁ ଏ ସମସ୍ତ ବ୍ୟାପାରରେ ବିସ୍ମୟାବିଷ୍ଟ ହୋଇ ସିଂହର ଅଦ୍ଭୁତ ଆଚରଣର କାରଣ ଜିଜ୍ଞାସା କଲେ । ପ୍ରଥମରେ ସିଂହପୁତ୍ର ସତ୍ୟ କଥା ପ୍ରକାଶ କରିବାରେ କୁଣ୍ଠିତ ହେଲା । କିନ୍ତୁ ପରିଶେଷରେ ସମସ୍ତ ବିଷୟ ଯଥାଯଥରୂପେ ବର୍ଣ୍ଣନା କଲା । ରାଜା ତାହା ଶୁଣି କହି ଉଠିଲେ, “ସିଂହପୁତ୍ର ବ୍ୟତୀତ କାହାର ଏପରି ହୃଦୟ ହେବ ? ମୁଁ ପ୍ରତିଶ୍ରୁତ ପୁରସ୍କାର ପ୍ରଦାନ କରିବି; କିନ୍ତୁ ପିତୃହନ୍ତାର ଏହି ରାଜ୍ୟରେ ସ୍ଥାନ ନାହିଁ, ଅତଏବ ତୁମ୍ଭଙ୍କୁ ଏହି ରାଜ୍ୟ ତ୍ୟାଗ କରିବାକୁ ହେବ ।”

ତତ୍ପରେ ପ୍ରଚୁର ଧନରତ୍ନ ପ୍ରଦାନ କରି, ତାହାଙ୍କୁ ରାଜ୍ୟରୁ ନିର୍ବାସିତ କରିବା ପାଇଁ କର୍ମଚାରୀମାନଙ୍କୁ ଆଦେଶ କଲେ । ତାହାଙ୍କ ଆଦେଶରେ ଦୁଇଗୋଟି ଜାହାଜ ପ୍ରଚୁର ଧନ, ବସ୍ତ୍ର ଓ ଖାଦ୍ୟ ସାମଗ୍ରୀପୂର୍ଣ୍ଣ ହେଲା ଏବଂ ସମୁଦ୍ରମଧ୍ୟସ୍ଥ ଉତ୍ତାଳ ତରଙ୍ଗ ମଧ୍ୟରେ ବନା ଚାଳକରେ ଭାସିବା ପାଇଁ ସେ ଜାହାଜ ଦୁଇଟି ଛାଡ଼ିଦିଆଗଲା । ସିଂହର ପୁଅ ଯେଉଁ ଜାହାଜରେ ବସିଥିଲା, ସେହି ଜାହାଜ ସମୁଦ୍ରରେ କତିପୟ ଦିବସ ବିଚରଣ କଲା ଉତ୍ତାରେ ପୋ-ଚୁରେ ଉପସ୍ଥିତ ହେଲା । ସେ ସେହି ସ୍ଥାନର ଉପୂନ୍ଦବାଦ ଦର୍ଶନରେ ମୁଗ୍ଧ ହୋଇ ସେଠାରେ ଅବସ୍ଥାନ କରିବା ପାଇଁ ସ୍ଥିର କଲା ।

ତତ୍ପରେ କେତେକ ବଣିକ ରତ୍ନାନ୍ୱେଷଣରେ ସେମାନଙ୍କ ପରିବାର ସହିତ ଭ୍ରମଣ କରୁ କରୁ ଉକ୍ତ ସ୍ଥାନ ସନ୍ନିକଟରେ ଆବାସ ସ୍ଥାପନ କଲେ । ସିଂହପୁତ୍ର ସେମାନଙ୍କୁ ବଧ କରି ସେମାନଙ୍କ ପତ୍ନୀ ଓ କନ୍ୟାମାନଙ୍କୁ ବଳପୂର୍ବକ ହରଣ କଲା । କ୍ରମେ ସେମାନଙ୍କ ଗର୍ଭରୁ ବହୁ ସନ୍ତାନ ଜାତ ହେଲେ ଓ ସେମାନଙ୍କ ବଂଶଧର ବହୁସଂଖ୍ୟାରେ ବୃଦ୍ଧି ହେବାକୁ ଲାଗିଲେ । ତତ୍ପରେ ସେମାନେ ସେମାନଙ୍କ ମଧ୍ୟରୁ ରାଜା ଓ ମନ୍ତ୍ରୀ ନିର୍ବାଚନ କଲେ । ସେମାନଙ୍କ ପୂର୍ବପୁରୁଷ ସିଂହ ବଧ କରିଥିବା ଯୋଗୁଁ ଉକ୍ତ ରାଜ୍ୟ ସିଂହଳ ନାମରେ ଅଭିହିତ ହେଲା ।

---

## ପଶ୍ଚିମାବର୍ତ୍ତର ନାଗଗଣ—ନାଗଦେଶ

ସିଂହର କନ୍ୟା ଯେଉଁ ଜାହାଜରେ ବସିଥିଲା, ତାହା ସମୁଦ୍ରରେ କତିପୟ ଦିବସ ବିଚରଣ କଲା ଉତ୍ତାରେ ପାରସ୍ୟର ପଶ୍ଚିମ ଉପକୂଳରେ ଉପସ୍ଥିତ ହେଲା । ତତ୍ରତ୍ୟ ଅଧିବାସୀ ରାକ୍ଷସଗଣ ତାହାକୁ ବଳପୂର୍ବକ ହରଣ କଲେ । ତାହାର ଗର୍ଭରୁ ବହୁସଂଖ୍ୟକ କନ୍ୟା

ଜାତ ହେଲେ । ଏହା ପାଶ୍ଚାତ୍ୟ ରମଣୀମାନଙ୍କ ଦେଶ ନାମରେ ଖ୍ୟାତ ହେଲା । ଆଉ ମଧ୍ୟ କଥିତ ଅଛି, ସିଂହଳ ନାମକ ଏକ ବଣିକ-ପୁତ୍ର ସ୍ୱୀୟ ଜ୍ଞାନ ବଳରେ ରାକ୍ଷସଗଣଙ୍କ ନୃଶଂସ କବଳରୁ ପଳାୟନ କରି ପୋ-ଚୁ ଦ୍ୱୀପରେ ଉପସ୍ଥିତ ହେଲେ ଓ ରାକ୍ଷସମାନଙ୍କୁ ହତ୍ୟା-କରି ଉକ୍ତ ସ୍ଥାନରେ ସ୍ୱାଧିକାର ସ୍ଥାପନ କଲେ । ତାହାଙ୍କ ନାମାନୁସାରେ ଉକ୍ତ ଦ୍ୱୀପର ନାମ ସିଂହଳ ହୋଇଅଛି ।

ପୂର୍ବକାଳରେ ଏହି ଦେଶରେ ବୁଦ୍ଧଙ୍କ ପ୍ରବର୍ତ୍ତିତ ମତ ପ୍ରଚାରିତ ହୋଇ ନ ଥିଲା । ବୁଦ୍ଧଙ୍କ ନିର୍ବାଣପ୍ରାପ୍ତିର ଏକଶତ ବର୍ଷ ଉତ୍ତାରେ ଅଶୋକଙ୍କ କନିଷ୍ଠ ଭ୍ରାତା ମହେନ୍ଦ୍ର ଜୀବନର ଭୋଗବିଳାସ ପରିହାର କରି, ବୁଦ୍ଧିଜଣ ଶ୍ରମଣଙ୍କ ସମଭିବ୍ୟାହାରରେ ଏହି ରାଜ୍ୟ ଅଧିବାସୀଙ୍କୁ ବୌଦ୍ଧ ମତରେ ଦୀକ୍ଷିତ କରିବା ନିମିତ୍ତ ଶୂନ୍ୟମାର୍ଗରେ ଆଗମନ କରିଥିଲେ । ବୌଦ୍ଧ ମତର ଉତ୍କୃଷ୍ଟତା ପ୍ରମାଣ କରିବା ସକାଶେ ସେ ତାହାଙ୍କ ଅତ୍ୟଦ୍ଭୁତ ଶକ୍ତିସକଳ ପ୍ରକାଶ କଲେ । ଦେଶବାସିଗଣ ତାହାଙ୍କ ପ୍ରବର୍ତ୍ତିତ ମତରେ ବିଶ୍ୱାସ ସ୍ଥାପନ କରି ଏକ ସଂଘାରାମ ସ୍ଥାପନ କଲେ । ସେତେବେଳେ ଏଠାରେ ପ୍ରାୟ ଏକଶତ ସଂଘାରାମ ଥିଲା ଓ ତହିଁରେ ଦଶ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେମାନେ ସମସ୍ତେ ସ୍ଥବିର ସମ୍ପ୍ରଦାୟଭୁକ୍ତ ଓ ମହାଯାନାବଲମ୍ବୀ । ସେମାନେ ଗୃହସ୍ଥଙ୍କୁ "ସୁଦ୍ଧା ·ଶିକ୍ଷା ପ୍ରଦାନ କରୁଥିଲେ ଓ ଗୃହସ୍ଥ ଶିଷ୍ୟଗଣ ସସମ୍ମାନରେ ଓ ପରିଶ୍ରମସହକାରେ ସେମାନଙ୍କ ଉପଦେଶ ପାଳନ କରୁଥିଲେ ।

---

## ପଦ୍ମରାଗମଣି

ରାଜପ୍ରାସାଦ ସନ୍ନିକଟବର୍ତ୍ତୀ ଏକ ଅତ୍ୟୁଚ୍ଚ ବିବିଧ ବହୁମୂଲ୍ୟ ରତ୍ନମଣ୍ଡିତ ସ୍ତୂପରେ ବୁଦ୍ଧଙ୍କ ଦନ୍ତ ରକ୍ଷିତ ହୋଇଥିଲା । ସ୍ତୂପୋପରି

ପଦ୍ମରାଗ ମଣି ମଣ୍ଡିତ ଏକ ଧ୍ୱଜ-ଦଣ୍ଡ ଥିଲା । ଏହାର ସମୁଜ୍ଜ୍ୱଳ କାନ୍ତି ସ୍ୱର୍ଗକୁ ମୁଦ୍ଧା ଆଲୋକିତ କରୁଥିଲା । ମେଘାବରଣ-ବିମୁକ୍ତ ନିର୍ମଳ ରଜନୀରେ ଦଶ ସହସ୍ର ଲି ଦୂରବର୍ତ୍ତୀ ସ୍ଥାନର ଲୋକେ ମୁଦ୍ଧା ଉକ୍ତ ଆଲୋକ ଦେଖି ପାରୁଥିଲେ ।

ଏହାର ସନ୍ନିକଟରେ ବହୁବିଧ ରତ୍ନମଣ୍ଡିତ ଆଉ ଗୋଟିଏ ବିହାର ଥିଲା । ତନ୍ମଧ୍ୟରେ ବୁଦ୍ଧଙ୍କର ଏକ ସ୍ୱର୍ଣ୍ଣ-ବିଗ୍ରହ ରକ୍ଷିତ ହୋଇଥିଲା । ତାହା ପୂର୍ବତନ ଏକ ନରପତି ସ୍ଥାପନ କରିଥିଲେ । ବିଗ୍ରହ ମସ୍ତକସ୍ଥିତ ମୁକୁଟ ବହୁମୂଲ୍ୟ ରତ୍ନମଣ୍ଡିତ । ଏକଦା ଜଣେ ଲୋକ ଏହି ରତ୍ନ ଅପହରଣ କରିବାକୁ ଇଚ୍ଛା କଲା । କିନ୍ତୁ ଉକ୍ତ ସ୍ଥାନ ଏତେ ସୁରକ୍ଷିତ ହୋଇଥିଲା ଯେ, ସେ ତନ୍ମଧ୍ୟକୁ ପ୍ରବେଶ କରିପାରିଲା ନାହିଁ । ତତ୍ପରେ ସେ ସୁଡ଼ଙ୍ଗ ଖନନ କରି ତନ୍ମଧ୍ୟରେ ପ୍ରବିଷ୍ଟ ହେଲା । କିନ୍ତୁ ଯେତେବେଳେ ସେ ଉକ୍ତ ରତ୍ନ ଉପରେ ହସ୍ତ ନିକ୍ଷେପ କରିବାକୁ ଉଦ୍ୟତ ହେଲା,ସେତେବେଳେ ବିଗ୍ରହର ଉଚ୍ଚତା ଏତେ ବୃଦ୍ଧି ହେବାକୁ ଲାଗିଲା ଯେ, ରତ୍ନକୁ ତାହାର ହସ୍ତ ସ୍ପର୍ଶ କରି ପାରିଲା ନାହିଁ । ତତ୍ପରେ ଉକ୍ତ ସ୍ଥାନରୁ ବହିର୍ଗତ ହୋଇଯିବା ସମୟରେ ସେ କହିଲା, "ପୂର୍ବକାଳରେ ବୁଦ୍ଧ ରାଜ୍ୟ ତ୍ୟାଗପୂର୍ବକ ତପସ୍ୟାରେ ନିମଗ୍ନ ଥିବା ସମୟରେ ଜୀବନୋତ୍ସର୍ଗ କରିବାରେ ମୁଦ୍ଧା କୁଣ୍ଠିତ ହେଉ ନ ଥିଲେ । ତେବେ ଦାନରେ ସେ ଏତେ କୃପଣ କାହିଁକି ? ତାହାହେଲେ ତାହାଙ୍କ ସମ୍ବନ୍ଧରେ ପ୍ରଚଳିତ ବର୍ଣ୍ଣନାବଳୀ ସମସ୍ତ ମିଥ୍ୟା ।" ତତ୍କ୍ଷଣାତ୍ ବିଗ୍ରହର ଉଚ୍ଚତା ହ୍ରାସ ହେଲା ଓ ସେ ସେହି ରତ୍ନ ଖଣ୍ଡିକ ତାହାକୁ ଦାନ କଲେ । ତସ୍କର ତାହା ନେଇଯାଇ ବିକ୍ରୟ କରିବା ପାଇଁ ଚେଷ୍ଟା କଲା । କିନ୍ତୁ ଲୋକେ ଉକ୍ତ ରତ୍ନର ପରିଚୟ ପ୍ରାପ୍ତ ହୋଇ ତସ୍କରକୁ ବନ୍ଧନ କରି ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ । ସେ କି ପ୍ରକାରରେ ରତ୍ନ ହସ୍ତଗତ କରିଥିଲା, ରାଜା ତାହାକୁ ଏହି ପ୍ରଶ୍ନ କଲେ ।

ସେ କହିଲି ଯେ, ସ୍ୱୟଂ ବୁଦ୍ଧ ତାହାଙ୍କୁ ତାହା ଦାନ କରିଅଛନ୍ତି । ତତ୍ପରେ ସେ ସମସ୍ତ ଘଟନା ବର୍ଣ୍ଣନା କଲି । ରାଜା ମଧ୍ୟ ବିଗ୍ରହର ଉଚ୍ଚତା ହ୍ରାସ ହୋଇଥିବା ଦେଖି ତତ୍ପ୍ରତି ତାହାଙ୍କ ଭକ୍ତି ଉଦୟ ହେଲା । ତତ୍ପରେ ସେ ତସ୍କରକୁ ବହୁବିଧ ରତ୍ନ ଓ ଧନ ପ୍ରଦାନ କରି ଉକ୍ତ ଅପହୃତ ରତ୍ନଟି ହସ୍ତଗତ କଲେ ଓ ଦେବବିଗ୍ରହ ମସ୍ତକସ୍ଥ ମୁକୁଟରେ ପୁନଃ ସ୍ଥାପନ କଲେ ।

---

## ଲଙ୍କାଗିରି—ନାରିକେଳଦ୍ୱୀପ

ରାଜ୍ୟର ଦକ୍ଷିଣ-ପୂର୍ବ କୋଣରେ ଲଙ୍କାଗିରି ଅବସ୍ଥିତ । ଏଠାରେ ବହୁସଂଖ୍ୟକ ଦେବତା ଓ ରାକ୍ଷସ ବାସ କରନ୍ତି । ପୂର୍ବକାଳରେ ତଥାଗତ ଏହି ପର୍ବତ ଉପରେ ଲଙ୍କାବତାର ସୂତ୍ର ବ୍ୟାଖ୍ୟାନ କରିଥିଲେ ।

ରାଜ୍ୟର ଦକ୍ଷିଣ ଦିଗକୁ ବହୁ ସହସ୍ର ଲି ଦୂରରେ ସମୁଦ୍ର ମଧ୍ୟରେ ନାରିକେଳ ନାମକ ଏକ ଦ୍ୱୀପ ଥିଲା । ଏହି ଦ୍ୱୀପର ଅଧିବାସିଗଣ ଖର୍ବକାୟ; କେବଳ ତିନିଫୁଟ ଉଚ୍ଚ । ସେମାନଙ୍କ ଶରୀର ମନୁଷ୍ୟ ଶରୀର ତୁଲ୍ୟ; କିନ୍ତୁ ପକ୍ଷୀମାନଙ୍କ ପରି ସେମାନେ ଚଞ୍ଚୁବିଶିଷ୍ଟ । ସେମାନେ ଶସ୍ୟାହାର କରୁ ନ ଥିଲେ । ନାରିକେଳ ସେମାନଙ୍କର ପ୍ରଧାନ ଖାଦ୍ୟ ଥିଲା ।

ସିଂହଳ ବହୁ ଦୂରରେ ଓ ସମୁଦ୍ର ମଧ୍ୟରେ ଅବସ୍ଥିତ ଥିବାରୁ ହୁଏନ୍‌ସାଂ ତାହା ସ୍ୱୟଂ ଦର୍ଶନ କରିପାରି ନ ଥିଲେ । ସେ ଲୋକ-ମୁଖରୁ ତତ୍‌ସମ୍ବନ୍ଧରେ ଯାହା ସଂଗ୍ରହ କରିଥିଲେ, ତାହା ଏଠାରେ ବର୍ଣ୍ଣନା କରିଅଛନ୍ତି ।

ସିଂହଳରୁ ଆଗତ ସତୁରି ଜଣ ସନ୍ନ୍ୟାସୀଙ୍କ ସମଭିବ୍ୟାହାରରେ ହୁଏନ୍‌ସାଂ ଦ୍ରାବିଡ଼ରୁ ଦକ୍ଷିଣ-ପଶ୍ଚିମାଭିମୁଖରେ ଯାତ୍ରା କରି ଅନେକ ପବିତ୍ର ସ୍ଥାନ ପରିଦର୍ଶନ କଲେ । ଦୁଇ ସହସ୍ର ଲି ପଥ ଅତିକ୍ରମ କରି

ସେ କଙ୍କଣାପୁରରେ ଉପନୀତ ହେଲେ । ଏଠାରେ ଏକଶତ ସଙ୍ଘାରାମ ଥିଲା ଓ ତହିଁରେ ହୀନଯାନ ଓ ମହାଯାନ ଉଭୟ ମତାବଲମ୍ବୀ ଦଶ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ଏମାନଙ୍କ ଛଡ଼ା ଅସଂଖ୍ୟ ଧର୍ମବିରୋଧୀ ଓ ଦେବୋପାସକ ଅବସ୍ଥାନ କରୁଥିଲେ ।

ରାଜପ୍ରାସାଦ ସମୀପରେ ଗୋଟିଏ ବିହାର ଥିଲା । ତହିଁରେ ତିନିଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସମସ୍ତେ ପାଣ୍ଡିତ୍ୟରେ ସୁପଣ୍ଡିତ । ଏହି ବିହାରରେ ରାଜକୁମାର ସିଦ୍ଧାର୍ଥଙ୍କ ଦୁଇଫୁଟ ଉଚ୍ଚ ଏକ ଶିରସ୍ତ୍ରାଣ ଥିଲା ଓ ତାହା ଅନ୍ୟ ଏକ ବହୁମୂଲ୍ୟ କାରୁକାର୍ଯ୍ୟବିଶିଷ୍ଟ ଆଧାରରେ ସୁରକ୍ଷିତ ହୋଇଥିଲା । ପ୍ରତି ପର୍ବ ଦିବସରେ ତାହା ଏକ ଉଚ୍ଚ ମଞ୍ଚୋପରି ସ୍ଥାପିତ ହୋଇଥିଲା । ଭକ୍ତିପୂର୍ଣ୍ଣ ହୃଦୟରେ ଯେଉଁ-ମାନେ ଏହାକୁ ପୂଜା କରୁଥିଲେ, ସେମାନେ ତାହାକୁ ଜ୍ୟୋତିର୍ମଣ୍ଡଳରେ ଆଲୋକିତ ହୋଇଥିବା ଦର୍ଶନ କରୁଥିଲେ ।

ରାଜଧାନୀ ସମୀପବର୍ତ୍ତୀ ବିହାର ମଧ୍ୟରୁ ଏକ ସଂଘାରାମରେ ମୈତ୍ରେୟ ବୋଧିସତ୍ତ୍ୱଙ୍କର ଦଶଫୁଟ ଉଚ୍ଚ ଏକ ଚନ୍ଦନକାଷ୍ଠ ମୂର୍ତ୍ତି ଥିଲା । ତାହା ମଧ୍ୟ ଜ୍ୟୋତିର୍ମଣ୍ଡଳାବୃତ । କଥିତ ଅଛି ଯେ, ବିଂଶକୋଟି ଅର୍ହତଙ୍କ-ଦ୍ୱାରା ଏହା ଖୋଦିତ ହୋଇଥିଲା ।

ନଗରର ଉତ୍ତର ପାର୍ଶ୍ୱରେ ତିରିଶ ଲି ଆୟତନବିଶିଷ୍ଟ ଏକ ତାଳବନ ଥିଲା । ବୃକ୍ଷଗୁଡିକର ପତ୍ର ଦୀର୍ଘ ଓ ଉଜ୍ଜ୍ୱଳ । ଏହି ଦେଶର ଲୋକେ ଏହି ପତ୍ର ପୋଥି ଲେଖିବାରେ ବ୍ୟବହାର କରୁଥିଲେ । ତେଣୁ ଏହା ବହୁମୂଲ୍ୟ ।

---

## ମହାରାଷ୍ଟ୍ର

ଏହିଠାରୁ ଉତ୍ତର-ପଶ୍ଚିମ ଦିଗରେ ନିବିଡ଼ ଅରଣ୍ୟ ମଧ୍ୟରେ ୨୪୦୦ ଲି ପଥ ଅତିକ୍ରମ କରି ହୁଏନ୍‌ସାଂ ମହାରାଷ୍ଟ୍ର ଦେଶରେ

ଉପସ୍ଥିତ ହେଲେ । ଏହି ଦେଶର ଅଧିବାସିଗଣ ମୃତ୍ୟୁକୁ ଘୃଣା କରୁଥିଲେ ଓ ସଦାଚରଣକୁ ଅତ୍ୟନ୍ତ ସମ୍ମାନ କରୁଥିଲେ ।

ଏହି ଦେଶର ନରପତି କ୍ଷତ୍ରିୟ ଓ ଯୁଦ୍ଧବିଦ୍ୟାବିଶାରଦ । ତାହାଙ୍କର ପଦାତିକ ଓ ଅଶ୍ୱାରୋହୀ ସୈନ୍ୟ ସର୍ବଦା ସୁସଜ୍ଜିତ ରହୁ-ଥିଲେ ଓ ସମସ୍ତେ ଯୁଦ୍ଧର ନିୟମାବଳୀ ହୃଦୟଙ୍ଗମ କରି ଉତ୍ତମରୂପେ ପାଳନ କରୁଥିଲେ । ଯଦି କୌଣସି ସେନାପତି ଯୁଦ୍ଧରେ ପରାସ୍ତ ହେଉ-ଥିଲେ ଓ ତାହାଙ୍କର ସୈନିକଗଣ ଧ୍ୱସ୍ତ ହେଉଥିଲେ, ତାହାହେଲେ ତାହାଙ୍କୁ ଶାରୀରିକ ଦଣ୍ଡ ଭୋଗ କରିବାକୁ ହେଉ ନ ଥିଲା । କେବଳ ସୈନିକ ପରିଚ୍ଛଦ ପରିତ୍ୟାଗ କରି ସେ ସ୍ତ୍ରୀ ବେଶ ଧାରଣ କରି ରହୁଥିଲେ । ଏଥିରେ ତାହାଙ୍କର ଲଜ୍ଜାର ସୀମା ରହୁ ନ ଥିଲା । ସୁତରାଂ ଅନେକେ ଲଜ୍ଜାରୁ ରକ୍ଷା ପାଇବା ସକାଶେ ଆତ୍ମହତ୍ୟା କରୁଥିଲେ । ବହୁ ସହସ୍ର ସାହସୀ ବୀର ପୁରୁଷ ଓ ଶତ ଶତ ଭୀଷଣ ହସ୍ତୀ ସର୍ବଦା ସଜ୍ଜିତ ହୋଇ ରହୁଥିଲେ । ଯେତେବେଳେ ସେମାନଙ୍କୁ ଯୁଦ୍ଧଭୂମିରେ ଦଣ୍ଡାୟମାନ କରାଯାଉଥିଲା, ତେତେବେଳେ ସେମାନଙ୍କୁ ମଦ୍ୟପାନ କରିବାକୁ ଦିଆଯାଇଥିଲା । ସେତେବେଳେ ମାଦକତାରେ ଉନ୍ମତ୍ତ ହୋଇ ଭୀଷଣ ଭାବରେ ସେମାନେ ଶତ୍ରୁଙ୍କୁ ଆକ୍ରମଣ କରୁଥିଲେ ଓ ଶତ୍ରୁଗଣ ଯୁଦ୍ଧଭୂମିରୁ ପଳାୟନ କରୁଥିଲେ । ଏହି ବଳ ଉପରେ ନିର୍ଭର କରି ସେ ସୀମାନ୍ତବର୍ତ୍ତୀ-ଶକ୍ତିସମୂହ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରୁଥିଲେ ।

ରାଜା ଶୀଳାଦିତ୍ୟ ତାହାଙ୍କ ସେନାପତିଙ୍କ ଯୁଦ୍ଧକୌଶଳ ଓ ସ୍ୱକୀୟ ଶକ୍ତିରେ ଗର୍ବିତ ହୋଇ ମହାରାଷ୍ଟ୍ର ନରପତିଙ୍କ * ବିରୁଦ୍ଧରେ ସୈନ୍ୟ ଚାଳନା କଲେ; କିନ୍ତୁ ତାହାଙ୍କୁ ପରାସ୍ତ କରି ପାରିଲେ ନାହିଁ ।

* ଏହି ନରପତିଙ୍କ ନାମ ପୁଲକେଶୀ

ଏହି ସ୍ଥାନରେ ଏକଶତ ସଂଘାରାମ ଥିଲା ଓ ତହିଁରେ ହୀନଯାନ ଓ ମହାଯାନାବଲମ୍ବୀ ପାଞ୍ଚ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ଏଠାରେ ଅସଂଖ୍ୟ ଦେବପୂଜକ ଧର୍ମବିରୋଧୀ ମଧ୍ୟ ବାସ କରୁଥିଲେ । ସେମାନେ ଶରୀରରେ ଭସ୍ମ ବିଲେପନ କରୁଥିଲେ । ରାଜଧାନୀ ଭିତରେ ଓ ବାହାରେ ପାଞ୍ଚଗୋଟି ଅତ୍ୟୁଚ୍ଚ ସ୍ତୂପ ଥିଲା । ଏଠାରେ ଚତୁର୍ବୁଦ୍ଧଙ୍କ ପାଦ ଚାରଣର ସ୍ମାରକ ସ୍ୱରୂପ ଅଶୋକ ଏହି ସ୍ତୂପଗୁଡ଼ିକ ନିର୍ମାଣ କରି-ଥିଲେ ।

ଏହି ରାଜ୍ୟରୁ ଏକଶତ ଲି ଉତ୍ତର-ପଶ୍ଚିମକୁ ନର୍ମଦା ନଦୀ ଅତିକ୍ରମ କଲେ ବ୍ରୋଚ ରାଜ୍ୟ ଓ ବ୍ରୋଚରୁ ଦୁଇ ସହସ୍ର ଲି ଉତ୍ତର-ପଶ୍ଚିମ ଦିଗରେ ମାଳବ ଦେଶ । ଏହି ଦେଶର ଅଧିବାସୀମାନେ ଅତ୍ୟନ୍ତ ଶିଷ୍ଟାଚାରପରାୟଣ ଓ ସୂକ୍ଷ୍ମକଳାର ଅତ୍ୟନ୍ତ ପକ୍ଷପାତୀ । ଭାରତବର୍ଷ ମଧ୍ୟରେ ଦକ୍ଷିଣ-ପଶ୍ଚିମ ପାର୍ଶ୍ୱସ୍ଥ ମାଳବ ଓ ତହିଁର ଉତ୍ତର-ପୂର୍ବ ପାର୍ଶ୍ୱସ୍ଥ ମଗଧ ସାହିତ୍ୟାନୁରାଗ, ପରୋପକାର, ଶିଷ୍ଟାଚାର ଓ ମିଷ୍ଟାଳାପ ସକାଶେ ବିଖ୍ୟାତ ।

ଏହି ଦେଶରେ ଏକଶତ ସଂଘାରାମ ଥିଲା ଓ ତହିଁରେ ବିଂଶ ସହସ୍ର ସନ୍ନ୍ୟାସୀ ବାସ କରୁଥିଲେ । ସେମାନେ ସମସ୍ତେ ହୀନଯାନ ଅଧ୍ୟୟନ କରୁଥିଲେ ଓ ସମ୍ମତୀୟ ମତାବଲମ୍ବୀ ଥିଲେ । ଆଉ ମଧ୍ୟ ସେଠାରେ ଅସଂଖ୍ୟ ଦେବପୂଜକ ଭସ୍ମବିଲେପିତ ଧର୍ମବିରୋଧୀ ଥିଲେ । କଥିତ ଅଛି ଯେ, ୬୦ବର୍ଷ ପୂର୍ବେ ଶୀଲାଦିତ୍ୟ ନାମକ ଏକ ଅସାଧାରଣ ଶକ୍ତିସମ୍ପନ୍ନ ମେଧାବୀ ସୁପଣ୍ଡିତ ନରପତି ଥିଲେ । ସେ ଅତ୍ୟନ୍ତ ଦୟାଳୁ, ସ୍ନେହପରାୟଣ, ଉଦାରଚେତା ଓ ପ୍ରଜାବତ୍ସଳ ଥିଲେ । ପ୍ରଥମରୁ ସେ ରତ୍ନ ଅମୂଲ୍ୟ ଧର୍ମତତ୍ତ୍ୱ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ । ସିଂହା-ସନରେ ଆରୋହଣ କରିବା ଦିବସରୁ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ କଦାପି ତାଙ୍କ ମୁଖରେ କୁବାକ୍ୟ ଉଚ୍ଚାରିତ କିମ୍ବା କ୍ରୋଧରେ ତାହାଙ୍କ ମୁଖ-

ମଣ୍ଡଳ ଆରକ୍ତ ହୋଇ ନ ଥିଲା । ତାହାଙ୍କ ପାରିଷଦବର୍ଗ ଓ ଗ୍ରାଣୀ-ମାନଙ୍କ ପ୍ରତି ସେ ସଦୟ ଭାବ ପୋଷଣ କରୁଥିଲେ । କ୍ଷୁଦ୍ର ମକ୍ଷିକା ବା ପିପୀଲିକା ମଧ୍ୟ ତାହାଙ୍କ ହସ୍ତରେ ଆଘାତପ୍ରାପ୍ତ ହେଉ ନ ଥିଲା । କାଳେ ପାନୀୟ ଜଳସ୍ଥିତ କୀଟର ଜୀବନ ବିନଷ୍ଟ ହେବ, ଏହି ଭୟରେ ସେ ଅଶ୍ୱ ଓ ହସ୍ତୀମାନଙ୍କୁ ସୁଦ୍ଧା ଜଳ ଛଣାଇ ପାନ କରିବାକୁ ଦେଉଥିଲେ । ସେ ପ୍ରଜାମାନଙ୍କୁ ଜୀବବଧ ନ କରିବାକୁ ଉପଦେଶ ଦେଉଥିଲେ; ତେଣୁକରି ମରୁଭୂମିର ଜୀବଗଣ ମନୁଷ୍ୟମାନଙ୍କ ପ୍ରତି ଅନୁରକ୍ତ ହେଲେ ଓ ହିଂସ୍ର ଜନ୍ତୁଗଣ ହିଂସା ପରିହାର କଲେ । ରାଜ୍ୟବାସିଗଣ ଶାନ୍ତିରେ କାଳ ଯାପନ କରିବାକୁ ଲାଗିଲେ ଓ ରାଜ୍ୟ କ୍ରମେ ସମୃଦ୍ଧିଶାଳୀ ହେବାକୁ ଲାଗିଲା । ସେ ସ୍ଥାନେ ସ୍ଥାନେ ସୁବୃହତ୍ ଧର୍ମଶାଳାମାନ ନିର୍ମାଣ କରାଇ ତହିଁରେ ସପ୍ତ ବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ସେ ମୋକ୍ଷ (ମହାପରିଷଦ) ମଣ୍ଡଳୀ ଆହ୍ୱାନ କରିଥିଲେ ।

ଏହି ପ୍ରକାର ସେ ପଞ୍ଚାଶ ବର୍ଷକାଳ ସିଂହାସନରେ ଅଧିରୂଢ଼ ରହି ଅବିଶ୍ରାନ୍ତ ଭାବରେ ମଙ୍ଗଳକର କାର୍ଯ୍ୟସମୂହ ନିର୍ବାହ କରି ପ୍ରଜାରଞ୍ଜନ କଲେ । ତାହାଙ୍କ ସ୍ମୃତି ଅଦ୍ୟାପି ପୂଜିତ ହେଉଅଛି ।

ରାଜଧାନୀର କୋଡ଼ିଏ ଲି ଉତ୍ତର-ପଶ୍ଚିମକୁ ବ୍ରାହ୍ମଣପୁର ସନ୍ନିକଟରେ ଏକ ଗଭୀର ପରିଖା ଥିଲା । ଏହି ସ୍ଥାନରେ ଏକ ଗର୍ବିତ ବ୍ରାହ୍ମଣ ମହାଯାନକୁ ବିନଷ୍ଟ କରିବା ଅଭିପ୍ରାୟରେ ଏହାକୁ ନିନ୍ଦା କରି ନରକ-ଗାମୀ ହୋଇଥିଲେ ।

---

## ଉଜ୍ଜୟିନୀପତି ଶୀଳାଦିତ୍ୟଙ୍କ ବଲ୍ଲଭୀ ପ୍ରଦେଶ

ଏହି ସ୍ଥାନରୁ ପଚାଶ ଲି ଉତ୍ତର-ପଶ୍ଚିମକୁ ଅଟାଳି ରାଜ୍ୟ ଅବସ୍ଥିତ । ଏଠାରେ ବହୁସଂଖ୍ୟକ ହୁସିଆନ୍ ଓ ସୌରଭମୟ ଟଗର ବୃକ୍ଷ ଥିଲା । ଏହିଠାରୁ ଉତ୍ତର-ପଶ୍ଚିମକୁ ଗଲେ କ-ଚ୍ଛ ରାଜ୍ୟ ଓ ଜନପଦର ପଥ ଏବଂ

କ-ସ୍ଥରୁ ଏକ ଶତ ଲି ଉତ୍ତରକୁ ବଲ୍ଲଭୀରାଜ୍ୟ * ଅବସ୍ଥିତ । ଏଠାରେ ଏକଶତ ସଂଘାରାମ ଥିଲା ଓ ତହିଁରେ ଛଅ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେମାନେ ସମସ୍ତେ ସମ୍ମତୀୟ ମତାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ ।

ତଥାଗତ ତାହାଙ୍କ ଜୀବନ କାଳରେ ଏହି ସ୍ଥାନରେ ବାରମ୍ବାର ଅବସ୍ଥାନ କରୁଥିଲେ ଓ ସେ ଯେଉଁ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲେ ଅଶୋକ ଉକ୍ତ ସ୍ଥାନରେ ସ୍ମାରକ ସ୍ତମ୍ଭ ନିର୍ମାଣ କରାଇ-ଥିଲେ । ଏହି ରାଜ୍ୟର ବର୍ତ୍ତମାନ ନରପତି କ୍ଷତ୍ରିୟ । ସେ କାନ୍ୟକୁବ୍ଜ ନରପତି ଶୀଲାଦିତ୍ୟଙ୍କ ଜାମାତା ଓ ତାହାଙ୍କ ନାମ ଧ୍ରୁବଭଟ୍ଟ । ସେ ଚଞ୍ଚଳମତିସମ୍ପନ୍ନ, ଶିଷ୍ଟତାହୀନ ଓ ଅଲକ୍ଷଣ ମଧ୍ୟରେ ଉତ୍ତେଜିତ ହୋଇ ପଡ଼ୁଥିଲେ । କିନ୍ତୁ ସେ ସାଧୁ ଓ ବିଦ୍ୟାନୁରାଗୀ । ସେ ତ୍ରିଧନ ପ୍ରତି ଅତ୍ୟନ୍ତ ଅନୁରକ୍ତ । ପ୍ରତିବର୍ଷ ସେ ଏକ ବୃହତ୍ ସଭା ଆହ୍ୱାନ କରୁଥିଲେ ଓ ସପ୍ତ ଦିବସ କାଳ ପଣ୍ଡିତ ଏବଂ ସନ୍ନ୍ୟାସିଗଣଙ୍କୁ ଅର୍ଚ୍ଚନାପୂର୍ବକ ଆହାର, ଧନ ରତ୍ନ, ବସ୍ତ୍ର ଓ ଅନ୍ୟାନ୍ୟ ଦ୍ରବ୍ୟ ବିତରଣ କରୁଥିଲେ ।

ଏହିଠାରୁ ସାତ ଶହ ଲି ଉତ୍ତର-ପଶ୍ଚିମକୁ ଆନନ୍ଦପୁର, * ଆନନ୍ଦପୁରରୁ ପାଞ୍ଚ ଶହ ଲି ଉତ୍ତର-ପଶ୍ଚିମକୁ ସୌରାଷ୍ଟ୍ର, ସୌରାଷ୍ଟ୍ରରୁ ଅଠର ଶହ ଲି ଉତ୍ତର-ପୂର୍ବକୁ ଗୁର୍ଜ୍ଜର, ଗୁର୍ଜ୍ଜରରୁ ଅଠେଇଶ ଶହ ଲି ଦକ୍ଷିଣ-ପୂର୍ବକୁ ଉଜ୍ଜୟିନୀ ଅବସ୍ଥିତ । ଉଜ୍ଜୟିନୀର ଅନତିଦୂରରେ ଏକ ସ୍ତୂପ ଥିଲା । ଏହି ସ୍ଥାନରେ ଅଶୋକ ନରକ (ଦଣ୍ଡଭୂମି) ନିର୍ମାଣ କରାଇଥିଲେ ।

ବଲ୍ଲଭୀ—ଆଧୁନିକ ଗୁଜରାଟ
ଆନନ୍ଦପୁର—ଆଧୁନିକ ବଡ଼ନଗର

ଏହି ସ୍ଥାନରୁ ଏକ ସହସ୍ର ଲି ଉତ୍ତର-ପୂର୍ବକୁ ଟକକ ଦେଶ ଓ ଟକକଠାରୁ ନଅ ଶହ ଲି ଉତ୍ତର-ପୂର୍ବକୁ ମହେଶ୍ବର ପୁର ✤ । ଏହିଠାରୁ ପଶ୍ଚିମାଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ ସୁରଥ ଦେଶ । ସୁରଥଠାରୁ ପଶ୍ଚିମାଭିମୁଖରେ ଗମନ କଲେ ଅତ୍ୟନବକେଳ ରାଜ୍ୟ । ତଥାଗତଙ୍କ ଜୀବନ-କାଳରେ ସେ ପୁନଃ ପୁନଃ ଏହିଠାରେ ଅବସ୍ଥାନ କରୁଥିଲେ ଓ ତାହାଙ୍କ ଅଧ୍ୟୁଷିତ ସମସ୍ତ ସ୍ଥାନରେ ଅଶୋକ ସ୍ତୂପ ନିର୍ମାଣ କରାଇଥିଲେ । ସେ ସମସ୍ତ ଅଦ୍ୟାପି ବିଦ୍ୟମାନ ଅଛି ।

ଏହିଠାରୁ ଦୁଇ ସହସ୍ର ଲି ପଶ୍ଚିମକୁ ଲଙ୍ଗଲ * ଦେଶ । ଏହା ସମୁଦ୍ର ଉପକୂଳ ଓ ପଶ୍ଚିମାଞ୍ଚଳସ୍ଥ ନାରୀ ଦେଶ ନିକଟବର୍ତ୍ତୀ ।

ଏହିଠାରୁ ଉତ୍ତର-ପଶ୍ଚିମ ଦିଗରେ ପାରସ୍ୟ ଦେଶ । ଏହା ଭାରତବର୍ଷର ଅନ୍ତର୍ଗତ ଥିଲା । କଥିତ ଅଛି ଯେ, ଏହି ଦେଶ ମୁକ୍ତା, ରେଶମ ଓ ପଶମ ପ୍ରଭୃତି ବହୁମୂଲ୍ୟ ଦ୍ରବ୍ୟ ଓ ମେଷ, ଅଶ୍ବ, ଉଷ୍ଟ୍ର ଇତ୍ୟାଦି ଜନ୍ତୁରେ ପରିପୂର୍ଣ୍ଣ । ଏହିଠାରେ ଦୁଇ ତିନିଗୋଟି ସଂଘାରାମ ଥିଲା ଓ ତହିଁରେ ଏକଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେମାନେ ସର୍ବାସ୍ତିବାଦୀ ମତାନୁଯାୟୀ ହୀନଯାନ ଅଧ୍ୟୟନ କରୁଥିଲେ । ଶାକ୍ୟ ବୁଦ୍ଧଙ୍କ ଭିକ୍ଷାପାତ୍ର ଏହି ଦେଶର ରାଜପ୍ରାସାଦରେ ରକ୍ଷିତ ହୋଇଥିଲା । ଏହି ଦେଶର ପୂର୍ବସୀମା ଓ ବେବଲୋନ୍ ଦେଶର ଉତ୍ତର-ପଶ୍ଚିମ ସୀମାରେ ଅର୍ମ୍ମସ ସହର ଅବସ୍ଥିତ ଥିଲା । ଦକ୍ଷିଣ-ପଶ୍ଚିମ ପାର୍ଶ୍ବରେ ଏକ ଦ୍ଵୀପ ଥିଲା ଓ ତାହା ପଶ୍ଚିମ ନାରୀମାନଙ୍କ ଆବାସସ୍ଥଳ ଥିଲା । ଏହି ନାରୀମାନଙ୍କର ପୁତ୍ର ନ ଥିଲେ । ଏହି ଦ୍ଵୀପ ବହୁମୂଲ୍ୟ ଦ୍ରବ୍ୟରେ ପରିପୂର୍ଣ୍ଣ ହୋଇଥିଲା । ଏହି ରାଜ୍ୟ ବେବଲୋନ ଅଧୀନରେ ଥିଲା । ବେବଲୋନ୍ ନରପତି ପ୍ରତିବର୍ଷ ଏହି ସ୍ଥାନର ନାରୀମାନଙ୍କ ନିକଟକୁ ପୁରୁଷ

✤ ମହେଶ୍ବରପୁର—ନର୍ମଦାତୀରବର୍ତ୍ତୀ-ମାହିଷ୍ମତୀପୁର

* ଲଙ୍ଗଲ—ଆଧୁନିକ କେଲାତ୍ ରାଜ୍ୟ ।

ପ୍ରେରଣ କରୁଥିଲେ । ପୁତ୍ର ଜାତ ହେଲେ ସେମାନେ ସେମାନଙ୍କ ଯତ୍ନ କର୍ ନ ଥିଲେ । ସୁତରାଂ ପୁତ୍ରଗଣ ଅକାଳରେ ପ୍ରାଣତ୍ୟାଗ କରୁଥିଲେ ।

ଲମ୍ଘାଲ ଦେଶରୁ ସାତ ଶହ ଲି ଉତ୍ତର-ପୂର୍ବକୁ ପିଡାଶିଲା ରାଜ୍ୟ । ଏଠାରେ ଅଶୋକଙ୍କ ନିର୍ମିତ ଏକ ଅତ୍ୟୁଚ୍ଚ ସ୍ତୂପ ଥିଲା । ତନ୍ମଧ୍ୟରେ ରକ୍ଷିତ ପଦାର୍ଥଗୁଡ଼ିକରୁ ସବୁବେଳେ ଉଜ୍ଜ୍ୱଳ ଆଲୋକ ନିର୍ଗତ ହେଉଥାଏ । ତଥାଗତ ଯେତେବେଳେ ଋଷ ରୂପରେ ଜନ୍ମ ଗ୍ରହଣ କରୁଥିଲେ, ଏହି ଦେଶର ରାଜା ତାହାଙ୍କୁ ହତ୍ୟା କରୁଥିଲେ ।

ଏହିଠାରୁ ତିନିଶତ ଲି ଉତ୍ତର-ପୂର୍ବକୁ ଅଭଣ୍ଡ ଦେଶ ଅବସ୍ଥିତ । ରାଜଧାନୀର ଉତ୍ତର-ପୂର୍ବବର୍ତ୍ତୀ ବୃହତ୍ ଅରଣ୍ୟ ମଧ୍ୟରେ ଏକ ସଂଘାରାମର ଭଗ୍ନାବଶେଷ ଥିଲା । ଏଠାରେ ଅବସ୍ଥିତି କାଳରେ ବୁଦ୍ଧ ଭିକ୍ଷୁଗଣଙ୍କୁ ଚର୍ମପାଦୁକା ବ୍ୟବହାର କରିବାକୁ ଅନୁମତି ପ୍ରଦାନ କରିଥିଲେ । ଏଠାରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଓ ତନ୍ନିକଟରେ ଏକ ବିହାର ଥିଲା । ତନ୍ମଧ୍ୟରେ ନୀଳବର୍ଣ୍ଣ ପ୍ରସ୍ତର-ନିର୍ମିତ ବୁଦ୍ଧଙ୍କ ଦଣ୍ଡାୟମାନ ମୂର୍ତ୍ତି ରକ୍ଷିତ ହୋଇଥିଲା । ଉକ୍ତ ମୂର୍ତ୍ତିରୁ ସର୍ବଦା ଉଜ୍ଜ୍ୱଳ ଆଲୋକ ନିର୍ଗତ ହେଉଥାଏ ।

ଏହିଠାରୁ ୮୦୦ ପାଦ ଦକ୍ଷିଣକୁ ଏକ ବୃହତ୍ ଅରଣ୍ୟ ମଧ୍ୟରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା । ଏକଦା ତଥାଗତ ଏହି ସ୍ଥାନରେ ଅବସ୍ଥାନ କରୁଥିବା ସମୟରେ ଦିନେ ଶୀତ କାଳର ରାତିରେ ଉପର୍ଯ୍ୟୁପରି ତିନିଖଣ୍ଡ ବସ୍ତ୍ରରେ ଆଚ୍ଛାଦିତ ହୋଇଥିଲେ । ପରଦିନ ପ୍ରାତଃକାଳରେ ସେ ଭିକ୍ଷୁଗଣଙ୍କୁ ଉକ୍ତ ବସ୍ତ୍ର ବ୍ୟବହାର କରିବା ସକାଶେ ଅନୁମତି ପ୍ରଦାନ କରିଥିଲେ ।

---

## ସିନ୍ଧୁଦେଶ

ଏହିଠାରୁ ସାତ ଶତ ଲି ପୂର୍ବକୁ ସିନ୍ଧୁଦେଶ ଅବସ୍ଥିତ । ଏହି ଦେଶରେ ପ୍ରଚୁର ପରିମାଣରେ ସ୍ୱର୍ଣ୍ଣ, ରୌପ୍ୟ, କୃଷ୍ଣପ୍ରସ୍ତର, ଗୋରୁ, ମେଷ, ଉଷ୍ଟ୍ର ଓ ରକ୍ତ, ଶ୍ୱେତ ଓ କୃଷ୍ଣ ଲବଣ ପ୍ରଭୃତି ଦ୍ରବ୍ୟ ଉତ୍ପନ୍ନ ହେଉଥିଲା । କୃଷ୍ଣ ଲବଣ ବିଭିନ୍ନ ସ୍ଥାନରେ ଔଷଧ ପ୍ରସ୍ତୁତ କରିବାରେ ବ୍ୟବହୃତ ହୁଏ । ବୁଦ୍ଧଦେବଙ୍କ ଜୀବଦ୍ଦଶାରେ ସେ ଏଠାରେ ବହୁବାର ଅବସ୍ଥାନ କରିଥିଲେ । ତାହାଙ୍କ ସମସ୍ତ ଆବାସ ସ୍ଥାନରେ ଅଶୋକ ସ୍ମାରକସ୍ତୂପମାନ ନିର୍ମ୍ମାଣ କରାଇଥିଲେ । ପ୍ରଧାନ ଆର୍ହତ ଉପଗୁପ୍ତ ଏହି ଦେଶବାସୀଙ୍କୁ ବୌଦ୍ଧ ଧର୍ମ୍ମରେ ଦୀକ୍ଷିତ କରିବା ସକାଶେ ବ୍ୟାପୃତ ଥିବା ସମୟରେ ଏଠାରେ ଅବସ୍ଥାନ କରୁଥିଲେ ।

ଏହିଠାରୁ ନଅଶତ ଲି ପୂର୍ବରେ ନଦୀର ପୂର୍ବକୂଳ ପାରି ହୋଇଗଲେ ମୂଳସ୍ଥାନପୁର ବା ମୁଲ୍‌ତାନ୍ । ଏହି ସ୍ଥାନର ଅଧିବାସୀ-ମାନେ ଦେବ ସମ୍ମୁଖରେ ବଳି ପ୍ରଦାନ କରୁଥିଲେ ଓ ସୂର୍ଯ୍ୟଦେବଙ୍କୁ ପୂଜା କରୁଥିଲେ । ସୂର୍ଯ୍ୟଙ୍କ ମୂର୍ତ୍ତି ବିଶୁଦ୍ଧ ସ୍ୱର୍ଣ୍ଣରେ ନିର୍ମିତ ଓ ତହିଁରେ ବହୁମୂଲ୍ୟ ପ୍ରସ୍ତର ଖଚିତ ହୋଇଥିଲା । ପାର୍ଶ୍ୱବର୍ତ୍ତୀ ବହୁ ଦେଶବାସୀ ଲୋକେ ତାହାଙ୍କୁ ପୂଜା କରିବା ସକାଶେ ଏଠାକୁ ଆଗମନ କରୁଥିଲେ । କୁସୁମମଣ୍ଡିତ ବନାନୀ ଓ ପୁଷ୍କରିଣୀ, ସୁରୁଚିସଙ୍ଗତ ଭାବରେ ସନ୍ନିବିଷ୍ଟ ଗୃହାବରଣ ଓ ପାଦପଶ୍ରେଣୀର ଦୃଶ୍ୟାବଳୀ ଦର୍ଶକର ହୃଦୟରେ ଅପାର ଆନନ୍ଦ ଜାତ କରୁଥିଲା ।

ଏହିଠାରୁ ସାତଶତ ଲି ଉତ୍ତର-ପୂର୍ବକୁ ପର୍ବତ ରାଜ୍ୟ । ରାଜଧାନୀ ନିକଟରେ ଏକ ସଂଘାରାମ ଥିଲା ଓ ତହିଁରେ ଏକଶତ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ଓ ସେମାନେ ସମସ୍ତେ ମହାଯାନ ଅଧ୍ୟୟନ କରୁଥିଲେ । ଏଠାରେ ସର୍ବଶାସ୍ତ୍ରବିଶାରଦ ଜିନପୁତ୍ର ଯୋଗାଚାର୍ଯ୍ୟ ଭୂମି-ଶାସ୍ତ୍ରକାରିକା ପ୍ରଣୟନ କରିଥିଲେ ଓ ଶାସ୍ତ୍ରଙ୍କ ଭଦ୍ରରୁଚି ଓ ଗୁଣପ୍ରଭ ସର୍ବପ୍ରଥମରେ ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଏହିଠାରେ ଦୁଇ ଜନଜଣ ସର୍ବଶାସ୍ତ୍ରଜ୍ଞ ସନ୍ନ୍ୟାସୀ ବାସ କରୁଥିବାରୁ ତାହାଙ୍କ ନିକଟରେ ହୁଏନ୍‌ସାଂ ଦୁଇବର୍ଷ କାଳ ଅବସ୍ଥାନ କରି ସମ୍ମତୀୟ ମତାନୁଯାୟୀ ମୂଳାଭିଧର୍ମଶାସ୍ତ୍ର, ସଦ୍ଧର୍ମସମ୍ପରିଗ୍ରହ ଶାସ୍ତ୍ର ଓ ପ୍ରଶିକ୍ଷା ସତ୍ୟ ଶାସ୍ତ୍ର ଅଧ୍ୟୟନ କଲେ ।

ଏହିଠାରୁ ହୁଏନ୍‌ସାଂ ଦକ୍ଷିଣ-ପୂର୍ବ ମାର୍ଗରେ ମଗଧକୁ ପ୍ରତ୍ୟାବର୍ତ୍ତନ କରି ପୁନର୍ବାର ନାଳନ୍ଦ ମଠରେ ଉପସ୍ଥିତ ହେଲେ । ଏଠାରେ ସେ ଶଂ-ଫା-ସୋଂ ନାମକ ଧର୍ମାଚାର୍ଯ୍ୟଙ୍କ ସହିତ ସାକ୍ଷାତ୍ କଲେ । ତପ୍ରରେ ଶୁଣିଲେ ଯେ, ସେହିଠାରୁ ପଶ୍ଚିମ ଦିଗକୁ ତିନଯୋଜନ ଦୂରବର୍ତ୍ତୀ ତିଲଢ଼ାକ ମଠରେ ବାଳପତିନବାସୀ ପ୍ରଜ୍ଞାଭଦ୍ର ନାମକ ଏକ ପ୍ରସିଦ୍ଧ ଆଚାର୍ଯ୍ୟ ଅବସ୍ଥାନ କରୁଅଛନ୍ତି ଓ ସେ ସର୍ବାସ୍ତିବାଦୀ ସମ୍ପ୍ରଦାୟ-ଭୁକ୍ତ ହୋଇଅଛନ୍ତି ।

ପ୍ରଜ୍ଞାଭଦ୍ର ତ୍ରିପିଟକ, ଶବ୍ଦବିଦ୍ୟା, ହେତୁବିଦ୍ୟା ଓ ଅନ୍ୟାନ୍ୟ ଶାସ୍ତ୍ର ଜ୍ଞାନରେ ପ୍ରସିଦ୍ଧି ଲାଭ କରିଥିଲେ । ହୁଏନ୍‌ସାଂ ତାହାଙ୍କ ନିକଟରେ ଦୁଇମାସ ଅବସ୍ଥାନ କରି, ନାନା ବିଷୟରେ ପୁଙ୍ଖାନୁପୁଙ୍ଖରୂପେ ବହୁ ପ୍ରଶ୍ନ ଜିଜ୍ଞାସାପୂର୍ବକ ତାହାଙ୍କ ସନ୍ଦେହ ମୋଚନ କରିଥିଲେ ।

---

## ସୂର୍ଯ୍ୟଦେବ—କ୍ଷତ୍ରିୟ ଜୟସେନ

ଏହିଠାରୁ ପୁନର୍ବାର ସେ ଯଷ୍ଟିବନ ପର୍ବତକୁ ଗମନ କରି ଜୟସେନ ନାମକ ଗୃହସ୍ଥଙ୍କ ସହିତ କିଛି କାଳ ଯାପନ କଲେ । ଜୟସେନ ସୁରଠ ନିବାସୀ କ୍ଷତ୍ରିୟକୁଳସମ୍ଭୂତ ଓ ସେ ବହୁଶାସ୍ତ୍ର ପ୍ରଣୟନ କରିଥିଲେ । ଯୌବନରେ ସେ ଅଧ୍ୟୟନନିରତ ହୋଇ ପ୍ରଥମରେ ସର୍ବଶାସ୍ତ୍ର ପାରଦର୍ଶୀ ଭଦ୍ରରୁଚିଙ୍କଠାରୁ ହେତୁବିଦ୍ୟା ଶାସ୍ତ୍ର ଓ ତପ୍ରରେ ସ୍ଥିତମତି ବୋଧିସତ୍ତ୍ୱଙ୍କଠାରୁ ହୀନଯାନ ଏବଂ ମହାଯାନବିଦ୍ୟା ଶବ୍ଦବିଦ୍ୟା

ଓ ଅନ୍ୟାନ୍ୟ ଶାସ୍ତ୍ର, ଶୀଲଭଦ୍ରଙ୍କଠାରୁ ଯୋଗଶାସ୍ତ୍ର ଅଧ୍ୟୟନ କରି-ଥିଲେ । ପୁଣି ସେ ଚତୁର୍ବେଦ, ଜ୍ୟୋତିଷ, ଭୂଗୋଳ, ଚିକିତ୍ସା ଶାସ୍ତ୍ର, ଇନ୍ଦ୍ରଜାଲ, ଗଣିତ ପ୍ରଭୃତି ସମସ୍ତ ଶାସ୍ତ୍ର ଆମୂଳ ଅଧ୍ୟୟନ କରି ସେ ସମସ୍ତ ଏତେ ଆୟତ୍ତ କରିଥିଲେ ଯେ, ତାହାଙ୍କ ପ୍ରଶଂସା ଚତୁର୍ଦ୍ଦିଗରେ ବିଘୋଷିତ ହୋଇଥିଲା ।

ଏହି ସମୟରେ ମଗଧ ନରପତି ପୂର୍ଣ୍ଣବର୍ମା ପଣ୍ଡିତ ଓ ଋଷି-ମାନଙ୍କୁ ଅତ୍ୟନ୍ତ ସମ୍ମାନ କରୁଥିଲେ । ସେ ଜୟସେନଙ୍କ ପାଣ୍ଡିତ୍ୟ ବିଷୟ ଅବଗତ ହୋଇ ଅତ୍ୟନ୍ତ ପ୍ରୀତ ହେଲେ ଓ ତାହାଙ୍କୁ ରାଜ-ଧାନୀକୁ ନିମନ୍ତ୍ରଣ କରି ଆଣିବା ସକାଶେ ଦୁଇଜଣ ଦୂତ ପ୍ରେରଣ କଲେ । ପୁଣି ସେ ତାହାଙ୍କୁ ରାଜ୍ୟର ପ୍ରଧାନାଚାର୍ଯ୍ୟପଦରେ ବରଣ କରି, ତାହାଙ୍କ ଭରଣପୋଷଣ ସକାଶେ ବିଂଶ ସଂଖ୍ୟକ ନଗରର ରାଜସ୍ୱ ନିର୍ଦ୍ଦିଷ୍ଟ କରିଦେଲେ; କିନ୍ତୁ ଜୟସେନ ଏ ସମସ୍ତ ଗ୍ରହଣ କରିବାକୁ ଅସମ୍ମତ ହେଲେ । ପୂର୍ଣ୍ଣବର୍ମାଙ୍କ ମୃତ୍ୟୁ ଉତ୍ତାରେ ରାଜା ଶୀଲା-ଦିତ୍ୟ ପୁନର୍ବାର ତାହାଙ୍କୁ ନିମନ୍ତ୍ରଣ କରି ଆଣି ଉକ୍ତ ପଦ ଗ୍ରହଣ କରିବା ସକାଶେ ଅନୁରୋଧ କଲେ ଓ ଓଡ଼ିଶାର ଅଶୀତି ସଂଖ୍ୟକ ବୃହତ୍ ନଗରର ରାଜସ୍ୱ ନିର୍ଦ୍ଦିଷ୍ଟ କଲେ । ଜୟସେନ ଏହା ମଧ୍ୟ ପ୍ରତ୍ୟାଖ୍ୟାନ କଲେ । ଏଥିରେ ସମ୍ମତି ପ୍ରଦାନ କରିବା ସକାଶେ ରାଜା ତାହାଙ୍କୁ ବାରମ୍ବାର ଅନୁରୋଧ କଲେ । ତତ୍ପରେ ସେ ରାଜାଙ୍କୁ ସମ୍ବୋଧନ କରି କହିଲେ, "ଜୟସେନ ଶୁଣିଅଛି ଯେ, ଯେଉଁ ବ୍ୟକ୍ତି ସଂସାରଠାରୁ ଧନ ଗ୍ରହଣ କରେ, ତାହାକୁ ଅତ୍ୟନ୍ତ ବିଷୟାସକ୍ତ ହେବାକୁ ହୁଏ । ଜନ୍ମ ଓ ମୃତ୍ୟୁରୂପ ଶୃଙ୍ଖଳର ଅତ୍ୟାବଶ୍ୟକ ଗୁଣାଦି ବିଷୟରେ ଶିକ୍ଷାଦାନ କରିବା ବର୍ତ୍ତମାନ ମୋର ଉଦ୍ଦେଶ୍ୟ । ରାଜକାର୍ଯ୍ୟ ବିଷୟରେ ଅଭିଜ୍ଞତା ଲାଭ କରିବା ସକାଶେ ମୋର ଅବସର କାହିଁ ?" ଏହା କହି ସେ ସମ୍ମାନ-

ପୁରଃସର ପ୍ରଣତ ହୋଇ ସେଠାରୁ ବିଦାୟ ଗ୍ରହଣ କଲେ । ରାଜା ତାହାଙ୍କୁ କୌଣସି ପ୍ରକାରେ ରଖି ପାରିଲେ ନାହିଁ ।

---

## ହୁଏନ୍‌ସାଂଙ୍କ ସ୍ୱପ୍ନ-ଦର୍ଶନ

ସେହିଦିନଠାରୁ ସେ ଯଷ୍ଟିବନ ପର୍ବତରେ ନିରନ୍ତର ଅବସ୍ଥାନ କରି ଶିଷ୍ୟମାନଙ୍କୁ ବୌଦ୍ଧ ଧର୍ମତତ୍ତ୍ୱ ସମ୍ବନ୍ଧରେ ଶିକ୍ଷା ପ୍ରଦାନ କରିବାକୁ ଲାଗିଲେ । ଗୃହସ୍ଥ ଓ ସନ୍ନ୍ୟାସୀମାନଙ୍କ ମଧ୍ୟରେ ତାହାଙ୍କର ବହୁସଂଖ୍ୟକ ଶିଷ୍ୟ ଥିଲେ । ହୁଏନ୍‌ସାଂ ତାହାଙ୍କ ନିକଟରେ ଦୁଇ ବର୍ଷକାଳ ଅବସ୍ଥାନ କରି ବିଦ୍ୟାମାତ୍ର ସିଦ୍ଧି ଶାସ୍ତ୍ରର ଭାଷ୍ୟ ଓ ଇ-ଲି-ଲୁନ, ଶିଂ-ଇ-ଓ୍ୱାଇ-ଲୁନ୍, ପୁ-ଚୁ-ଲି-ପାନ୍, ଶି-ଇ-ୟିନ୍-ଉନ୍-ଲୁନ୍ ଓ ଚ୍ୱାଂ-ୟାନ୍,କାଂ-ଲୁନ୍ ଶାସ୍ତ୍ର ଅଧ୍ୟୟନ କଲେ । ଯୋଗଶାସ୍ତ୍ର ଓ ହେତୁବିଦ୍ୟା ଶାସ୍ତ୍ରସ୍ଥ ଯେ କେତେକାଂଶରୁ ତାହାଙ୍କ ସନ୍ଦେହ ମୋଚନ ହୋଇ ନ ଥିଲା, ତାହାଙ୍କ ମୁଖରୁ ତହିଁର ବ୍ୟାଖ୍ୟା ମଧ୍ୟ ଶ୍ରବଣ କଲେ ।

ଏହା ଉତ୍ତାରେ ଦିନେ ରାତିରେ ହଠାତ୍ ହୁଏନ୍‌ସାଂ ସ୍ୱପ୍ନରେ ଦେଖିଲେ ଯେ, ନାଳନ୍ଦ ମଠର କକ୍ଷ ଓ ପ୍ରାଙ୍ଗଣ ପ୍ରଭୃତି ସମସ୍ତ ସ୍ଥାନ ପରିତ୍ୟକ୍ତ ଓ ଦୂଷିତ ହୋଇଅଛି । ସେଠାରେ କେବଳ କେତେଗୁଡ଼ିଏ ଜଳମହିଷ ଆବଦ୍ଧ ହୋଇ ରହିଅଛନ୍ତି । ସନ୍ନ୍ୟାସୀ, ଭୃତ୍ୟ ଆଉ କେହି ନାହାନ୍ତି । ସେ ଦୂରବର୍ତ୍ତୀ ପଶ୍ଚିମ ମାର୍ଗରେ ବାଳାଦିତ୍ୟ ରାଜାଙ୍କ କକ୍ଷରେ ପ୍ରବିଷ୍ଟ ହୋଇ ଏକ ଚତୁସ୍ତଳ ମଣ୍ଡପର ଅଗ୍ରଦେଶରେ ଗମ୍ଭୀର ଓ କମନୀୟକାନ୍ତି ଏକ ସ୍ୱର୍ଣ୍ଣାଭ ପୁରୁଷଙ୍କୁ ଦେଖିଲେ । ହଠାତ୍ ମଠର ଚତୁର୍ଦ୍ଦିଗ ଆଲୋକରେ ଉଦ୍ଭାସିତ ହେଲା । ସେ ଆନନ୍ଦ-ଗଦ୍ଗଦ-ହୃଦୟରେ ମଣ୍ଡପଶିଖରକୁ ଆରୋହଣ କରିବାକୁ ଚେଷ୍ଟା କଲେ; କିନ୍ତୁ ମାର୍ଗ ପାଇଲେ ନାହିଁ । ତପ୍ପରେ ସେ ଉକ୍ତ ପୁରୁଷଙ୍କୁ ତାହାଙ୍କୁ ଘେନି

ଯିବା ପାଇଁ ଅନୁରୋଧ କଲେ; କିନ୍ତୁ ସେ ଉତ୍ତର କଲେ, "ମୁଁ ମଞ୍ଜୁଶ୍ରୀ ବୋଧିସତ୍ତ୍ୱ । ସେହି ସ୍ଥାନକୁ ଯିବା ସକାଶେ ତୁମ୍ଭର କର୍ମ ପର୍ଯ୍ୟାପ୍ତ ନୁହେଁ ।" ତତ୍ପରେ ମଠର ବହିର୍ଦ୍ଦେଶକୁ ଅଙ୍ଗୁଳି ସଙ୍କେତପୂର୍ବକ କହିଲେ, "ସେହି ଆଡ଼କୁ ଦୃଷ୍ଟିପାତ କର ।" ତାହାଙ୍କର ଅଙ୍ଗୁଳି-ନିର୍ଦ୍ଦିଷ୍ଟ ଦିଗକୁ ଦୃଷ୍ଟି ନିକ୍ଷେପ କରି ଦେଖିଲେ ଯେ, ମଠର ବହିର୍ଦ୍ଦେଶରେ ଭୟଙ୍କର ଅଗ୍ନି ପ୍ରଜ୍ୱଳିତ ହୋଇ ଗ୍ରାମ ଓ ନଗରସମୂହ ଭସ୍ମୀଭୂତ କରୁ-ଅଛି । ତତ୍ପରେ ଉକ୍ତ ସ୍ୱର୍ଣ୍ଣାଭ ପୁରୁଷ କହିଲେ, "ତୁମ୍ଭେ ଶୀଘ୍ର ଫେରି-ଯାଅ, ଯେହେତୁ ଦଶବର୍ଷ ପରେ ରାଜା ଶୀଲାଦିତ୍ୟ ମୃତ୍ୟୁମୁଖରେ ପତିତ ହେବେ, ଭାରତବର୍ଷ ଅରାଜକତାରେ ପୂର୍ଣ୍ଣହୋଇ ଛାରଖାର ହେବ, ଦୁଷ୍ଟ ଲୋକମାନେ ପରସ୍ପରକୁ ହତ୍ୟା କରିବେ । ମୋର ଏହି କଥା ମନେ ରଖିଥାଅ ।" ଏହା କହି ସେ ଅଦୃଶ୍ୟ ହେଲେ ।

ନିଦ୍ରା ଭଗ୍ନ ହେଲାରୁ ହୁଏନ୍‌ସାଂଙ୍କ ହୃଦୟ ଏକ ପ୍ରକାର ଆନନ୍ଦମୟ ଭାବରେ ପୂର୍ଣ୍ଣ ହେଲା । ତତ୍ପରେ ସେ ଜୟସେନଙ୍କ ନିକଟକୁ ଯାଇ ତାହାଙ୍କୁ ସ୍ୱପ୍ନବୃତ୍ତାନ୍ତ ଜ୍ଞାପନ କଲେ । ଜୟସେନ କହିଲେ, "ତ୍ରିଭୁବନରେ ଶାନ୍ତି ନାହିଁ । ତୁମ୍ଭେ ସ୍ୱପ୍ନରେ ଯାହା ଶୁଣିଲ, ତାହା ସମ୍ଭବ ହୋଇପାରେ । ତୁମ୍ଭେ ତ ଏହି ସମ୍ବାଦ ପ୍ରାପ୍ତ ହୋଇଅଛ; ସୁତରାଂ ଏଥିରେ ଦାୟିତ୍ୱ ତୁମ୍ଭର । ଏଥିରେ ତୁମ୍ଭେ କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଦ୍ଧାରଣ କରିବ ।" ଏଥିରୁ ଅନୁମିତ ହୁଏ ଯେ, ମହତ୍ ବ୍ୟକ୍ତିଙ୍କ କାର୍ଯ୍ୟକଳାପ ବୋଧିସତ୍ତ୍ୱ ପର୍ଯ୍ୟବେକ୍ଷଣ କରୁଥାନ୍ତି । ଭାରତବର୍ଷ ତ୍ୟାଗ କରିବା ବିଷୟ ଭାବନା କରି, ମୁଁ ଶୀଲଭଦ୍ରଙ୍କୁ ମୋର ଅଭିପ୍ରାୟ ଜ୍ଞାପନ କଲି । ଶୀଲଭଦ୍ର ମୋର ଅଭିପ୍ରାୟରେ ବାଧା ପ୍ରଦାନ କଲେ । ମୋର କିଂକର୍ତ୍ତବ୍ୟବିମୂଢ଼ାବସ୍ଥାରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନର ପ୍ରେରଣା-ସୂଚକ ମୃତ୍ୟୁ ବାର୍ତ୍ତାଟିକା ମୋର ହୃଦୟରେ ଜାଗ୍ରତ ହେଲା । ମୋର ଆଚରଣ ଯଦି ବୋଧିସତ୍ତ୍ୱଙ୍କ ଅଭିପ୍ରାୟାନୁରୂପ ହୋଇ ନ ଥାନ୍ତା, ତାହାହେଲେ ଏହା ସଂଘଟିତ ହୋଇଥାନ୍ତା କିପରି ?

ସୁଂ-ହ୍ୱି ଯୁଗାନ୍ତରେ ( ଅର୍ଥାତ୍ ୬୫୪-୫୫ ଖ୍ରୀଷ୍ଟାବ୍ଦରେ ) * ରାଜା ଶୀଲାଦିତ୍ୟ ଇହଧାମ ପରିତ୍ୟାଗ କଲେ ଓ ମଞ୍ଜୁଶ୍ରୀ ବୋଧିସତ୍ତ୍ୱଙ୍କ ଭବିଷ୍ୟଦ୍‌ବାଣୀ ଅନୁଯାୟୀ ଭାରତବର୍ଷ ଦୁର୍ଭିକ୍ଷରେ ଛାରଖାର ହେଲା । ଗାନ-ରାଜଦୂତ ଏହି ସମୟରେ ଭାରତବର୍ଷର ଅବସ୍ଥା ସ୍ୱଚକ୍ଷୁରେ ଦର୍ଶନ କରିବା ପାଇଁ ପ୍ରସ୍ତୁତ ହେଉଥିଲେ । ଏହା ପ୍ରଥମ ମାସର ଆରମ୍ଭ । ପଶ୍ଚିମାଞ୍ଚଳରେ ପ୍ରଚଳିତ ନିୟମାନୁଯାୟୀ ଏହି ମାସରେ ଗୟାର ବୋଧିମଠରୁ ବୁଦ୍ଧଙ୍କ ଶରୀର ଆନୀତ ହେଉଥିଲା । ଗୃହସ୍ଥ ଓ ସନ୍ନ୍ୟାସୀ ସମସ୍ତେ ଭିନ୍ନ ଭିନ୍ନ ଦେଶରୁ ଆସି ଏହି ଉତ୍ସବରେ ଯୋଗଦାନ କରନ୍ତି । ହୁଏନ୍‌ସାଂ ଜୟସେନଙ୍କ ସହିତ ବୁଦ୍ଧଙ୍କ ଅସ୍ଥି ଦର୍ଶନ କରିବା ମହାଶେ ଏହି ସ୍ଥାନକୁ ଗମନ କଲେ । ବୃହତ୍ ଓ କ୍ଷୁଦ୍ର ଉଭୟ ପ୍ରକାର ଅସ୍ଥି ଆନୀତ ହୋଇଥିଲା । ବୃହତ୍ ଅସ୍ଥିଗୁଡ଼ିକ ଗୋଲାକାର ମୁକ୍ତା ତୁଲ୍ୟ ଉଜ୍ଜ୍ୱଳ, ତେଜୋମୟ ଓ ଈଷତ୍ ରକ୍ତାଭ । କେତେଗୁଡ଼ିଏ ପିଣ୍ଡିକାକାର ଉଜ୍ଜ୍ୱଳ ରକ୍ତବର୍ଣ୍ଣ କ୍ଷୁଦ୍ର ମାଂସଖଣ୍ଡ ସୁଦ୍ଧା ଆନୀତ ହୋଇଥିଲା । ଅସଂଖ୍ୟ ଭକ୍ତ ଆସି ଏଠାରେ ଧୂପ ଓ ପୁଷ୍ପାଞ୍ଜଳି ପ୍ରଦାନ କଲେ ଏବଂ ଆରତି ଓ ପୂଜା ଉତ୍ତାରେ ପୁନର୍ବାର ସ୍ୱସ୍ଥାନକୁ ନେଇ ସ୍ତୂପ ମଧ୍ୟରେ ରକ୍ଷା କଲେ ।

---

## ଶରୀରର ଅଲୌକିକତ୍ୱ

ରାତିର ପ୍ରଥମ ପ୍ରହରରେ ହୁଏନ୍‌ସାଂ ଓ ଜୟସେନ ବୁଦ୍ଧଙ୍କ ବିଭିନ୍ନ ଶରୀରର ଅସମାନତା ବିଷୟରେ ଆଲୋଚନା କରୁଥିଲେ । ଜୟସେନ କହିଲେ, "ଆପଣଙ୍କ ଶିଷ୍ୟ ଭିନ୍ନ ଭିନ୍ନ ସ୍ଥାନରେ ତଣ୍ଡୁଳାକାର ଶରୀର ଦର୍ଶନ କରିଅଛନ୍ତି । ଏହି ଶରୀରଗୁଡ଼ିକ ଏତେ ବଡ଼ କାହିଁକି ? ସମ୍ମାନାସ୍ପଦ ମହୋଦୟ, ଏହି ବିଷୟରେ ଆପଣଙ୍କର କୌଣସି ସନ୍ଦେହ

* ଏହି ଯୁଗ ୭୫୭ ଖ୍ରୀଷ୍ଟାବ୍ଦରେ ଶେଷ ହେଲା ।

ଅଛି କି ?'' ହୁଏନ୍‌ସାଂ କହିଲେ, ''ଆପଣଙ୍କ ସହିତ ମୁଁ ଏହି ବିଷୟରେ ସନ୍ଦେହ ଭାଗୀ ।''

ଅଳ୍ପ ସମୟ ଉତ୍ତାରେ ଗୃହର ଆଲୋକସମୂହ ନିସ୍ତେଜ ହେଲା ଓ ଭିତର ତଥା ବାହାର ତେଜୋମୟ ଆଲୋକରେ ଉଦ୍ଭାସିତ ହେଲା । ସେ ବାହାରକୁ ଆସି ଦେଖିଲେ ଯେ ସ୍ତୂପ ସୂର୍ଯ୍ୟାଲୋକ ତୁଲ୍ୟ ଏକ-ପ୍ରକାର ଆଲୋକରେ ଉଦ୍ଭାସିତ ହୋଇଅଛି ଓ ସ୍ତୂପାଗ୍ରରୁ ପଞ୍ଚବର୍ଣ୍ଣ-ବିଶିଷ୍ଟ ଚଞ୍ଚଳ ଅଗ୍ନିଶିଖା ଉଦ୍ଭୂତ ହୋଇ ଗଗନ ସ୍ପର୍ଶ କରୁଅଛି । ଆକାଶ ଓ ପୃଥିବୀ ଆଲୋକରେ ସମୁଜ୍ଜ୍ୱଳ ହେଉଅଛି । ଚନ୍ଦ୍ର ଓ ତାରକାସମୂହ ମ୍ଳାନପ୍ରଭ ହୋଇଅଛନ୍ତି , ଗୃହ-ପ୍ରାଙ୍ଗଣ ସୁଗନ୍ଧରେ ଆମୋଦିତ ହେଉଅଛି ।

ତତ୍ପରେ ଲୋକମୁଖରେ ପ୍ରଚାରିତ ହେଲା ଯେ, ଶରୀରଗଣ ଅତି ଅଲୌକିକ କାଣ୍ଡ ପ୍ରଦର୍ଶନ କରୁଅଛନ୍ତି । ଏହା ଶ୍ରବଣ କରି ଲୋକେ ପୂଜା ପ୍ରଦାନପୂର୍ବକ ଭକ୍ତି-ଗଦ୍‌ଗଦ-ଚିତ୍ତରେ ବୁଦ୍ଧଙ୍କ ସ୍ତବ କରିବାକୁ ଲାଗିଲେ । କ୍ରମେ କ୍ରମେ ଆଲୋକ ନିସ୍ତେଜ ହୋଇ ଆସିଲା ଓ ଏକା-ବେଳକେ ନିର୍ବାପିତ ହେବା ପୂର୍ବମୁହୂର୍ତ୍ତରେ ଆଲୋକମଣ୍ଡଳ ବହୁବାର ସ୍ତୂପଚୂଡ଼ା ବେଷ୍ଟନ କରି ପରିଶେଷରେ ସ୍ତୂପ ମଧ୍ୟରେ ଲୀନ ହେଲା । ତନ୍ମୁହୂର୍ତ୍ତରେ ଆକାଶ ପୃଥିବୀ ମେଘାଚ୍ଛନ୍ନ ହେଲା ଓ ତାରକାଗଣ ପୁନର୍ବାର ଉଦିତ ହେଲେ । ଏହି ଅତ୍ୟଦ୍ଭୁତ ବ୍ୟାପାର ଦର୍ଶନ କରି ଲୋକେ ସନ୍ଦେହମୁକ୍ତ ହେଲେ । ସେମାନେ ସମସ୍ତେ ବୋଧିଦ୍ରୁମ ଓ ଦେହାବଶେଷ ପୂଜା କରି ଅଷ୍ଟ ଦିବସ ଉତ୍ତାରେ ପୁନର୍ବାର ନାଳନ୍ଦ ମଠକୁ ପ୍ରତ୍ୟାବୃତ୍ତ ହେଲେ ।

ଏହି ସମୟରେ ସର୍ବଶାସ୍ତ୍ର-ବିଶାରଦ ଶୀଲଭଦ୍ର ସନ୍ନ୍ୟାସିମଣ୍ଡଳୀ ସମ୍ମୁଖରେ ମହାଯାନ ସମ୍ପ୍ରଦାୟ ଶାସ୍ତ୍ର ଓ ବିଦ୍ୟାମାତ୍ର ସିଦ୍ଧି ଶାସ୍ତ୍ର ସମ୍ବନ୍ଧୀୟ ସଂଶୟ ବିଷୟରେ ବ୍ୟାଖ୍ୟାନ ଦେବା ସକାଶେ ହୁଏନ୍‌ସାଂଙ୍କୁ ପ୍ରେରଣ କଲେ । ସେତେବେଳେ ସିଂହରଶ୍ମି ନାମକ ଏକ ଖ୍ୟାତନାମା

ଆର୍ଯ୍ୟ ଯୋଗଶାସ୍ତ୍ରତତ୍ତ୍ୱ ଖଣ୍ଡନ କରିବା ଉଦ୍ଦେଶ୍ୟରେ ଚତୁଃଶ୍ରେଣୀ-ଭୁକ୍ତ ସନ୍ନ୍ୟାସିମଣ୍ଡଳୀ ସମ୍ମୁଖରେ ପ୍ରାଣ୍ୟମୂଳ ଶାସ୍ତ୍ର ଓ ନବ-ବିନ୍ୟସ୍ତ (ସଂଶୋଧିତ) ଶତଶାସ୍ତ୍ର ବ୍ୟାଖ୍ୟାନ କରୁଥିଲେ । ହୁଏନ୍‌ସାଂ ଅପରି-ସୀମ ସୌଜନ୍ୟସହକାରେ ପ୍ରାଣ୍ୟମୂଳ ଓ ଶତଶାସ୍ତ୍ର ସମ୍ବନ୍ଧରେ ପ୍ରତିକୂଳ ମତ ଓ ଯୋଗଶାସ୍ତ୍ର ସମ୍ବନ୍ଧରେ ଅନୁକୂଳ ମତ ବ୍ୟକ୍ତ କଲେ । ସେ କହିଲେ ଯେ, ଯେଉଁ ପବିତ୍ରାତ୍ମା ମହାପୁରୁଷଗଣ ଏହି ତତ୍ତ୍ୱସମୂହ ଆବିଷ୍କାର କରିଥିଲେ, ସେମାନଙ୍କ ମଧ୍ୟରେ କଦାପି ମତର ଅନୈକ୍ୟ ବିଦ୍ୟମାନ ନ ଥିଲା ; ତଥାପି ଯଦି ବିରୁଦ୍ଧ ମତ ପ୍ରକଟିତ ହୁଏ, ତାହା-ହେଲେ ତନ୍ନିମନ୍ତେ ପରବର୍ତ୍ତୀ ଗ୍ରନ୍ଥକାରଗଣ ଦୋଷୀ ; ତାହା ମୂଳ ତତ୍ତ୍ୱର ସତ୍ୟତା ବିନାଶ କରି ପାରିବ ନାହିଁ ।

ସିଂହରଶ୍ମିଙ୍କ ଏତାଦୃଶ ସଂକୀର୍ଣ୍ଣ ମତ ଯୋଗୁଁ ତାହାଙ୍କ ପ୍ରତି ଦୟାପରବଶ ହୋଇ ହୁଏନ୍‌ସାଂ ବାରମ୍ବାର ତାହାଙ୍କ ସହିତ ସାକ୍ଷାତ୍ କରି ନାନା ପ୍ରଶ୍ନ ଜିଜ୍ଞାସାପୂର୍ବକ ତାହାଙ୍କ ମତ ସଂଶୋଧନ କରୁଥିଲେ; କିନ୍ତୁ ତାହାଙ୍କୁ ଉତ୍ତର ପ୍ରଦାନ କରିବା ସକାଶେ ଆଦୌ ପ୍ରବର୍ତ୍ତାଇ ପାରିଲେ ନାହିଁ । ଏହି ହେତୁରୁ ତାହାଙ୍କ ଶିଷ୍ୟଗଣ କ୍ରମେ କ୍ରମେ ତାହାଙ୍କୁ ପରିତ୍ୟାଗ କରି ହୁଏନ୍‌ସାଂଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ ।

ସାଂଖ୍ୟପ୍ରତିପାଦିତ ତତ୍ତ୍ୱସମୂହ ଖଣ୍ଡନ କରିବା ଉଦ୍ଦେଶ୍ୟରେ ହୁଏନ୍‌ସାଂ ପ୍ରାଣ୍ୟମୂଳ ଓ ଶତଶାସ୍ତ୍ର ସମ୍ବନ୍ଧରେ ଏତାଦୃଶ ପ୍ରତିକୂଳ ମତ ବ୍ୟକ୍ତ କରିଥିଲେ । ସେ ବୁଦ୍ଧଙ୍କ ବାହ୍ୟ ଅଥବା ଆଭ୍ୟନ୍ତରିକ ପ୍ରକୃତ ପୂର୍ଣ୍ଣ ପ୍ରକୃତି ବିଷୟରେ କୌଣସି ମତ ପ୍ରକାଶ କରି ନ ଥିଲେ । କିନ୍ତୁ ସିଂହରଶ୍ମି ଏ ସମସ୍ତ ହୃଦୟଙ୍ଗମ କରି ପାରିଲେ ନାହିଁ କିମ୍ବା ଏଥିର ସତ୍ୟତା ସ୍ୱୀକାର କଲେ ନାହିଁ । ସେ କେବଳ କହିଲେ ଯେ, ଉଦ୍ୟମ-ଦ୍ୱାରା କୌଣସି କାର୍ଯ୍ୟ ସିଦ୍ଧ ହୁଏ ନାହିଁ ଏବଂ ଯୋଗଶାସ୍ତ୍ର ପ୍ରତିପାଦିତ ପ୍ରକୃତ ଓ ପୂର୍ଣ୍ଣତାପ୍ରାପ୍ତ ପ୍ରକୃତି ସମ୍ବନ୍ଧୀୟ ସିଦ୍ଧାନ୍ତସମୂହ ନିତାନ୍ତ ଭ୍ରମାତ୍ମକ ।

## ହୃ-ସୁଂ ନାମକ ଶାସ୍ତ୍ର ରଚନା

ହୁଏନ୍‌ସାଂ ଏହି ଉଭୟ ମତର ମୀମାଂସା ସକାଶେ ହୃ-ସୁଂ ନାମକ ତିନ ସହସ୍ର ଶ୍ଲୋକପୂର୍ଣ୍ଣ ଏକ ଶାସ୍ତ୍ର ପ୍ରଣୟନ କଲେ । ତହିଁରେ ସେ ପ୍ରତିପାଦନ କଲେ ଯେ, ଉଭୟ ମତ ପରସ୍ପର-ବିରୋଧୀ ନୁହେ । ଉକ୍ତ ଶାସ୍ତ୍ରରଚନା ସମାପ୍ତ ହେଲାରୁ ସେ ତାହା ଶୀଲଭଦ୍ର ଓ ପଣ୍ଡିତମଣ୍ଡଳୀଙ୍କୁ ଉପହାର ପ୍ରଦାନ କଲେ । ସମସ୍ତେ ତାହା ସମ୍ବନ୍ଧରେ ଅନୁକୂଳ ମତ ପ୍ରକାଶ କଲେ ଓ ସର୍ବସାଧାରଣଙ୍କ ଅଧ୍ୟୟନ ସକାଶେ ସାଦରେ ଗ୍ରହଣ କଲେ ।

ସିଂହରଶ୍ମି ଲଜ୍ଜିତ ହୋଇ ତତ୍‌କ୍ଷଣାତ୍ ଉକ୍ତ ମଠ ତ୍ୟାଗକଲେ ଓ ଗୟାରୁ ବୋଧିମଠକୁ ପ୍ରସ୍ଥାନ କଲେ । ସେଠାରେ ସେ ପୂର୍ବ-ଭାରତର ଚନ୍ଦ୍ରସିଂହ ନାମକ ଏକ ସହାଧ୍ୟାୟୀଙ୍କୁ ଏସମସ୍ତ ତର୍କ ବିଷୟରେ ତାହାଙ୍କ ସହିତ ଆଲୋଚନା କରି ପୂର୍ବ ଲଜ୍ଜା ନିବାରଣ କରିବା ସକାଶେ ଅନୁରୋଧ କଲେ ; କିନ୍ତୁ ଦୁର୍ବଳ-ହୃଦୟ ଚନ୍ଦ୍ରସିଂହ ନିରୁତ୍ତର ହେଲେ ଓ ପଦେ କଥା ସୁଦ୍ଧା କହିବାକୁ ସାହସ କଲେ ନାହିଁ । ଏହା ଦ୍ୱାରା ହୁଏନ୍‌ସାଂଙ୍କ କୀର୍ତ୍ତି ଅତ୍ୟନ୍ତ ବୃଦ୍ଧି ପାଇବାକୁ ଲାଗିଲା ।

ସିଂହରଶ୍ମି ପ୍ରସ୍ଥାନ କଲା ପୂର୍ବେ ରାଜା ଶୀଲାଦିତ୍ୟ ନାଳନ୍ଦାମଠ ପାର୍ଶ୍ୱରେ ପିତ୍ତଳ ଫଳକାଚ୍ଛାଦିତ ଶତଫୁଟ ଉଚ୍ଚ ଏକ ବିଖ୍ୟାତ ବିହାର ନିର୍ମାଣ କରାଇଥିଲେ ।

ଗଞ୍ଜାମ ବିଜୟ ଉତ୍ତାରେ ହୁଏନ୍‌ସାଂ ପୁନର୍ବାର ଓଡ଼ିଶାକୁ ଆଗମନ କଲେ । ଓଡ଼ିଶାର ଅଧିବାସୀଗଣ ହୀନଯାନ ଅଧ୍ୟୟନ କରୁଥିଲେ । ମହାଯାନ ପ୍ରତି ସେମାନଙ୍କର ଆଦୌ ବିଶ୍ୱାସ ନ ଥିଲା । ସେମାନେ ମନେ କରୁଥିଲେ ଯେ, ଏହା ଧର୍ମବିରୋଧୀଗଣଙ୍କ ମତାନୁକୂଳ ଓ ବୁଦ୍ଧଙ୍କ ପ୍ରଦତ୍ତ ନୁହେ । ସେମାନେ ହୁଏନ୍‌ସାଂଙ୍କୁ ରାଜାଙ୍କ ନିକଟରୁ ଘେନିଯାଇ ଶାସ୍ତ୍ରାଲୋଚନା ପ୍ରସଙ୍ଗରେ ତାହାଙ୍କୁ କହିଲେ,

"ଆମ୍ଭେମାନେ ଶୁଣିଅଛୁଁ ଯେ, ରାଜା ଶୀଳାଦିତ୍ୟ ନାଳନ୍ଦ ମଠ ସନ୍ନିକଟରେ ଏକ ପ୍ରକାଣ୍ଡ ମଠ ନିର୍ମାଣ କରାଇଅଛନ୍ତି । ଆପଣ କାହିଁକି କାପାଳିକ ବା ତନ୍ତ୍ରୀ ମନ୍ଦିର ନିର୍ମାଣ କରାଉ ନାହାନ୍ତି ?"

## ଆକାଶ-କୁସୁମ ତନ୍ତ୍ର

ରାଜା ଉତ୍ତର କଲେ, "ଆପଣମାନଙ୍କର ଏହି ତିରସ୍କାର-ସୂଚକ ବାକ୍ୟ ପ୍ରୟୋଗର ଅଭିପ୍ରାୟ କଣ ?"

ସେମାନେ କହିଲେ, "ଏହି ବାକ୍ୟ ପ୍ରୟୋଗର ଅଭିପ୍ରାୟ ଏହି ଯେ ନାଳନ୍ଦ ମଠ ଓ ସେହିଠାରେ ପ୍ରତିପାଦିତ ଆକାଶ-କୁସୁମ ତନ୍ତ୍ର * ଏବଂ ଆମ୍ଭମାନଙ୍କ କାପାଳିକ ତନ୍ତ୍ର ମଧ୍ୟରେ ବିଭିନ୍ନତା ନାହିଁ ।"

ଇତିପୂର୍ବେ ଦାକ୍ଷିଣାତ୍ୟର କୌଣସି ପରିବାଜକସମ୍ପ୍ରା ନରପତିଙ୍କର ପ୍ରାଜ୍ଞଗୁପ୍ତ ନାମକ ବ୍ରାହ୍ମଣକୁଳୋଦ୍ଭବ ଜଣେ ଆଚାର୍ଯ୍ୟ ଥିଲେ । ସେ ସମ୍ମତୀୟ ମତାବଲମ୍ବୀ ସକଳ ଶାସ୍ତ୍ର ଆୟତ୍ତ କରିଥିଲେ । ପ୍ରାଜ୍ଞଗୁପ୍ତ ମହାଯାନ ବିରୁଦ୍ଧରେ ସପ୍ତଶତ ଶ୍ଲୋକପୂର୍ଣ୍ଣ ଏକ ଗ୍ରନ୍ଥ ପ୍ରଣୟନ କରିଥିଲେ । ହୀନଯାନ ମତାବଲମ୍ବୀ ଆଚାର୍ଯ୍ୟଗଣ ଏଥିରେ ଅତ୍ୟନ୍ତ ପ୍ରୀତ ହେଲେ ଓ ତାହା ରାଜାଙ୍କଠାକୁ ନେଇଯାଇ କହିଲେ, "ଏହି ଗ୍ରନ୍ଥ ଆମ୍ଭମାନଙ୍କ ମତର ଅନୁକୂଳ । ଏଥିରୁ ଏକ ଶବ୍ଦ ସୁଦ୍ଧା କେହି ଖଣ୍ଡନ କରି ପାରିବେ କି ?" ରାଜା କହିଲେ, "ଏକଦା ମୂଷିକମାନଙ୍କ ସମଭିବ୍ୟାହାରରେ ଏକ ଶୃଗାଳ ଗୋଟିଏ ସିଂହ ସହିତ ଯୁଦ୍ଧ କରିବାକୁ ଅଗ୍ରସର ହେଲା; କିନ୍ତୁ ସିଂହକୁ ଦେଖିବା ମାତ୍ରକେ ତାହାର ହୃଦସ୍ପନ୍ଦନ ରୁଦ୍ଧ ହେଲା ଓ ମୂଷିକଗଣ ମୃତ୍ତିକା ମଧ୍ୟରେ ଇତସ୍ତତଃ

* ଦୃଷ୍ଟିବିଷୟୀଭୂତ ବସ୍ତୁ ଅନିତ୍ୟ ଓ ଅସତ୍ୟ, ଏହା ହିଁ ନାଳନ୍ଦ ମଠରେ ପ୍ରତିପାଦିତ ତନ୍ତ୍ର ।

ପଳାୟନ କଲେ । ଆପଣମାନେ ମହାଯାନ ମତାବଲମ୍ବୀ ଆଚାର୍ଯ୍ୟମାନଙ୍କୁ ଦେଖି ନାହାନ୍ତି ; ତେଣୁ ନିର୍ବୋଧ ଭଳି ଏତାଦୃଶ ବାକ୍ୟ ପ୍ରୟୋଗ କରୁଅଛନ୍ତି । ଆପଣମାନେ ଥରେ ଯଦି ସେମାନଙ୍କୁ ଦର୍ଶନ କରନ୍ତି, ତାହାହେଲେ ନିଶ୍ଚୟ ଉକ୍ତ ଶୃଗାଳ ତୁଲ୍ୟ ଭୀତ ହୋଇ ସେମାନଙ୍କ ସମ୍ମୁଖରୁ ପଳାୟନ କରିବେ ।" ଏହା ଶୁଣି ସେମାନେ କହିଲେ, "ରାଜ୍ୟ ମଧ୍ୟରେ ଏପରି ଯଦି କେହି ଅଛନ୍ତି, ତାହାହେଲେ ଏକ ସଭା ଆହୂତ ହେଉ ଓ ତହିଁରେ ଏହି ବିଷୟର ସମ୍ୟକ୍ ଆଲୋଚନା ହେଉ ।" ରାଜା କହିଲେ, "ଏଥିରେ ଆଉ ଅସୁବିଧା କଣ ଅଛି ?" ସେହିଦିନ ରାଜା ନାଳନ୍ଦ ମଠବାସୀ ଶୀଳଭଦ୍ରଙ୍କ ନିକଟକୁ ଦୂତ-ହସ୍ତରେ ପତ୍ର ପ୍ରେରଣ କଲେ । ପତ୍ରର ମର୍ମ ଅବଗତ ହୋଇ ହୁଏନ୍‌ସାଂ କହିଲେ, "ଓଡ଼ିଶାରେ ଭ୍ରମଣ କାଳରେ ଆପଣଙ୍କ ଶିଷ୍ୟ ହୀନଯାନା-ବଲମ୍ବୀ କେତେକ ଆଚାର୍ଯ୍ୟଙ୍କ ସାକ୍ଷାତ୍ ଲାଭ କରିଥିଲି । ସେମାନେ ସମସ୍ତେ ମହାଯାନ ବିରୁଦ୍ଧ ଶାସ୍ତ୍ରପ୍ରତିପାଦିତ ସଂକୀର୍ଣ୍ଣ ମତ ପୋଷଣ କରି ମହାଯାନର ଘୋର ନିନ୍ଦା କରୁଅଛନ୍ତି । ସେମାନଙ୍କ ମତରେ ମହାଯାନାବଲମ୍ବୀଗଣ ଭିନ୍ନ ଧର୍ମାବଲମ୍ବୀ ଓ ସେମାନେ ଆପଣଙ୍କ ସହିତ ଏ ବିଷୟର ଆଲୋଚନା କରିବାକୁ ଇଚ୍ଛା କରୁଅଛନ୍ତି । ମୁଁ ଜାଣେ ଯେ, ଆପଣଙ୍କ ମଠରେ ସର୍ବଶାସ୍ତ୍ରବିଶାରଦ ପଣ୍ଡିତଗଣ ଅବସ୍ଥାନ କରୁ-ଅଛନ୍ତି ଓ ସେମାନେ ଉକ୍ତ ଆଚାର୍ଯ୍ୟଗଣଙ୍କୁ ଅନାୟାସରେ ପରାସ୍ତ କରି ପାରିବେ । ଅତଏବ ଏଦ୍ୱାର ଉତ୍ତର ପ୍ରଦାନ ସକାଶେ ଭିନ୍ନ ଭିନ୍ନ ଶାସ୍ତ୍ରର ନିଗତ ଓ ପ୍ରକାଶ୍ୟ ତତ୍ତ୍ୱଜ୍ଞ ଚାରିଜଣ ପଣ୍ଡିତଙ୍କୁ ଓଡ଼ିଶାକୁ ପ୍ରେରଣ କରନ୍ତୁ ।"

## ଶୀଳଭଦ୍ରଙ୍କ ନିକଟକୁ ଉତ୍କଳ ନରପତିଙ୍କ ପ୍ରେରିତ ପତ୍ର

ପତ୍ର ପ୍ରାପ୍ତ ହୋଇ ଶୀଳଭଦ୍ର ପଣ୍ଡିତମଣ୍ଡଳୀ ଆହ୍ୱାନ କଲେ । ସେମାନଙ୍କ ଅନୁମୋଦନକ୍ରମେ ଓଡ଼ିଶା ନରପତିଙ୍କ ଆଦେଶ ପାଳନ ସକାଶେ ସେ ସାଗରମତି, ପ୍ରଜ୍ଞାରଶ୍ମି, ସିଂହରଶ୍ମି ଓ ହୁଏନ୍‌ସାଙ୍କୁ ନିଯୁକ୍ତ କଲେ । ସାଗରମତି ଓ ଅନ୍ୟାନ୍ୟ ଆଚାର୍ଯ୍ୟଗଣ ପରିଣାମ ସକାଶେ ଚିନ୍ତିତ ହେଲେ । ସେତେବେଳେ ହୁଏନ୍‌ସାଂ କହିଲେ, "ତ୍ରିପିଟକଜ୍ଞ ହୁଏନ୍‌ସାଂ ସ୍ୱଦେଶରେ ବାସ କରୁଥିବାବେଳେ ଓ କାଶ୍ମୀରରେ ଭ୍ରମଣ କରୁଥିବା ସମୟରେ ହୀନଯାନ ସମ୍ବନ୍ଧୀୟ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଥିଲି । ଯଦି ମହାଯାନପ୍ରତିପାଦିତ ତତ୍ତ୍ୱ ବିନାଶ କରିବା ଭିନ୍ନ ମତାବଲମ୍ବୀମାନଙ୍କ ଅଭିପ୍ରାୟ ଥାଏ, ତାହାହେଲେ କଦାପି ସେମାନଙ୍କ ଉଦ୍ଦେଶ୍ୟ ସଫଳ ହେବ ନାହିଁ । ହୁଏନ୍‌ସାଂ ଅଳ୍ପଜ୍ଞାନ-ସମ୍ପନ୍ନ ହେଲେହେଁ ନିଶ୍ଚୟ ଏକାକୀ ସେମାନଙ୍କୁ ପରାସ୍ତ କରିବାରେ ସମର୍ଥ ହେବ । ଅତଏବ ଆପଣମାନେ ଚିନ୍ତା କରିବେ ନାହିଁ । ଯଦି ସେ ପରାସ୍ତ ହୁଏ, ତାହାହେଲେ ଆଜିଠାରୁ ଚୀନଦେଶୀୟ ଆଚାର୍ଯ୍ୟଗଣଙ୍କ ନାମ ଲୁପ୍ତ ହେବ ।

---

## ଲୋକତାୟ ପ୍ରତିଦ୍ୱନ୍ଦ୍ୱୀ

ଏହା ଶୁଣି ସମସ୍ତେ ଆନନ୍ଦରେ ଅଭିଭୂତ ହେଲେ; କିନ୍ତୁ ରାଜା ଶୀଳାଦିତ୍ୟ ଏହି ମର୍ମରେ ଆଉ ଏକ ପତ୍ର ପ୍ରେରଣ କଲେ, "ମୋର ପୂର୍ବ ଅନୁରୋଧ ରକ୍ଷା କରିବା ଏକ୍ଷଣି ଆବଶ୍ୟକ ନାହିଁ । ଆଚାର୍ଯ୍ୟଗଣ ବର୍ତ୍ତମାନ ଅପେକ୍ଷା କରନ୍ତୁ ।"

ଏହି ସମୟରେ ଶୁନ୍-ସି (ଲୋକତୀୟ) ସମ୍ପ୍ରଦାୟଭୁକ୍ତ ଏକ ଧର୍ମବିରୋଧୀ ବ୍ରାହ୍ମଣ ନାଳନ୍ଦ ମଠର ସନ୍ନ୍ୟାସୀମାନଙ୍କ ସହିତ ବାଦାନୁ-

ବାଦ କରିବା ସକାଶେ ଆଗମନ କଲେ ଓ ତର୍କ ସକାଶେ ବୃଲାଣ୍ଡଗୋଷ୍ଠି ବିଷୟ ଲିପିବଦ୍ଧ କରି ତାହା ମଠଦ୍ୱାରରେ ଝୁଲାଇ ଦେଲେ । ତହିଁରେ ସେ ଲେଖିଥିଲେ, "ଏହି ମଠାଧିବାସୀମାନଙ୍କ ମଧ୍ୟରୁ ଯଦି କେହି ଏ ସମସ୍ତ ଖଣ୍ଡନ କରିଦିଅନ୍ତି, ତାହାହେଲେ ତାହାଙ୍କ ବିଜୟ ସକାଶେ ମୁଁ ମୋର ମସ୍ତକ ପ୍ରଦାନ କରିବି ।"

ବହୁଦିବସ ପର୍ଯ୍ୟନ୍ତ କେହି ଏହାର ଉତ୍ତର ପ୍ରଦାନ କଲେ ନାହିଁ । ତତ୍ପରେ ହୁଏନ୍‌ସାଂ ତାହାକୁ ଖଣ୍ଡ ଖଣ୍ଡ କରି ପଦଦଳିତ କରିବା ସକାଶେ ଏକ ଅନୁଚର ପ୍ରେରଣ କଲେ । ଏହା ଦେଖି ବ୍ରାହ୍ମଣ କ୍ରୁଦ୍ଧ ହୋଇ କହିଲେ, "ତୁମ୍ଭେ କିଏ ?" ସେ ଉତ୍ତର କଲେ, "ମୁଁ ମହାଯାନ-ଦେବଙ୍କ ଭୃତ୍ୟ ।" ବ୍ରାହ୍ମଣ ତାହାଙ୍କ ନାମ ଶ୍ରବଣ କରି ଅତ୍ୟନ୍ତ ଲଜ୍ଜିତ ହେଲେ । ତାହାଙ୍କ କୀର୍ତ୍ତି ବିଷୟ ସେ ଇତଃପୂର୍ବେ ଅବଗତ ହୋଇଥିଲେ ; ତେଣୁ ସେ ତାହାଙ୍କ ସହିତ ତର୍କ ବିତର୍କରେ ପ୍ରବୃତ୍ତ ହେବା ସକାଶେ ଆଉ ସାହସ କଲେ ନାହିଁ ; କିନ୍ତୁ ହୁଏନ୍‌ସାଂ ତାହାଙ୍କୁ ଶାସ୍ତ୍ରାଲୋଚନା ସକାଶେ ଆହ୍ୱାନ କଲେ ଓ ତାହା ଦର୍ଶନ କରିବା ନିମନ୍ତେ ଶୀଲଭଦ୍ରଙ୍କ ସମ୍ମୁଖରେ ସମସ୍ତ ଆଚାର୍ଯ୍ୟଙ୍କୁ ଅନୁରୋଧ କଲେ । ଶାସ୍ତ୍ରାଲୋଚନା କାଳରେ ଧର୍ମବିରୋଧୀ ସମ୍ପ୍ରଦାୟର ଧର୍ମମତ ଅବଗତ ହୋଇ ସେ କହିଲେ, "ଭୂତ, ନିର୍ଗ୍ରନ୍ଥ, କାପାଳିକ ଓ ଜଟିକମାନେ ସମସ୍ତେ ଭିନ୍ନ ମତ ପୋଷଣ କରନ୍ତି । ସାଂଖ୍ୟ ଓ ବୈଶେଷିକ ମଧ୍ୟରେ ପରସ୍ପର ମତଭେଦ ବିଦ୍ୟମାନ । ଭୂତଗଣ ଶରୀରରେ ଭସ୍ମ-ବିଲେପନପୂର୍ବକ ପାକଶାଳା-କୋଣସ୍ଥ ବିଡ଼ାଳ ତୁଲ୍ୟ ବିବର୍ଣ୍ଣ ଚର୍ମ ଧାରଣ କରନ୍ତି ଓ ସେମାନେ ଏହା ପୁଣ୍ୟଜନକ ବୋଲି ମନେ କରନ୍ତି । ନିର୍ଗ୍ରନ୍ଥ ଓ ସେମାନଙ୍କ ଶିଷ୍ୟଗଣ ନଗ୍ନ ହୋଇ ଚତୁର୍ଦ୍ଦିଗରେ ଭ୍ରମଣ କରନ୍ତି ଓ ବଳପୂର୍ବକ କେଶୋତ୍ପାଟନ କରିବା ପୁଣ୍ୟଜନକ ବୋଲି ବିବେଚନା କରନ୍ତି । ସେମାନେ ଶରୀରର ଚର୍ମ ଶୁଷ୍କ ଓ ପଦଦ୍ୱୟ

କଠିନ କରନ୍ତି ଓ ନଦୀକୂଳସ୍ଥ ଜୀର୍ଣ୍ଣକାଷ୍ଠ ତୁଲ୍ୟ ରୂପ ଧାରଣ କରନ୍ତି । କାପାଳିକଗଣ ମସ୍ତକ ଓ ଗଳ-ଦେଶରେ ଅସ୍ଥିମାଳ ପରିଧାନ କରି ଗୁମ୍ଫା ଓ ଶ୍ମଶାନରେ ଅବସ୍ଥାନ କରନ୍ତି । ଜଟିଳଗଣ ମଳିନ ବସ୍ତ୍ର ପରିଧାନ ଓ ଦୂଷିତ ଦ୍ରବ୍ୟ ଆହାର କରନ୍ତି ଓ ସେମାନେ ଦୂଷିତ ଜଳାଧାରନିମଗ୍ନ ଶୂକରତୁଲ୍ୟ ରୂପ ଧାରଣ କରନ୍ତି । ଏହା କି ଜ୍ଞାନର ପରିଚାୟକ ? ଏହା ଉନ୍ମାଦର ପରିଚାୟକ ନୁହେଁ କି ?

---

## ସାଂଖ୍ୟ ଓ ଅନ୍ୟାନ୍ୟ ବଧର୍ମ୍ମିଗଣ—ସାଂଖ୍ୟତତ୍ତ୍ୱ

ସାଂଖ୍ୟ ମତାବଲମ୍ବିଗଣ ପଞ୍ଚବିଂଶ ତତ୍ତ୍ୱ ଅନୁମୋଦନ କରନ୍ତି । ସେମାନଙ୍କ ମତରେ ପ୍ରକୃତିରୁ ବା ମୂଳ ପ୍ରକୃତିରୁ ମହତ୍, ମହତ୍‌ରୁ ଅହଂକାର ଓ ଅହଙ୍କାରରୁ ତନ୍ମାତ୍ର ନାମକ ସୂକ୍ଷ୍ମ ପରମାଣୁ, ସୂକ୍ଷ୍ମ ପରମାଣୁରୁ ପଞ୍ଚ ମହାଭୂତ ଓ ପଞ୍ଚ ମହାଭୂତରୁ ଏକାଦଶ ଇନ୍ଦ୍ରିୟ (ଜ୍ଞାନ ଓ କର୍ମେନ୍ଦ୍ରିୟ)ର ଉଦ୍ଭବ ହୋଇଅଛି । ଏହି ଚତୁର୍ବିଂଶ ତତ୍ତ୍ୱ ଆତ୍ମାକୁ ପୋଷଣ କରୁଅଛନ୍ତି ଓ ଏମାନଙ୍କ ସାହାଯ୍ୟରେ ପୁଷ୍ଟ ହୋଇ ସୁଦ୍ଧା ନିର୍ଲିପ୍ତ ରହିବା ଯୋଗୁଁ ଆତ୍ମା ନିର୍ମ୍ମଳ ଓ ପବିତ୍ର ହୋଇ ରହିଅଛି ।

ବୈଶେଷିକ ମତାବଲମ୍ବିଗଣ ଷଡ଼୍‌ବର୍ଗ ଅନୁମୋଦନ କରନ୍ତି । ଯଥା—ଦ୍ରବ୍ୟ, ଗୁଣ, କର୍ମ, ସତ୍ତ୍ୱ, ସମ, ବଭିନ୍ନ ପ୍ରକୃତ ଓ ସମ୍ମିଳିତ ପ୍ରକୃତି ଏହି ଷଡ଼୍‌ବର୍ଗ ଆତ୍ମା ସହିତ ସଂଯୁକ୍ତ ହୋଇ ରହିଅଛି । ଆତ୍ମା ମଧ୍ୟ ମୁକ୍ତ ହୋଇ ନ ଥିବା ଯୋଗୁଁ ଷଡ଼୍‌ବର୍ଗ ସଂଯୋଗରେ ଷଟ୍‌ଲକ୍ଷଣ ମୁକ୍ତ ହୋଇ ନିର୍ବାଣ ପ୍ରାପ୍ତ ହୁଏ ।

ବର୍ତ୍ତମାନ ସାଂଖ୍ୟ ଶାସ୍ତ୍ରର ତତ୍ତ୍ୱସମୂହ ଖଣ୍ଡନ କରିବାକୁ ହେବ । ତୁମ୍ଭେମାନେ କହ ଯେ, ପଞ୍ଚବିଂଶ ତତ୍ତ୍ୱଠାରୁ ଆତ୍ମାର ଗୁଣ ସମ୍ପୂର୍ଣ୍ଣ ପୃଥକ୍; କିନ୍ତୁ ଚତୁର୍ବିଂଶ ତତ୍ତ୍ୱ ସହିତ ମିଳିତ ହୋଇ ଏକାକାର ପ୍ରାପ୍ତ ହୁଏ । ପୁଣି ତୁମ୍ଭେ କହ ଯେ, ପ୍ରକୃତି ସତ୍ତ୍ୱ, ରଜ ଓ ତମୋଗୁଣର

ସୃଷ୍ଟି କ୍ଷଣରେ ତ୍ରିଗୁଣାତ୍ମକ ରୂପ ଧାରଣ କରେ ଏବଂ ଏହି ରୂପତ୍ରୟର ସମ୍ମିଶ୍ରଣଦ୍ୱାରା ମହତ୍ ଓ ଅନ୍ୟ ବଯ୍ୟୋବିଂଶ ତତ୍ତ୍ୱ ଗଠିତ ହୁଏ । ଅତଏବ ତୁମ୍ଭମାନଙ୍କ ମତରେ ତ୍ରିଗୁଣଦ୍ୱାରା ଏହି ବଯ୍ୟୋବିଂଶ ତତ୍ତ୍ୱ ପୂର୍ଣ୍ଣତା ପ୍ରାପ୍ତ ହୁଏ । କିନ୍ତୁ ଯଦି ମହତ୍ ଏବଂ ଅନ୍ୟ ତତ୍ତ୍ୱଗୁଡିକ ତ୍ରିଗୁଣ ସହି ମିଳିତ ହୋଇ ଜନତା ବା ଅରଣ୍ୟ ଭଳି ପୂର୍ଣ୍ଣତା ପ୍ରାପ୍ତ ହୁଅନ୍ତି ଓ ଏ ସମସ୍ତ ପରସ୍ପର ସହିତ ମିଳିତ ନ ହେଲେ ସେଗୁଡିକର ଅସ୍ତିତ୍ୱ ନାହିଁ, ତାହା ହେଲେ କିପରି କହିବ ଯେ, ସେ ସମସ୍ତ ପଦାର୍ଥ ସତ୍ୟ ? ପୁଣି ତ୍ରିଗୁଣର ସହାୟତାରେ ମହତ୍ ଓ ଅନ୍ୟ ତତ୍ତ୍ୱସମୂହ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେଲେ ଭିନ୍ନ ଭିନ୍ନ ଗୁଣସମ୍ପନ୍ନ ବସ୍ତୁସମୂହ ତ୍ରିଗୁଣାତ୍ମକ ସମସ୍ତ ବସ୍ତୁଠାରୁ ପୃଥକ୍ ହୁଅନ୍ତି । ତାହାହେଲେ ସେମାନଙ୍କ କାର୍ଯ୍ୟରେ ମଧ୍ୟ ପାର୍ଥକ୍ୟ ନାହିଁ । ତେବେ ଗୁଣତ୍ରୟର ସମ୍ମିଳନରେ ଏକ ପୂର୍ଣ୍ଣାଙ୍ଗପ୍ରାପ୍ତ ବସ୍ତୁ ନିର୍ମିତ ହୁଏ । ଏହି ଯୁକ୍ତିରେ ସାର ଆଉ କଣ ଅଛି ? ପୁଣି ଯଦି ଏକ ଓ ଅନେକ ମଧ୍ୟରେ ପାର୍ଥକ୍ୟ ନାହିଁ, ତାହାହେଲେ ନାସିକା, କର୍ଣ୍ଣ, ଚକ୍ଷୁ ପ୍ରଭୃତି ଭିନ୍ନ ଭିନ୍ନ ଅଙ୍ଗପ୍ରତ୍ୟଙ୍ଗର କାର୍ଯ୍ୟ ଓ ସମଗ୍ର ପ୍ରକୃତିର କାର୍ଯ୍ୟ ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ । ଆଉ ପ୍ରତ୍ୟେକ ଗୁଣ ଯଦି ସମସ୍ତଙ୍କ କାର୍ଯ୍ୟ କରେ, ତାହାହେଲେ ରସନା, କର୍ଣ୍ଣ ପ୍ରଭୃତି ଭିନ୍ନ ଭିନ୍ନ ଇନ୍ଦ୍ରିୟସମୂହ ଗନ୍ଧ ଆଘ୍ରାଣ ଓ ବର୍ଣ୍ଣ ଦର୍ଶନ କରି ପାରିବା ଉଚିତ । ଆଉ ତାହା ଯଦି ହୋଇ ନ ପାରେ, ତାହାହେଲେ ତ୍ରିଗୁଣ ମିଳିତ ହୋଇ ଅନ୍ୟ ଏକ ବସ୍ତୁ ଗଠନ କରନ୍ତି । ଏହି ଉକ୍ତି ନିତାନ୍ତ ଅସାର । କୌଣସି ବୁଦ୍ଧିମାନ୍ ବ୍ୟକ୍ତି ଏହା ସମର୍ଥନ କରି ପାରେ କି ? ପୁଣି ପ୍ରକୃତି ଓ ଆତ୍ମା ନିତ୍ୟ ଓ ଅପରିବର୍ତ୍ତନୀୟ; ସୁତରାଂ ଗୁଣ-ଭେଦରେ ମଧ୍ୟ ଅଭିନ୍ନ । ତାହାହେଲେ ଗୋଟିଏ ଅପରଟିଠାରୁ ପୃଥକ୍ ରହି ପୁଣି ପରସ୍ପର ସମ୍ମିଶ୍ରଣରେ ମହତ୍ ପ୍ରଭୃତି ତତ୍ତ୍ୱ କିପରି ଉତ୍ପାଦନ କରି ପାରିବ ? ଆତ୍ମାର ପ୍ରକୃତି ସମ୍ବନ୍ଧରେ କହିବାକୁ ହେଲେ ତାହା

ଯଦି ନିତ୍ୟ, ତାହାହେଲେ ଆତ୍ମା ଓ ପ୍ରକୃତି ଅଭିନ୍ନ । ଆଉ ଯଦି ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ନାହିଁ, ତାହା ହେଲେ 'ଆତ୍ମା' ଶବ୍ଦ ଉଚ୍ଚାରଣ କରିବା ପ୍ରୟୋଜନ କଣ ? ଆତ୍ମା ଚତୁର୍ବିଂଶ ତତ୍ତ୍ୱର ସାହାଯ୍ୟ ଗ୍ରହଣ କରିବାକୁ ଅକ୍ଷମ; ସୁତରାଂ ଆତ୍ମା ଓ ବାହ୍ୟ ପ୍ରକୃତିର କାର୍ଯ୍ୟ ସମ୍ବନ୍ଧେ ବିବୃତି ସମ୍ଭବପର ନୁହେଁ ।"

ଏ ସମସ୍ତ ଯୁକ୍ତିରେ ବ୍ରାହ୍ମଣ ନିରୁତ୍ତର ହୋଇ ରହିଲେ । କିନ୍ତୁ ପରିଶେଷରେ ଗାତ୍ରୋତ୍ଥାନପୂର୍ବକ ସେ କହିଲେ, "ମୁଁ ପରାଜିତ ହେଲି, ମୁଁ ମୋର ପ୍ରତିଜ୍ଞା ପାଳନ କରିବାକୁ ପ୍ରସ୍ତୁତ ଅଛି ।" ହୁଏନ୍‌ସାଂ କହିଲେ, "ଆମ୍ଭେମାନେ ଶାକ୍ୟପୁତ୍ର । କାହାରି ପ୍ରାଣନାଶ କରିବା ଆମ୍ଭମାନଙ୍କର ଅଭିପ୍ରେତ ନୁହେଁ । ତୁମ୍ଭେ ବର୍ତ୍ତମାନ ମୋର ଶିଷ୍ୟ ହୋଇ ମୋଠାରୁ ଉପଦେଶ ଓ ଶିକ୍ଷା ଗ୍ରହଣ କରିବାକୁ ମୁଁ ତୁମ୍ଭଙ୍କୁ ଆଦେଶ କରୁଅଛି ।"

ଏହା ଶୁଣି ବ୍ରାହ୍ମଣର ଆନନ୍ଦର ସୀମା ରହିଲା ନାହିଁ । ତତ୍‌କ୍ଷଣାତ୍ ସେ ହୁଏନ୍‌ସାଂଙ୍କ ସେବାରେ ନିଯୁକ୍ତ ହେଲେ । ଏହି ବିଷୟ ଶ୍ରବଣ କରି ସମସ୍ତେ ହୁଏନ୍‌ସାଂଙ୍କ ପ୍ରଶଂସା ଗାନ କରିବାକୁ ଲାଗିଲେ ।

ହୁଏନ୍‌ସାଂ ତତ୍ପରେ ଓଡ଼ିଶାକୁ ଯିବା ପାଇଁ ଇଚ୍ଛାକରି ମହାଯାନ ତତ୍ତ୍ୱବିରୋଧୀ ସପ୍ତଶତ ଶ୍ଳୋକବିଶିଷ୍ଟ ହୀନଯାନ ସମ୍ବନ୍ଧରେ ରଚିତ ଗ୍ରନ୍ଥ ପାଠ କଲେ । ତହିଁରୁ ଅନେକାଂଶରେ ତାହାଙ୍କ ସନ୍ଦେହ ଉଦିତ ହେଲା । ଉକ୍ତ ପରାଜିତ ବ୍ରାହ୍ମଣଙ୍କୁ ସେ ସମ୍ବୋଧନ କରି କହିଲେ, "ତୁମ୍ଭେ ଏ ସମସ୍ତ ଅଧ୍ୟୟନ କରିଅଛ କି ନା ?" ସେ ଉତ୍ତର କଲେ, "ହଁ, ମୁଁ ଏହା ପାଞ୍ଚଥର ଅଧ୍ୟୟନ କରିଅଛି ।" ତାହା ବୁଝାଇ ଦେବା ସକାଶେ ହୁଏନ୍‌ସାଂ ତାହାଙ୍କୁ ଅନୁରୋଧ କଲେ । ବ୍ରାହ୍ମଣ କହିଲେ, "ଆପଣଙ୍କର ଏହି ଦାସ ଆପଣଙ୍କୁ ଏ ବିଷୟରେ ଶିକ୍ଷା ପ୍ରଦାନ କରିବାକୁ କିପରି ସାହସୀ ହେବ ?" ତତ୍ପରେ ହୁଏନ୍‌ସାଂ କହିଲେ, "ମୁଁ ଏହି ଧର୍ମବିରୁଦ୍ଧ ତତ୍ତ୍ୱ ସମ୍ବନ୍ଧରେ ଏକାନ୍ତ ଅନଭିଜ୍ଞ ।

ତୁମ୍ଭେ ନିଃସଙ୍କୋଚରେ ମୋତେ ଉପଦେଶ ପ୍ରଦାନ କର ।” ବ୍ରାହ୍ମଣ କହିଲେ, “ତାହାହେଲେ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ଯଦି କେହି ମନେ କରନ୍ତି ଯେ, ଆପଣଙ୍କୁ ଏହି ଦାସଠାରୁ ଶାସ୍ତ୍ରୋପଦେଶ ଗ୍ରହଣ କରିବାକୁ ହେଲା, ତାହାହେଲେ ଆପଣଙ୍କ ଅପକୀର୍ତ୍ତି ହେବ ।” କ୍ରମେ ରାତ୍ରି ଅର୍ଦ୍ଧ-ଯାମରେ ଉପନୀତ ହେଲା । ଶିଷ୍ୟଗଣଙ୍କୁ ବିଦାୟ ପ୍ରଦାନ କରି ହୁଏନ୍‌ସାଂ ବ୍ରାହ୍ମଣଙ୍କ ସହି ସମଗ୍ର ଗ୍ରନ୍ଥର ଆଲୋଚନାରେ ପ୍ରବୃତ୍ତ ହେଲେ । ତତ୍ପରେ ଗ୍ରନ୍ଥର ଭ୍ରମସମୂହ ହୃଦୟଙ୍ଗମ କରି ତତ୍‌ପ୍ରତିପାଦିତ ତତ୍ତ୍ୱଗୁଡିକ ଖଣ୍ଡନ କରିବା ସକାଶେ ଷୋଡ଼ଶ ଶତ ଶ୍ଲୋକବିଶିଷ୍ଟ ଏକ ଗ୍ରନ୍ଥ ପ୍ରଣୟନ କଲେ । ଉକ୍ତ ଗ୍ରନ୍ଥର ନାମ ‘ବିରୁଦ୍ଧବାଦ-ବିନାଶ’ * । ତହିଁରେ ମହାଯାନର ବିଶଦ ବ୍ୟାଖ୍ୟା ପୁଙ୍ଖାନୁପୁଙ୍ଖ ଭାବରେ ସନ୍ନିବେଶିତ ହୋଇଥିଲା ।

---

## ବିଧର୍ମୀଙ୍କ ପରାଜୟ—କୁମାରରାଜ

ହୁଏନ୍‌ସାଂ ଶୀଳଭଦ୍ରଙ୍କୁ ଏହି ଗ୍ରନ୍ଥ ଉପହାର ପ୍ରଦାନ କଲେ । ଶିଷ୍ୟଗଣ ତାହା ପାଠ କରି ସମସ୍ତେ ଅନୁକୂଳ ମତ ପ୍ରକାଶ କଲେ । ସେମାନେ କହିଲେ, “ଏହି ଯୁକ୍ତିକୁ କିଏ ଖଣ୍ଡନ କରି ପାରିବ ?” ତତ୍ପରେ ହୁଏନ୍‌ସାଂ କୃତଜ୍ଞତାପୂର୍ଣ୍ଣ ହୃଦୟରେ ବ୍ରାହ୍ମଣଙ୍କୁ କହିଲେ, “ତୁମ୍ଭେ ଯୁକ୍ତିରେ ପରାସ୍ତ ହୋଇ ଶିଷ୍ୟତ୍ୱ ଗ୍ରହଣ କରି ଯଥେଷ୍ଟ ଅପମାନିତ ହୋଇଅଛ । ବର୍ତ୍ତମାନ ମୁଁ ତୁମ୍ଭଙ୍କୁ ମୁକ୍ତି ପ୍ରଦାନ କଲି । ଯଥେଚ୍ଛ ସ୍ଥାନକୁ ତୁମ୍ଭେ ଯାଇପାର ।”

ବ୍ରାହ୍ମଣ ଆନନ୍ଦଗଦ୍‌ଗଦ-ହୃଦୟରେ ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ କାମରୂପ ଅଭିମୁଖରେ ଯାତ୍ରା କଲେ ଓ ସେଠାରେ ଉପସ୍ଥିତ ହୋଇ କୁମାରରାଜଙ୍କ ସମ୍ମୁଖରେ ହୁଏନ୍‌ସାଂଙ୍କ ସଦ୍‌ଗୁଣାବଳୀ ବର୍ଣ୍ଣନ କଲେ । ତାହା ଶୁଣି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ ଓ ହୁଏନ୍‌ସାଂଙ୍କ ଆଣିବା ସକାଶେ ତତ୍‌କ୍ଷଣାତ୍ ଦୂତ ପ୍ରେରଣ କଲେ ।

---

*Distruction of heresy.

# ପ୍ରଥମ ଖଣ୍ଡ

## ହୁଏନସାଂଙ୍କ ସ୍ୱଦେଶ ପ୍ରତ୍ୟାଗମନ ସମ୍ବନ୍ଧରେ ନିର୍ଗ୍ରନ୍ଥଙ୍କ ଭବିଷ୍ୟଦ୍‌ବାଣୀ ଓ ତାହାଙ୍କ ଚୀନ-ପ୍ରବେଶ

କୁମାରରାଜ-ଦୂତଙ୍କ ଆଗମନ ପୂର୍ବେ ବଜ୍ରନାମକ ଏକ ନିର୍ଗ୍ରନ୍ଥ ଶିଷ୍ୟ ଅକସ୍ମାତ୍ ଦିନେ ହୁଏନ୍‌ସାଂଙ୍କ କକ୍ଷରେ ପ୍ରବିଷ୍ଟ ହେଲେ । ହୁଏନ୍‌ସାଂ ଶୁଣିଥିଲେ ଯେ, ନିର୍ଗ୍ରନ୍ଥ ସନ୍ନ୍ୟାସିଗଣ ଭବିଷ୍ୟତ୍ କଥନରେ ନିପୁଣ । ଉକ୍ତ ଶିଷ୍ୟଙ୍କୁ ଆସନ ପ୍ରଦାନପୂର୍ବକ ସେ ପ୍ରଶ୍ନ କଲେ, "ହୁଏନ୍‌ସାଂ ନାମକ ଏକ ଚୀନଦେଶୀୟ ଆଚାର୍ଯ୍ୟ ଏହି ସ୍ଥାନରେ ସାର୍ଦ୍ଧ ବର୍ଷାଧିକ କାଳ ଅବସ୍ଥାନ କରି ଶାସ୍ତ୍ରାଧ୍ୟୟନ କରୁଅଛନ୍ତି । ସେ ବର୍ତ୍ତମାନ ସ୍ୱଦେଶକୁ ପ୍ରତ୍ୟାଗମନ କରିବାକୁ ଇଚ୍ଛା କରନ୍ତି । କିନ୍ତୁ ଏହା କରିବା ସକାଶେ ତାହାଙ୍କ ପଥ ଉନ୍ମୁକ୍ତ କି ନା କିମ୍ବା ଏହି ସ୍ଥାନରେ ରହିବା ଅଥବା ଯିବା ତାହାଙ୍କ ପକ୍ଷରେ ଶ୍ରେୟସ୍କର, ସେ ଜାଣି ପାରୁ ନାହାନ୍ତି । ପୁଣି ଜୀବନର ଦୀର୍ଘତ୍ୱ ଅଥବା ସ୍ଥାୟିତ୍ୱ ସମ୍ବନ୍ଧରେ ମଧ୍ୟ ସେ ସନ୍ଦିହାନ । ତାହାଙ୍କର ଅନୁରୋଧ, ଆପଣ କୋଷ୍ଠୀ ଗଣନା କରି ସନ୍ଦେହ ମୋଚନ କରନ୍ତୁ ।"

ନିର୍ଗ୍ରନ୍ଥ ଖଣ୍ଡେ ଶ୍ୱେତ ପ୍ରସ୍ତର ଗ୍ରହଣ କରି ଭୂମି ଉପରେ ଏକ ମୂର୍ତ୍ତି ଅଙ୍କନ କଲେ ଓ ତତ୍ପରେ ଗଣନା କରି କହିଲେ, "ଆଚାର୍ଯ୍ୟଙ୍କର ଏଠାରେ ରହିବା ଶ୍ରେୟସ୍କର । ପଞ୍ଚ ଭାରତରେ ସନ୍ନ୍ୟାସୀ ଗୃହସ୍ଥ ସମସ୍ତେ ତାହାଙ୍କୁ ଯଥେଷ୍ଟ ସମ୍ମାନ କରନ୍ତି । ଏହିଠାକୁ ଆଗମନ ଭଳି ସିଦ୍ଧିଲାଭପୂର୍ବକ ସ୍ୱଦେଶକୁ ପ୍ରତ୍ୟାଗମନ କରିବା ସମୟ ମଧ୍ୟ ତାଙ୍କ ଭାଗ୍ୟାନୁକୂଳ; କିନ୍ତୁ ଏଠାରେ ରହିବା ପରି ନୁହେଁ । ତାଙ୍କ ପରମାୟୁ

ଦଶବର୍ଷ ବୃଦ୍ଧିହେବ । କିନ୍ତୁ ଯଦି ସେ ବର୍ତ୍ତମାନ ସୌଭାଗ୍ୟର ସ୍ଥାୟିତ୍ୱ ସମ୍ବନ୍ଧରେ ପ୍ରମାଣ ଗ୍ରହଣ କରିବାକୁ ଇଚ୍ଛା କରନ୍ତି, ତାହାହେଲେ କିଛି ପାଇ ପାରିବେ ନାହିଁ ।

---

## ଭବିଷ୍ୟତବେତ୍ତା ନିର୍ଗ୍ରନ୍ଥ— ସ୍ୱଦେଶ ପ୍ରତ୍ୟାଗମନ ସଙ୍କଳ୍ପ

ହୁଏନ୍‌ସାଂ ପୁନର୍ବାର ପ୍ରଶ୍ନ କଲେ, ଗୃହକୁ ପ୍ରତ୍ୟାଗମନ କରିବା ମୋର ଇଚ୍ଛା; କିନ୍ତୁ ମୁଁ ବହୁସଂଖ୍ୟକ ମୂର୍ତ୍ତି ଓ ଧର୍ମପୁସ୍ତକ ସଂଗ୍ରହ କରିଥିବାରୁ ସେ ସମସ୍ତ ଯେନି ଗୃହରେ ପହଞ୍ଚି ପାରିବି କି ନାହିଁ, ଜାଣି ପାରୁ ନାହିଁ ।

ନିର୍ଗ୍ରନ୍ଥ କହିଲେ, ଆପଣ ଚିନ୍ତା କରନ୍ତୁ ନାହିଁ । ଶିଳାଦିତ୍ୟ ରାଜ ଓ କୁମାରରାଜ ଆପଣଙ୍କ ରକ୍ଷକରୂପେ ଲୋକ ପ୍ରେରଣ କରିବେ ଓ ଆପଣ ନିର୍ବିଘ୍ନରେ ଗୃହକୁ ପ୍ରତ୍ୟାଗମନ କରିବେ ।

ହୁଏନ୍‌ସାଂ ଉତ୍ତର କଲେ, "ମୁଁ ଏହି ନରପତିଦ୍ୱୟଙ୍କ ସାକ୍ଷାତ୍ ଅଦ୍ୟାପି ଲାଭ କରି ପାରି ନାହିଁ । ମୋ ପ୍ରତି କିପରି ସେମାନେ ଦୟା ପ୍ରଦର୍ଶନ କରିବେ ?"

ନିର୍ଗ୍ରନ୍ଥ କହିଲେ, "କୁମାରରାଜ ଆପଣଙ୍କୁ ତାଙ୍କ ରାଜଧାନୀକୁ ନିମନ୍ତ୍ରଣ କରି ନେବା ସକାଶେ ଦୂତ ପ୍ରେରଣ କରି ସାରିଅଛନ୍ତି । ସେମାନେ ଆଉ ଦୁଇ ତିନଦିନରେ ଏଠାରେ ପହଞ୍ଚିବେ । ଆପଣ କୁମାରଙ୍କ ସହିତ ସାକ୍ଷାତ୍ କରି ଶିଳାଦିତ୍ୟଙ୍କ ଦର୍ଶନ ମଧ୍ୟ ଲାଭ କରିବେ ।" ଏହା କହି ସେ ଚାଲିଗଲେ ।

ହୁଏନ୍‌ସାଂ ସ୍ୱଦେଶାଭିମୁଖରେ ଯାତ୍ରା କରିବା ସକାଶେ ସଙ୍କଳ୍ପ କରି ତାହାଙ୍କ ସଂଗୃହୀତ ମୂର୍ତ୍ତି ଓ ପୁସ୍ତକସମୂହ ପ୍ରତି ମନୋଯୋଗ ପ୍ରଦାନ କଲେ । ଏହି ବିଷୟରୁ ଅବଗତ ହୋଇ ସନ୍ନ୍ୟାସିଗଣ ତାହାଙ୍କୁ ରହିବା ସକାଶେ ଅନୁରୋଧ କଲେ । ସେମାନେ କହିଲେ, "ଭାରତବର୍ଷ

ବୁଦ୍ଧଦେବଙ୍କ ଜନ୍ମସ୍ଥାନ । ସେ ଇହ ସଂସାର ତ୍ୟାଗ କରିଅଛନ୍ତି ସତ୍ୟ; କିନ୍ତୁ ତାହାଙ୍କ ପବିତ୍ର ନିଦର୍ଶନସବୁକଳ ରଖି ଯାଇଅଛନ୍ତି । ଏ ସମସ୍ତ ଦର୍ଶନ ଓ ପୂଜା କରିବାଠାରୁ ଅଧିକ ସୁଖକର ଆଉ କଣ ହୋଇପାରେ ? ଆପଣ ଏବେ ଦୂର ଦେଶକୁ ଆସି ଫେରିଯିବାକୁ ମନ ବଳାଇଅଛନ୍ତି ? ଚୀନ ମ୍ଳେଚ୍ଛ ଦେଶ । ସେଠାରେ ପ୍ରସିଦ୍ଧ ଧର୍ମ-ପରାୟଣ ବ୍ୟକ୍ତି କେହି ନାହାନ୍ତି; ସୁତରାଂ ବୁଦ୍ଧଗଣ ସେହି ଦେଶରେ କେବେ ଜନ୍ମଗ୍ରହଣ କରନ୍ତି ନାହିଁ । ଉକ୍ତ ଦେଶବାସୀଙ୍କ ମନ ଅତି ସଂକୀର୍ଣ୍ଣ ଓ ବୁଦ୍ଧି ସ୍ଥୂଳ; ସୁତରାଂ ଋଷି, ସନ୍ନ୍ୟାସୀ କେହି ଏଠାରୁ ସେହି ଦେଶକୁ ଯାଆନ୍ତି ନାହିଁ । ଦେଶ ଶୀତପ୍ରଧାନ ଓ ରୁକ୍ଷ । ଏ ସମସ୍ତ ମଧ୍ୟ ଆପଣଙ୍କ ଭାବନାର ବିଷୟ ।”

ହୁଏନ୍‌ସାଂ ଉତ୍ତର କଲେ, “ଧର୍ମରାଜ ବୁଦ୍ଧ ତାହାଙ୍କ ତତ୍ତ୍ୱ ପ୍ରତିଷ୍ଠା ସମୟରେ ଇଚ୍ଛା କରିଥିଲେ ଯେ, ତାହା ବିଶ୍ୱବ୍ୟାପୀ ହେବ । ତାହାହେଲେ ଯେଉଁମାନେ ତହିଁରୁ ଇଷ୍ଟ ଲାଭ କରିଅଛନ୍ତି, ସେମାନେ ଜ୍ଞାନହୀନ ଲୋକଙ୍କୁ କିପରି ବଞ୍ଚିତ କରିବେ ? ଚୀନ ଦେଶରେ ଉପରତନ ଶାସନକର୍ତ୍ତାମାନେ ସମସ୍ତେ ଉଚ୍ଚପଦସ୍ଥ, ଆଇନ ସର୍ବତ୍ର ସମ୍ମାନିତ ହୁଏ । ରାଜପ୍ରଜାଗଣ ପବିତ୍ର ଚରିତ୍ର ହୁଅନ୍ତି । ମନ୍ତ୍ରୀଗଣ ରାଜଭକ୍ତ । ପିତାମାତା ସ୍ନେହପରାୟଣ, ସନ୍ତାନସନ୍ତତିଗଣ ଆଜ୍ଞାକାରୀ । ସାଧୁତା, ନ୍ୟାୟପରାୟଣତା, ବନ୍ଧୁତ୍ୱ ଓ ସରଳତା ଅତ୍ୟନ୍ତ ଆଦୃତ ହୁଏ । ଅଧିକନ୍ତୁ ସେମାନଙ୍କ ଜ୍ଞାନ କେଡ଼େ ଗଭୀର ଓ ରହସ୍ୟପୂର୍ଣ୍ଣ, ଜ୍ଞାନାଦର୍ଶ କେଡ଼େ ସ୍ୱର୍ଗୀୟ, ନୀତିସମୂହ ସ୍ୱର୍ଗ ସହ ଏକତା ସ୍ଥାପନ କରିଅଛି । ସୂର୍ଯ୍ୟାଦି ସପ୍ତଗ୍ରହ ସେମାନଙ୍କ ସାହାଯ୍ୟରେ ଜ୍ଞାନ ପ୍ରାପ୍ତ ହୋଇଅଛନ୍ତି । ଦେଶବାସୀଗଣ ଯନ୍ତ୍ରାଦି ନିର୍ମାଣ, ଷଡ୍‌ଋତୁ ବିଭାଗ ଓ ସଙ୍ଗୀତର ଷଟ୍‌ସ୍ୱର ଉଦ୍ଭାବନ କରନ୍ତି; ପକ୍ଷୀ, ପଶୁପାଳନ ଓ ବିତାଡ଼ନା, ଭୂତ ପ୍ରେତାଦିଙ୍କ ସ୍ୱେଚ୍ଛାଧୀନ ଓ ପ୍ରକୃତିର ପ୍ରଭାବସମୂହ ପ୍ରଶମିତ

କରିବାରେ ସମର୍ଥ ଅଟନ୍ତି । ବୁଦ୍ଧଙ୍କ ପ୍ରତିପାଦିତ ତତ୍ତ୍ୱସମୂହ ପ୍ରାଚ୍ୟ ଭୂଖଣ୍ଡରେ ପ୍ରବିଷ୍ଟ ହେବା ଦିବସଠାରୁ ସେମାନେ ମହାଯାନକୁ ଅତ୍ୟନ୍ତ ଆଦର କରନ୍ତି । ଧ୍ୟାନରେ ସେମାନେ ସ୍ଥିରନିର୍ମଳ ଜଳ ତୁଲ୍ୟ । ନୈତିକ ଜୀବନରେ ସେମାନଙ୍କ କୀର୍ତ୍ତି ପ୍ରସ୍ଫୁଟିତ ପୁଷ୍ପର ସୌରଭ ତୁଲ୍ୟ । କାର୍ଯ୍ୟରେ ସେମାନେ ହୃଦୟକୁ ନିୟୋଜିତ କରନ୍ତି । ସେମାନଙ୍କର ଦୃଢ଼ ପ୍ରତିଜ୍ଞା ଏହି ଯେ, ସେମାନେ ପୂର୍ଣ୍ଣମାତ୍ରାରେ ଧର୍ମ ଅର୍ଜନ କରିବେ ଓ ଶରୀର ଚନ୍ଦ୍ରାଦିତ୍ୟବତ୍ ନିର୍ଗୁଣାତ୍ମକ ଶରୀର ଓ ଜୀବନର ପୂର୍ଣ୍ଣାବସ୍ଥା ପ୍ରାପ୍ତି ସକାଶେ ପ୍ରସ୍ତୁତ ହେବେ । ମହାତ୍ମା ବୁଦ୍ଧ ଇହ ସଂସାରରେ ଅବତୀର୍ଣ୍ଣ ହେଲା ଉତ୍ତାରେ ସ୍ୱହସ୍ତରେ ଧର୍ମଶିକ୍ଷାର ଧ୍ୱଜ ଉତ୍ତୋଳନ କରି ପବିତ୍ର ଧର୍ମତତ୍ତ୍ୱ ପ୍ରଚାର କରିଥିଲେ । ତତ୍ପରେ ତାହାଙ୍କ କନକକାନ୍ତିପୂର୍ଣ୍ଣ ମଧୁମୟ ରୂପ ଲୋକଚକ୍ଷୁ ସମକ୍ଷରେ ପ୍ରଦର୍ଶିତ ହେଲା । ତଥାପି ସେ ଦୀର୍ଘ କର୍ମମୟ ଜୀବନର ଲକ୍ଷ୍ୟ ସାଧନରେ ଅଗ୍ରସର ହୋଇଅଛନ୍ତି । କିପରି ଆପଣମାନେ କହିବେ ଯେ, ଚୀନର ନଗଣ୍ୟତା ଯୋଗୁଁ ସେହି ଦେଶକୁ ସେ ଯାଇ ନ ଥିଲେ ।”

ସେମାନେ କହିଲେ, “ଧର୍ମଶାସ୍ତ୍ରରୁ ଜଣାଯାଏ ଯେ, ଧର୍ମପ୍ରବଣତାର ତାରତମ୍ୟାନୁସାରେ ପ୍ରତି ଦେଶ ଧନଶାଳୀ ଅଥବା ନିର୍ଦ୍ଧନ ହୁଏ । ଚୀନ୍ ଦେଶକୁ ଦ୍ରଷ୍ଟବ୍ୟାବଧିନ କରିବା ଅପେକ୍ଷା ବୁଦ୍ଧଙ୍କ ଜନ୍ମସ୍ଥାନ ଜମ୍ବୁଦ୍ୱୀପରେ ଅବସ୍ଥାନ କରିବା ଆପଣଙ୍କ ପକ୍ଷରେ ସର୍ବତୋଭାବେ ଶ୍ରେୟସ୍କର । ଯେହେତୁ ଚୀନ ପୃଥିବୀର ସୀମାନ୍ତବର୍ତ୍ତୀ ଓ ଏକ ମନ୍ଦ ଦେଶ । ସେହି ପୁଣ୍ୟହୀନ ଦେଶକୁ ଆପଣଙ୍କ ନ ଫେରିବା ସକାଶେ ଆମ୍ଭେମାନେ ସନିର୍ବନ୍ଧ ଅନୁରୋଧ କରୁଅଛୁଁ ।”

ହୁଏନ୍‌ସାଂ ଉତ୍ତର କଲେ, “ବିମଳକୀର୍ତ୍ତି ତାହାଙ୍କ ଶିଷ୍ୟଙ୍କୁ ପଚାରିଥିଲେ, ସୂର୍ଯ୍ୟ ଜମ୍ବୁଦ୍ୱୀପ ଉପରେ କାହିଁକି ପରିଭ୍ରମଣ କରନ୍ତି ?

ଓ ସେ ଉତ୍ତର କରିଥିଲେ, 'ଅନ୍ଧକାର ଦୂର କରିବା ସକାଶେ ।' ଏହି କାରଣରୁ ମୁଁ ମଧ୍ୟ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବାକୁ ସଂକଳ୍ପ କରିଅଛି ।"

ସନ୍ନ୍ୟାସିଗଣ ତାହାଙ୍କ ଅନୁକୂଳ ମତର ସମ୍ଭାବନା ନ ଦେଖି ଆଚାର୍ଯ୍ୟଶ୍ରେଷ୍ଠ ଶୀଳଭଦ୍ରଙ୍କ ନିକଟକୁ ଗମନପୂର୍ବକ ସ୍ୱୀୟ ଅଭିପ୍ରାୟ ଜ୍ଞାପନ କରିବାକୁ ତାହାଙ୍କୁ ଅନୁରୋଧ କଲେ । ଶୀଳଭଦ୍ର ତାହାଙ୍କୁ ସମ୍ବୋଧନ କରି କହିଲେ, "ଆପଣ କାହିଁକି ଏ ସଂକଳ୍ପ କରିଅଛନ୍ତି ?" ସେ ଉତ୍ତର କଲେ, "ଏହି ଦେଶ ବୁଦ୍ଧଙ୍କ ଜନ୍ମସ୍ଥଳ; ସୁତରାଂ ଏହା ପ୍ରତି ପ୍ରୀତି ପ୍ରଦର୍ଶନ ନ କରିବା ଅସମ୍ଭବ । ସ୍ୱଦେଶବାସୀଙ୍କ ମଙ୍ଗଳାର୍ଥେ ଧର୍ମତତ୍ତ୍ୱାନୁସନ୍ଧାନ ଉଦ୍ଦେଶ୍ୟରେ ମୁଁ ଏହି ଦେଶକୁ ଆଗମନ କରିଥିଲି । ଏହି ଦେଶରେ ଉପସ୍ଥିତ ହେଲି ଦିବସରୁ ଆପଣମାନେ ମୋ ସକାଶେ ଯୋଗାଚାର୍ଯ୍ୟ ଭୂମିଶାସ୍ତ୍ର ବ୍ୟାଖ୍ୟାନ କରି ମୋର ସନ୍ଦେହ ମୋଚନ କରିବା ସକାଶେ ତତ୍ପର ହୋଇଅଛନ୍ତି । ମୁଁ ଭିନ୍ନ ଭିନ୍ନ ଧର୍ମକ୍ଷେତ୍ର ପରିଦର୍ଶନ କରି ପୂଜା ପ୍ରଦାନ କରିଅଛି ଓ ଭିନ୍ନ ଭିନ୍ନ ମତାବଲମ୍ବୀ ପଣ୍ଡିତମାନଙ୍କ ମୁଖରୁ ଶାସ୍ତ୍ରବ୍ୟାଖ୍ୟାନ ଶ୍ରବଣ କରିଅଛି । ଏଥିରେ ମୋର ମନ ଆନନ୍ଦରେ ପରିପୂର୍ଣ୍ଣ ହୋଇଅଛି । ଏହି ଦେଶ ପର୍ଯ୍ୟଟନ ମୋ ପକ୍ଷରେ ଅଶେଷ ଉପକାର ସାଧନ କରିଅଛି । ମୋର ଇଚ୍ଛା ବର୍ତ୍ତମାନ ମୋର ଅଧୀତ ଓ ଶ୍ରୁତ ବିଷୟସମୂହ ମୋର ଦେଶବାସୀଙ୍କୁ ଦାନ କରିବି । ସେ ସମସ୍ତ ଶ୍ରବଣ ଓ ହୃଦୟଙ୍ଗମ କରି ସେମାନେ ମଧ୍ୟ ଆପଣଙ୍କ ସହିତ କୃତଜ୍ଞତା-ପାଶରେ ଆବଦ୍ଧ ହେବେ । ଏହି ହେତୁରୁ ମୁଁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରି ସେମାନଙ୍କ ମଧ୍ୟରେ ଅବସ୍ଥାନ କରିବା ସକାଶେ ଆଉ ବିଳମ୍ବ କରିବାକୁ ଇଚ୍ଛୁକ ନୁହେଁ ।"

---

## ଶୀଳଭଦ୍ରଙ୍କ ଅନୁମୋଦନ ପତ୍ରପ୍ରାପ୍ତି

ଶୀଳଭଦ୍ର ଆନନ୍ଦ ସହକାରେ ଉତ୍ତର କଲେ, "ଏହି ଉକ୍ତି-ସଫଳ ବୋଧିସତ୍ତ୍ୱଙ୍କ ଅନୁରୂପ ଆପଣଙ୍କ ସଦଭିପ୍ରାୟର ମୁଁ ଅନୁମୋଦନ କରୁଛି । ବର୍ତ୍ତମାନ ମୁଁ ଆପଣଙ୍କ ଯାହା ପାଇଁ ଅନୁକୂଳ ବ୍ୟବସ୍ଥା କରିବି । ବନ୍ଧୁଗଣ ଆଉ ଏହାଙ୍କୁ କଷ୍ଟ ଦେବା ଉଚିତ ନୁହେଁ ।" ଏହା କହି ଶୀଳଭଦ୍ର ତାହାଙ୍କ କକ୍ଷରେ ପ୍ରବେଷ୍ଟ ହେଲେ । ଦୁଇଦିନ ଉତ୍ତାରେ କୁମାରରାଜଙ୍କ ଦୂତ ପତ୍ର ଆଣି ତାଙ୍କ ହସ୍ତରେ ପ୍ରଦାନ କଲା । ସେ ଲେଖିଥିଲେ, "ଆପଣଙ୍କ ଶିଷ୍ୟ ଚୀନ ଦେଶବାସୀ ଆଚାର୍ଯ୍ୟଙ୍କୁ ଦର୍ଶନ କରିବା ସକାଶେ ଇଚ୍ଛୁକ ହୋଇଅଛି । ମୋର ଅନୁରୋଧ, ଆପଣ ତାହାଙ୍କୁ ପ୍ରେରଣ କରି ମୋର ଇଚ୍ଛା ପୂର୍ଣ୍ଣ କରିବେ ।"

ପତ୍ର ପ୍ରାପ୍ତ ହୋଇ ଶୀଳଭଦ୍ର ପଣ୍ଡିତମଣ୍ଡଳୀ ସମକ୍ଷରେ କହିଲେ, "କୁମାରରାଜ ହୁଏନ୍‌ସାଂଙ୍କୁ ତାହାଙ୍କ ରାଜଧାନୀକୁ ନିମନ୍ତ୍ରଣ କରିଅଛନ୍ତି; କିନ୍ତୁ ଶୀଳାଦିତ୍ୟ ରାଜାଙ୍କ ପ୍ରାସାଦକୁ ଯାଇ ସେଠାରେ ହୀନଯାନାବଲମ୍ବୀ ଆଚାର୍ଯ୍ୟଗଣଙ୍କ ସହିତ ଶାସ୍ତ୍ରାଲୋଚନା ସକାଶେ ତାହାଙ୍କୁ ଅନୁରୋଧ କରିବା ନିମିତ୍ତ ଆମ୍ଭେମାନେ ସମସ୍ତେ ସମ୍ମତ ହୋଇଅଛୁ । ସେ ଯଦି କୁମାରରାଜଙ୍କ ନିକଟକୁ ଚାଲିଯାଆନ୍ତି, ତାହାହେଲେ କିପରି ଶୀଳାଦିତ୍ୟ ତାହାଙ୍କ ସାକ୍ଷାତ୍ ଲାଭ କରି ପାରିବେ ? ଅତଏବ ଆମ୍ଭେମାନେ ତାହାଙ୍କୁ କୁମାରରାଜଙ୍କ ନିକଟକୁ ପ୍ରେରଣ କରିବା ନାହିଁ । ତତ୍ପରେ ଦୂତକୁ କହିଲେ, "ଚୀନଦେଶ ଆଚାର୍ଯ୍ୟ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସକାଶେ ଉତ୍କଣ୍ଠିତ ହୋଇଅଛନ୍ତି ; ସୁତରାଂ ସେ କୁମାରରାଜଙ୍କ ଅନୁରୋଧ ରକ୍ଷା କରି ପାରିବେ ନାହିଁ ।"

ଦୂତ ରାଜାଙ୍କ ନିକଟରେ ଏହି ବାର୍ତ୍ତା ପ୍ରଦାନ କଲା । ରାଜା ଆଉ ଏକ ଦୂତ ହସ୍ତରେ ଏହି ମର୍ମରେ ପତ୍ର ପ୍ରେରଣ କଲେ—"ଆଚାର୍ଯ୍ୟ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ସକାଶେ ଉଦ୍‌ବିଗ୍ନ ହୋଇଥିଲେ ହେଁ ଦୟାପୂର୍ବକ

ଅଳ୍ପ ସମୟ ସକାଶେ ଆପଣଙ୍କ ଶିଷ୍ୟ ନିକଟକୁ ଆସନ୍ତୁ । ତାହାଙ୍କ ଯାହାରେ ଆଦୌ ବ୍ୟାଘାତ ହେବ ନାହିଁ । ମୋର ଏହି ସବିନୟ ଅନୁରୋଧ ରକ୍ଷା କରି ଆପଣ ତାହାଙ୍କୁ ପ୍ରେରଣ କରନ୍ତୁ ।" ଶୀଲଭଦ୍ର ଏଥିରେ ସୁଦ୍ଧା ସମ୍ମତ ହେଲେ ନାହିଁ । ରାଜା କ୍ରୋଧାନ୍ୱିତ ହୋଇ ଅନ୍ୟ ଏକ ଦୂତହସ୍ତରେ ଶୀଲଭଦ୍ରଙ୍କଠାକୁ ଏହି ମର୍ମରେ ପତ୍ର ପ୍ରେରଣ କଲେ । "ଆପଣଙ୍କର ଏ ଶିଷ୍ୟ ସାଧାରଣ ମାନବ ଭୁଲି ବିଷୟ ଭୋଗରେ ଲିପ୍ତ ରହି ବୌଦ୍ଧ-ଧର୍ମଶାସ୍ତ୍ରନିହିତ ଚରିତ୍ର-ସଂଶୋଧନ-କାରିଣୀ ଶକ୍ତି ସମ୍ବନ୍ଧରେ ଜ୍ଞାନ ଲାଭ କରି ନାହିଁ । ବିଦେଶାଗତ ଏକ ଆଚାର୍ଯ୍ୟଙ୍କ ନାମ ଶ୍ରବଣ କରି ତାହାର ଶରୀର ଓ ଆତ୍ମା ଆନନ୍ଦରେ ଅଭିଭୂତ ହୋଇଅଛି ଏବଂ ସେ ଆଶା କରିଅଛି ଯେ, ତାହାଙ୍କ ଦର୍ଶନରେ ହୃଦୟରେ ଧର୍ମଭାବ ଉଦିତ ହେବ; କିନ୍ତୁ ତାହାଙ୍କୁ ପ୍ରେରଣ କରିବା ସକାଶେ ବାରମ୍ବାର ଅନୁରୋଧ କଲେ ହେଁ ଆପଣ ତାହା ପ୍ରତ୍ୟାଖ୍ୟାନ କରୁଅଛନ୍ତି । ଆପଣଙ୍କର କଣ ଅଭିପ୍ରାୟ ଯେ, ଏହି ସଂସାର ଚିରକାଳ ଅଜ୍ଞାନ-ତିମିରରେ ଆଚ୍ଛନ୍ନ ହୋଇ ରହିଥିବ ? ସଂସାରର ମୁକ୍ତି ସକାଶେ ବୁଦ୍ଧଙ୍କ ପ୍ରଦତ୍ତ ଜ୍ଞାନ ବିତରଣରେ କଣ ଆପଣଙ୍କର ଏହି ରୀତି ? ଆଚାର୍ଯ୍ୟଙ୍କୁ ଦର୍ଶନ କରି ତାହାଙ୍କ ପଦତଳରେ ପୂଜା କରିବା ସକାଶେ ମୋର ପ୍ରବଳ ଇଚ୍ଛା ହୋଇଅଛି । ତେଣୁ ତାହାଙ୍କୁ ପ୍ରେରଣ କରିବା ସକାଶେ ଆଉ ଥରେ ଏ ପତ୍ରଦ୍ୱାରା ଆପଣଙ୍କୁ ଅନୁରୋଧ କରୁଅଛି । ଏଥର ଯଦି ସେ ନ ଆସନ୍ତି, ତାହାହେଲେ ଏହି ଶିଷ୍ୟକୁ ତାହାର ଦୁଷ୍ପ୍ରବୃତ୍ତି ଜୟ କରିବ । ଅଳ୍ପଦିନ ପୂର୍ବେ ଶଶାଙ୍କରାଜ ଧର୍ମଶାସ୍ତ୍ର-ସମୂହ ଧ୍ୱଂସ ଓ ବୋଧିଦ୍ରୁମ ଉତ୍ପାଟନ କରିଥିଲେ । ଆପଣ କଣ ମନେ କରନ୍ତି ଯେ, ଏହି ଶିଷ୍ୟର ତଦ୍ରୂପ ଶକ୍ତି ନାହିଁ ? ଆବଶ୍ୟକ ହେଲେ ମୋର ସୈନ୍ୟ ଓ ହସ୍ତୀମାନଙ୍କୁ ସଜ୍ଜିତ କରି ନାଲନ୍ଦମଠ ଆକ୍ରମଣପୂର୍ବକ ମୁହୂର୍ତ୍ତି ମଧ୍ୟରେ ସମସ୍ତ ଧୂଳିସାତ୍ କରିବ । ମୋର ଏହି ବାକ୍ୟ ସୂର୍ଯ୍ୟ

ଭୁଲ୍ ସତ୍ୟ । ମୋର ବିନୀତ ଅନୁରୋଧ, ଆଉ ଥରେ ଏହି ବିଷୟ ଭାବନା କରି କର୍ତ୍ତବ୍ୟ ନିର୍ଦ୍ଧାରଣ କରନ୍ତୁ ।"

---

## କୁମାରରାଜଙ୍କ ନିକଟକୁ ଯାତ୍ରା

ପତ୍ର ପ୍ରାପ୍ତ ହୋଇ ଶୀଲଭଦ୍ର ହୁଏନ୍‌ସାଂଙ୍କୁ ସମ୍ବୋଧନ କରି କହିଲେ, "କୁମାରରାଜ ଧର୍ମପରାୟଣ ପ୍ରବୃତ୍ତିବିଶିଷ୍ଟ ବ୍ୟକ୍ତି । ତାହାଙ୍କ ରାଜ୍ୟରେ ଅଦ୍ୟାପି ବୌଦ୍ଧଧର୍ମତତ୍ତ୍ୱ ପ୍ରଚାରିତ ହୋଇ ନାହିଁ । ଆପଣଙ୍କ ନାମ ଶ୍ରବଣ କଲା ଦିନଠାରୁ ସେ ଆପଣଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇଅଛନ୍ତି । ମୋର ଅନୁମାନ, ଆପଣ ଇହ ଜୀବନଯାକ ତାହାଙ୍କ ସହିତ ବନ୍ଧୁତ୍ୱ-ସୂତ୍ରରେ ଆବଦ୍ଧ ହୋଇ ରହିବେ । ଆପଣ ତାହାଙ୍କ ନିକଟକୁ ଗମନ କରନ୍ତୁ । ସଂସାରର ମଙ୍ଗଳାର୍ଥେ ଏହି ଧର୍ମର ଶିଷ୍ୟତ୍ୱ ଗ୍ରହଣ କରିଅଛନ୍ତି । ଏହାହିଁ ଆପଣଙ୍କ ପକ୍ଷେ ସୁଯୋଗ । ବୃକ୍ଷକୁ ବିନଷ୍ଟ କରିବାକୁ ହେଲେ ମୂଳଚ୍ଛେଦନ କଲା ମାତ୍ରକେ ଶାଖାପ୍ରଶାଖା ବିନଷ୍ଟ ହୁଏ । ତାହାଙ୍କ ରାଜ୍ୟରେ ଉପସ୍ଥିତ ହୋଇ ଆପଣ ରାଜାଙ୍କ ହୃଦୟରେ ଧର୍ମଭାବ ଜାଗ୍ରତ କରନ୍ତୁ । ତାହାହେଲେ ତାହାଙ୍କ ପ୍ରଜାବୃନ୍ଦଙ୍କ ହୃଦୟରେ ତାହା ପ୍ରବିଷ୍ଟ ହେବ; କିନ୍ତୁ ଆପଣ ଯଦି ଯିବାକୁ ଅସ୍ୱୀକାର କରନ୍ତି, ତାହାହେଲେ ଅମଙ୍ଗଳ ହେବ । ସାମାନ୍ୟ କଷ୍ଟ ସ୍ୱୀକାର କରିବା ସକାଶେ କୁଣ୍ଠିତ ହୁଅନ୍ତୁ ନାହିଁ ।"

ହୁଏନ୍‌ସାଂ ଆଚାର୍ଯ୍ୟଙ୍କଠାରୁ ବିଦାୟ ଗ୍ରହଣ କରି ଦୂତଙ୍କ ସମଭିବ୍ୟାହାରରେ ପ୍ରସ୍ଥାନ କଲେ ଓ ଯଥାସମୟରେ ସେଠାରେ ଉପନୀତ ହେଲେ । ରାଜା ତାହାଙ୍କ ଦର୍ଶନରେ ଅତିଶୟ ପ୍ରୀତ ହେଲେ । ତତ୍ପରେ ପାରିଷଦ୍‌ବର୍ଗ ସମଭିବ୍ୟାହାରରେ ତାହାଙ୍କୁ ଦର୍ଶନ କରି ସାତିଶୟ ସମ୍ମାନପୁରଃସର ତାହାଙ୍କ ପ୍ରାସାଦାଭ୍ୟନ୍ତରକୁ ଘେନିଗଲେ ।

ପ୍ରତ୍ୟହ ସଙ୍ଗୀତାଦି ଉତ୍ସବ, ଧୂପଦାନ ଓ ପୁଷ୍ପୋପହାରଦ୍ୱାରା ତାହାଙ୍କ ଅର୍ଚ୍ଚନା କଲେ ଓ ସାଧାରଣ ପର୍ବ ଦିବସର ନିୟମ ପାଳନ ସକାଶେ ତାହାଙ୍କୁ ଅନୁରୋଧ କଲେ ।

---

## କାବୁ ଗର୍‌ରେ ପ୍ରବେଶ

ଏହି ପ୍ରକାରେ ମାସାଧିକ କାଳ ଅତିବାହିତ ହେଲା । ରାଜା ଶୀଲାଦିତ୍ୟ କଙ୍ଗୋଧ ଅଭିଯାନରୁ ପ୍ରତ୍ୟାବୃତ୍ତ ହୋଇ ଶୁଣିଲେ ଯେ, ହୁଏନ୍‌ସାଂ କୁମାରଙ୍କ ସହିତ ଅବସ୍ଥାନ କରୁଅଛନ୍ତି । ବିସ୍ମୟସହକାରେ ସେ କହିଲେ, "ଇତିପୂର୍ବେ ଏଠାକୁ ଆସିବାକୁ ତାହାଙ୍କୁ ବାରଂବାର ଅନୁରୋଧ କରିଥିଲି । ତଥାପି ସେ ଏଠାକୁ ନ ଆସି କିପରି ସେଠାରେ ଅବସ୍ଥାନ କରୁଅଛନ୍ତି ?" ତତ୍ପରେ ତାହାଙ୍କୁ ଅନତିବିଳମ୍ବେ ପ୍ରେରଣ କରିବା ସକାଶେ କୁମାରରାଜଙ୍କ ନିକଟକୁ ଦୂତ ପ୍ରେରଣ କଲେ । କୁମାରରାଜ ଉତ୍ତରରେ କହିଲେ, "ମୋର ମୁଣ୍ଡ ନେଇ ପାରନ୍ତି; କିନ୍ତୁ ହୁଏନ୍‌ସାଂଙ୍କୁ ନେଇ ପାରିବେ ନାହିଁ ।" ଦୂତ ତାହାଙ୍କୁ ଏହି ବାର୍ତ୍ତା ପ୍ରଦାନ କଲାରୁ ରାଜା ଶୀଲାଦିତ୍ୟ କ୍ରୋଧାନ୍ୱିତ ହୋଇ ପାରିଷଦବର୍ଗଙ୍କୁ ସମବେତ କରି କହିଲେ, "କୁମାରରାଜ ମୋତେ ଘୃଣା କରନ୍ତି । ସାମାନ୍ୟ ଜଣେ ସନ୍ନ୍ୟାସୀ ସକାଶେ କିପରି ସେ ଏଡ଼େ ରୂଢ଼ ବାକ୍ୟ ପ୍ରୟୋଗ କରିବାରେ ସାହସୀ ହେଲେ ?"

ତତ୍ପରେ ରାଜା ଶୀଲାଦିତ୍ୟ ତାହାଙ୍କ ନିକଟକୁ ଆଉ ଏକ ଦୂତ ପ୍ରେରଣ କଲେ । ଦୂତ ତାହାଙ୍କ ଆଦେଶାନୁସାରେ କୁମାରରାଜଙ୍କୁ କହିଲା, "ଶୀଲାଦିତ୍ୟଙ୍କ ଆଦେଶ ଯେ, ଆପଣ ଏହି ଦୂତ ହସ୍ତରେ ଆପଣଙ୍କ ମୁଣ୍ଡ ପ୍ରେରଣ କରନ୍ତୁ ।"

କୁମାରରାଜ ନିଜର ଅବିମୃଷ୍ୟକାରିତା ଯୋଗୁଁ ଅତ୍ୟନ୍ତ ଭୀତ ହୋଇ ବିଂଶ ସହସ୍ର ହସ୍ତୀ ଓ ତ୍ରିଂଶତ୍ ସହସ୍ର ତରୀ ସଜ୍ଜିତ କରିବା

ସକାଶେ ଆଦେଶ କଲେ । ତହୁଁରେ ହୁଏନ୍‌ସାଂଙ୍କ ସହିତ ତରୀ ଆରୋହଣ କରି ଗଙ୍ଗାନଦୀରେ ଶୀଲାଦିତ୍ୟଙ୍କ ରାଜଧାନୀ ଅଭିମୁଖରେ ଯାତ୍ରାକଲେ । ସେ 'କାଜୁଙ୍ଗିର'ରେ ଉପସ୍ଥିତ ହୋଇ ଗଙ୍ଗା ନଦୀର ଉତ୍ତର କୂଳରେ ଶିବିର ସ୍ଥାପନ କଲେ ଓ ତହୁଁରେ ହୁଏନ୍‌ସାଂଙ୍କୁ ରଖି ଦେଇ ମନ୍ତ୍ରିଗଣଙ୍କ ସମଭିବ୍ୟାହାରରେ ଶୀଲାଦିତ୍ୟଙ୍କ ସହିତ ସାକ୍ଷାତ୍ କରିବା ସକାଶେ ପ୍ରସ୍ଥାନ କଲେ ।

ଶୀଲାଦିତ୍ୟ ତାହାଙ୍କ ଦର୍ଶନରେ ଯତ୍‌ପରୋନାସ୍ତି ପ୍ରୀତ ହେଲେ ଓ ହୁଏନ୍‌ସାଂଙ୍କ ପ୍ରତି ତାହାଙ୍କ ପ୍ରଗାଢ ଭକ୍ତି ବିଷୟ ଅବଗତ ହୋଇ ଆଉ ଶ୍ରୀତିବ୍ୟଞ୍ଜକ ବାକ୍ୟ ପ୍ରୟୋଗ କଲେ ନାହିଁ । କେବଳ ପଚାରିଲେ, "ଚୀନ-ଆଗନ୍ତୁକ କେଉଁଠାରେ ଅଛନ୍ତି ?" କୁମାରରାଜ ଉତ୍ତର କଲେ, "ସେ ମନ୍ତ୍ରିକଣ୍ଠସ୍ଥ ଶିବିରରେ ଅଛନ୍ତି ।" ଶୀଲାଦିତ୍ୟ କହିଲେ, "ଆପଣଙ୍କ ସଙ୍ଗେ କାହିଁକି ଆସିଲେ ନାହିଁ ?" କୁମାରରାଜ କହିଲେ, "ମହାରାଜଙ୍କର ସାଧୁମାନଙ୍କ ପ୍ରତି ସମ୍ମାନ ଓ ଧର୍ମାନୁରାଗ ଅଛି । ଆପଣ କଥୋପକଥନ ସକାଶେ ତାହାଙ୍କୁ ଡକାଇ ଆଣନ୍ତୁ ।"

---

## ଶୀଲାଦିତ୍ୟ ରାଜ ଓ ସିନ୍‌ରାଜ

ଶୀଲାଦିତ୍ୟ କହିଲେ, "ଉତ୍ତମ, ବର୍ତ୍ତମାନ ଆପଣ ଯାଇ ପାରନ୍ତି । ମୁଁ କାଲି ଆସିବି ।"

କୁମାର ଶିବିରକୁ ପ୍ରତ୍ୟାବର୍ତ୍ତନ କରି ହୁଏନ୍‌ସାଂଙ୍କୁ ସମସ୍ତ ବିଷୟ ଜ୍ଞାପନ କଲେ ଓ କହିଲେ, "ମୋର ସନ୍ଦେହ, ଶୀଲାଦିତ୍ୟ କାଲି ଆସିବେ ବୋଲି କହିଥିଲେ ସୁଦ୍ଧା ଆଜି ରାତିରେ ଆସିବେ । ଆମ୍ଭେମାନେ ତାହାଙ୍କ ଅଭିବାଦନ ସକାଶେ ପ୍ରସ୍ତୁତ ରହିବା । ସେ ଆସିଲେ ସୁଦ୍ଧା ଆପଣଙ୍କର ବିଚଳିତ ହେବାର କୌଣସି କାରଣ ନାହିଁ ।"

ହୁଏନ୍‌ସାଂ କହିଲେ, "ହୁଏନ୍‌ସାଂ ଧର୍ମପଥର ପଥିକ । ସେ ବୁଦ୍ଧ ପ୍ରତିପାଦିତ ଧର୍ମୋପଦେଶାନୁଯାୟୀ କାର୍ଯ୍ୟ କରିବ ।"

ପ୍ରକୃତରେ ଶୀଲାଦିତ୍ୟ ରାତ୍ରିର ପ୍ରଥମ ପ୍ରହରରେ ଆସି ଉପସ୍ଥିତ ହେଲେ । ତତ୍ରତ୍ୟ କେତେକ ଲୋକ କହିଲେ, "ନଦୀ ମଧ୍ୟରେ ଅସଂଖ୍ୟ ପ୍ରଜ୍ୱଳିତ ମଶାଲ ଦୃଷ୍ଟିଗୋଚର ହେଉଅଛି ଓ ଢକ୍କାବାଦନ ଶ୍ରୁତି-ଗୋଚର ହେଉଅଛି ।"

କୁମାରରାଜ କହିଲେ, "ଏଇ ଦେଖନ୍ତୁ, ଶୀଲାଦିତ୍ୟ ରାଜା ଆସୁ-ଅଛନ୍ତି ।" ତତ୍ପରେ ଭୃତ୍ୟମାନଙ୍କୁ ମଶାଲ ଧାରଣ କରିବାକୁ ଆଦେଶ କଲେ ଏବଂ ଭୃତ୍ୟ ଓ ପାରିଷଦବର୍ଗଙ୍କ ସମଭିବ୍ୟାହାରରେ ତାହାଙ୍କୁ ପାଛୋଟି ଆଣିବା ସକାଶେ ବହୁଦୂର ଗମନ କଲେ । ଶୀଲାଦିତ୍ୟ କୌଣସି ସ୍ଥାନକୁ ବାହାରିଲେ ବହୁ ଶତସଂଖ୍ୟକ ବାଦ୍ୟକାର, ସ୍ୱର୍ଣ୍ଣନିର୍ମିତ ବାଦ୍ୟ ବାଦନ କରି ତାହାଙ୍କ ସମଭିବ୍ୟାହାରରେ ଗମନ କରୁଥିଲେ । ପ୍ରତି ପଦକ୍ଷେପରେ ସୁମଧୁର ସଙ୍ଗୀତ ଉତ୍‌ଥିତ ହେଉଥିଲା । ତେଣୁ ବାଦ୍ୟର ନାମ ଥିଲା, ସଙ୍ଗୀତପଦ ବାଦ୍ୟ । ଏହି ବାଦ୍ୟ କେବଳ ଶୀଲାଦିତ୍ୟ ବ୍ୟବହାର କରୁଥିଲେ ଓ ଅନ୍ୟ ରାଜାମାନେ ଏହା ବ୍ୟବହାର କରିବା ନିୟମବିରୁଦ୍ଧ ଥିଲା ।

---

## ଶୀଲାଦିତ୍ୟଙ୍କ ସହିତ ସାକ୍ଷାତ

ଶିବିରରେ ଉପନୀତ ହୋଇ ଶୀଲାଦିତ୍ୟ ହୁଏନ୍‌ସାଂଙ୍କ ଚରଣରେ ପ୍ରଣତ ହେଲେ ଓ ତାହାଙ୍କ ସମ୍ମୁଖରେ ପୁଷ୍ପ ବର୍ଷଣପୂର୍ବକ ଭକ୍ତି-ଗଦ୍‌ଗଦ୍ ହୃଦୟରେ ଅସଂଖ୍ୟ ଶ୍ଳୋକରେ ତାହାଙ୍କ ବନ୍ଦନା କଲେ । ତତ୍ପରେ ତାହାଙ୍କୁ ସମ୍ବୋଧନ କରି କହିଲେ, "ଆପଣଙ୍କର ଏହି ଶିଷ୍ୟ ବହୁଦିନ ହେଲା ଆପଣଙ୍କୁ ନିମନ୍ତ୍ରଣ କରିଥିଲା । ଆପଣ ଏଥିର ଅନୁରୋଧ ରକ୍ଷା କଲେ ନାହିଁ କାହିଁକି ?"

ହୁଏନ୍‌ସାଂ ଉତ୍ତର କଲେ, "ହୁଏନ୍‌ସାଂ ବହୁ ଦୂରରୁ ବୁଦ୍ଧଙ୍କ ଧର୍ମତତ୍ତ୍ୱାନ୍ୱେଷଣ ଓ ଯୋଗଭୂମି ଶାସ୍ତ୍ର ଶ୍ରବଣ ସକାଶେ ଆଗମନ କରିଅଛି । ଆପଣଙ୍କ ଆଦେଶପ୍ରାପ୍ତି ସମୟରେ ତାହାର ସେ ସମସ୍ତ କାର୍ଯ୍ୟ ସମାପ୍ତ ହୋଇ ନ ଥିଲା । ସୁତରାଂ ଆଦେଶପ୍ରାପ୍ତି ମାତ୍ରକେ ଆପଣଙ୍କ ସାକ୍ଷାତ୍ ସକାଶେ ଯାଇ ପାରିଲା ନାହିଁ ।"

ଶୀଳାଦିତ୍ୟ ପୁଣି ପ୍ରଶ୍ନ କଲେ, "ଆପଣ ତ ଚୀନ ଦେଶରୁ ଆସିଅଛନ୍ତି । ଏହି ଶିଷ୍ୟ ଶୁଣିଅଛି ଯେ, ସେହି ଦେଶରେ ସିନ୍ ନାମକ ଏକ ରାଜା ଅଛନ୍ତି ଏବଂ ତାହାଙ୍କ ନାମ ସଙ୍ଗୀତ ନୃତ୍ୟ ଓ ବାଦ୍ୟରେ ସୁଦ୍ଧା କୀର୍ତ୍ତିତ ହେଉଅଛି । ଏହି ରାଜାଙ୍କ କୀର୍ତ୍ତିକଳାପ ସମ୍ବନ୍ଧରେ ମୁଁ ଆଦୌ କିଛି ଅବଗତ ନୁହେଁ । କିପରି ସେ ଏତେ କୀର୍ତ୍ତି ଅର୍ଜ୍ଜନ କଲେ ?"

ହୁଏନ୍‌ସାଂ ଉତ୍ତର କଲେ, "ଚୀନ ଦେଶରେ ଯଦି କେହି ସାଧୁଲୋକଙ୍କ ପାଳନ, ଦେଶବାସୀଙ୍କ ଦୁଃଖ ମୋଚନ ଓ ଜୀବନ୍ତ ପ୍ରାଣୀମାନଙ୍କ ସଯତ୍ନ ପ୍ରତିପାଳନରେ ଖ୍ୟାତି ଲାଭ କରେ, ତେବେ ତାହାର ନାମ ସଂଗୀତାଦିରେ କୀର୍ତ୍ତିତ ହୋଇ ପ୍ରଥମରେ ଉକ୍ତ ସଙ୍ଗୀତରଚକଙ୍କ କୁଳମନ୍ଦିରରେ ଓ ତତ୍ପରେ ଦୂରବର୍ତ୍ତୀ ଗ୍ରାମବାସୀମାନଙ୍କ ମଧ୍ୟରେ ଗୀତ ହୁଏ । ସିନ୍ ଅଧୁନାତନ ଚୀନସମ୍ରାଟଙ୍କ ନାମାନ୍ତର । ସମ୍ରାଟ ଚୀନ ଦେଶରେ ସ୍ୱାଧିକାର ପ୍ରତିଷ୍ଠା କରିବା ପୂର୍ବେ ସେ କେବଳ ଚୀନ-ଯୁବରାଜ ନାମରେ ଅଭିହିତ ଥିଲେ । ଏହା ସେତେବେଳେ ସ୍ୱର୍ଗରେ ଓ ପୃଥିବୀରେ ବିଶୃଙ୍ଖଳାର ଯୁଗ । ରାଜ୍ୟରେ ରାଜା ନ ଥିଲେ, ଶସ୍ୟକ୍ଷେତ୍ର ଓ ପ୍ରାନ୍ତରସମୂହ ମୃତ ନରଦେହରେ ଆଚ୍ଛନ୍ନ ଏବଂ ନଦୀ ଓ ଉପତ୍ୟକା ସେମାନଙ୍କ ରକ୍ତରେ ପରିପୂର୍ଣ୍ଣ ହୋଇଥିଲା । ରାତ୍ରିରେ ଅଶୁଭସୂଚକ ନକ୍ଷତ୍ରଗଣ ଅପକାରକ ଆଲୋକ ବିତରଣ କରୁଥିଲେ । ପ୍ରାତଃକାଳରେ ଦୂଷିତ ବାଷ୍ପ ନିର୍ଗତ

ହୋଇଥିଲା । ନଦୀନିଚୟ ଉଦରସର୍ବସ୍ୱ ଜୀବମାନଙ୍କରେ ଓ ସମୁଦ୍ରଚତୁଷ୍ଟୟ ବିଷାକ୍ତ ସର୍ପମାନଙ୍କରେ ପୂର୍ଣ୍ଣ ହୋଇଥିଲା ।

"ଏହି ସମୟରେ ରାଜପୁତ୍ର ଅତିଶୟ ଉତ୍ସାହରେ ଉତ୍ସାହିତ ହୋଇ ସ୍ୱର୍ଗରାଜ୍ୟର ଆହ୍ୱାନ ଶ୍ରବଣପୂର୍ବକ ସୈନ୍ୟ ସଂଗ୍ରହ କଲେ ଓ ଅତ୍ୟାଚାରୀଗଣଙ୍କୁ ସମୂଳେ ଉଚ୍ଛେଦ କଲେ, ପରଶୁ ଓ ବଲ୍ଲମ ହସ୍ତରେ ସମୁଦ୍ରକୁ ମଧ୍ୟ ଶାନ୍ତିମୟ କଲେ ଏବଂ ଗ୍ରାମବାସୀ ଓ ନଗରବାସୀଙ୍କ ମଧ୍ୟରେ ଶାନ୍ତି ସ୍ଥାପନ କଲେ । ତତ୍ପରେ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରଗଣ ପୂର୍ବ ପରି କିରଣଦାନ କରିବାକୁ ଲାଗିଲେ । ଏସମସ୍ତ କାରଣରୁ ପୃଥିବୀର ହୃଦୟ ତାହାଙ୍କ ପ୍ରତି କୃତଜ୍ଞତାରେ ପୂର୍ଣ୍ଣହେଲା । ତେଣୁ ଆମ୍ଭେମାନେ ତାହାଙ୍କ ପ୍ରଶଂସା ଗାନ କରୁଅଛୁଁ ।"

ରାଜା କହିଲେ, "ଏତାଦୃଶ ବ୍ୟକ୍ତି ହିଁ ପୃଥିବୀ ଶାସନ କରିବା ସକାଶେ ସ୍ୱର୍ଗରୁ ପ୍ରେରିତ ହୋଇଥାଆନ୍ତି ।" ପୁନର୍ବାର ହୁଏନ୍‌ସାଂଙ୍କୁ ସମ୍ବୋଧନ କରି କହିଲେ, "ଆପଣଙ୍କ ଶିଷ୍ୟ ବର୍ତ୍ତମାନ ଏହି ସ୍ଥାନ ତ୍ୟାଗ କରିବ । ଆପଣଙ୍କୁ ତାହା ସହିତ ପ୍ରାସାଦକୁ ଯିବାକୁ ହେବ । ମୋର ବିଶ୍ୱାସ, ଆପଣଙ୍କର କଷ୍ଟ ବା କ୍ଲାନ୍ତି ହେବ ନାହିଁ ।" ଏହା କହି ତାହାଙ୍କଠାରୁ ସେ ବିଦାୟ ଗ୍ରହଣ କଲେ ।

ପରଦିନ ପ୍ରାତଃକାଳରେ ଶୀଲାଦିତ୍ୟ ଦୂତ ପ୍ରେରଣ କଲେ ଓ ହୁଏନ୍‌ସାଂ କୁମାରଙ୍କ ସମଭିବ୍ୟାହାରରେ ତାହାଙ୍କ ପ୍ରାସାଦକୁ ଗମନ କଲେ । ରାଜା ବିଂଶ ଜଣ ଅନୁଚର ସହ ତାହାଙ୍କୁ ପାଛୋଟି ନେଇ-ଗଲେ । ରାଜପ୍ରାସାଦରେ ପ୍ରବିଷ୍ଟ ହୋଇ ସେ ଆସନ ଗ୍ରହଣ କଲାରୁ ସଙ୍ଗୀତଗାନ ଓ ପୁଷ୍ପବର୍ଷଣ ସହ ସୁସ୍ୱାଦୁ ଆହାରସାମଗ୍ରୀ ସେମାନଙ୍କ ସମ୍ମୁଖରେ ସ୍ଥାପିତ ହେଲା ।

ଆହାରାନ୍ତେ ରାଜା କହିଲେ, "ମୁଁ ଶୁଣିଅଛି ଯେ, ଆଚାର୍ଯ୍ୟ ଦୁଷ୍ଟ ମତ ଖଣ୍ଡନ ସକାଶେ କୌଣସି ଶାସ୍ତ୍ର ପ୍ରଣୟନ କରିଅଛନ୍ତି; ତାହା କାହିଁ ?"

ହୁଏନ୍‌ସାଂ ଉତ୍ତର କଲେ, "ଏଠାରେ ଅଛି ।" ତତ୍ପରେ ସେ ତାହା ରାଜାଙ୍କ ହସ୍ତରେ ଅର୍ପଣ କଲେ । ଶୀଲାଦିତ୍ୟ ତାହା ପାଠକରି ଅତ୍ୟନ୍ତ ପ୍ରୀତ ହେଲେ ଏବଂ ତାହାଙ୍କ ଅନୁଚର ଓ ସମବେତ ଅନ୍ୟାନ୍ୟ ବ୍ୟକ୍ତିଙ୍କୁ ସମ୍ବୋଧନ କରି କହିଲେ, "ମୁଁ ଶୁଣିଅଛି ଯେ, ସୂର୍ଯ୍ୟ ଯେତେବେଳେ ସ୍ୱପ୍ରଭା ବିସ୍ତାରପୂର୍ବକ ଉଦିତ ହୁଅନ୍ତି, ସେତେ-ବେଳେ ତାହାଙ୍କ ଆଲୋକରେ ଖଦ୍ୟୋତ ନିଷ୍ପ୍ରଭ ହୁଏ; ବଜ୍ରନାଦରେ ଯେତେବେଳେ ପୃଥିବୀ କମ୍ପିତ ହୁଏ, ହାତୁଡରେ ଶବ୍ଦ ଶ୍ରୁତିଗୋଚର ହୁଏ ନାହିଁ । ତଦ୍ରୂପ ଆଚାର୍ଯ୍ୟଙ୍କ ପ୍ରତିପାଦିତ ଧର୍ମମତଦ୍ୱାରା ଅନ୍ୟ ସମସ୍ତ ମତ ବିନଷ୍ଟ ହୋଇଅଛି ଓ ମୁକ୍ତିଲାଭର ପ୍ରକୃଷ୍ଟ ଉପାୟ-ବିଷୟକ ଆଲୋଚନାରେ ଅନ୍ୟ ଆଚାର୍ଯ୍ୟଗଣ ସ୍ୱମତ ସମ୍ବନ୍ଧୀୟ ଏକ ଶବ୍ଦ ମୁଦ୍ଧା ଉଚ୍ଚାରଣ କରିବାରେ ସାହସୀ ହୋଇ ନାହାନ୍ତି ।"

ରାଜା ପୁନର୍ବାର କହିଲେ, "ଧର୍ମାଚାର୍ଯ୍ୟମାନଙ୍କ ମଧ୍ୟରେ ପ୍ରଧାନ ସ୍ଥବିର ଦେବସେନ ସ୍ୱସମ୍ବନ୍ଧରେ କହିଥିଲେ ଯେ, ଶାସ୍ତ୍ର ବ୍ୟାଖ୍ୟାନରେ ତାହାଙ୍କ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ମଧ୍ୟରେ ସେ ଶୀର୍ଷସ୍ଥାନର ଅଧିକାରୀ ଅଟନ୍ତି ଓ ସେ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଅଛନ୍ତି । କିନ୍ତୁ ସେ ସର୍ବଦା ମହାଯାନ ବିରୁଦ୍ଧରେ ମତ ପ୍ରଚାର କରୁଥିଲେ । ଯେତେବେଳେ ସେ ଆପଣଙ୍କ ଆଗମନ ବାର୍ତ୍ତା ଶ୍ରବଣ କଲେ,ତେତେବେଳେ ବୈଶାଳୀକୁ ଗମନ କରି ଆପଣଙ୍କ ସମ୍ମାନ ପ୍ରଦର୍ଶନ କରିଥିଲେ । ଏ ସମସ୍ତ ବିଷୟରୁ ମୁଁ ମନେ କରୁଅଛି ଯେ, ଶାସ୍ତ୍ରାଲୋଚନାରେ ଏ ସମସ୍ତ ଆଚାର୍ଯ୍ୟଗଣ ଯଥାର୍ଥରେ କ୍ଷମ ନୁହନ୍ତି ।"

---

## ସମ୍ମତୀୟ ମତ

ଶୀଲାଦିତ୍ୟଙ୍କର ଏକ ଭଗିନୀ ଥିଲେ । ସେ ଅତ୍ୟନ୍ତ ବୁଦ୍ଧିମତୀ ଓ ସମ୍ମତୀୟ ମତାବଲମ୍ବୀ ଶାସ୍ତ୍ରସମୂହ ସମ୍ପୂର୍ଣ୍ଣରୂପେ ଅଧ୍ୟୟନ କରିଥିଲେ ।

ରାଜାଙ୍କ ପୃଷ୍ଠଦେଶରେ ଉପବେଶନ କରି ଯେତେବେଳେ ସେ ହୁଏନ୍‌ସାଂଙ୍କ ମୁଖରୁ ମହାଯାନ ତତ୍ତ୍ୱର ମହତ୍ତ୍ୱ ଓ ହୀନଯାନ ତତ୍ତ୍ୱର ହୀନତ୍ୱ ବିଷୟ ଶ୍ରବଣ କଲେ,ତେତେବେଳେ ଆନନ୍ଦଗଦ୍‌ଗଦ-ହୃଦୟରେ ତାହାଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ତତ୍ପରେ ରାଜା କହିଲେ, "ଆପଣଙ୍କ ପ୍ରଣୀତ ଗ୍ରନ୍ଥ ଅତି ଉପାଦେୟ । ମୋର ଏ ସମସ୍ତ ଶିକ୍ଷକ ଓ ଧର୍ମପରାୟଣ ଲୋକସାଧାରଣଙ୍କ ମନରେ ଏହି ଗ୍ରନ୍ଥ ପ୍ରତିପାଦିତ ମତ ଯଥେଷ୍ଟ ପ୍ରତ୍ୟୟ ସମ୍ପାଦନ କରିଅଛି; କିନ୍ତୁ ମୁଁ ମନେ କରେ, ଅନ୍ୟାନ୍ୟ ଦେଶବାସୀ ଭିନ୍ନ ମତାବଲମ୍ବୀ ଲୋକେ ହୀନଯାନ ମତ ଅଦ୍ୟାପି ସମର୍ଥନ କରୁଅଛନ୍ତି । ଅତଏବ କାନ୍ୟକୁବ୍‌ଜର ରାଜଧାନୀରେ ଏକ ପ୍ରକାଣ୍ଡ ସମ୍ମିଳନୀ ଆହ୍ୱାନ କରିବ । ଭାରତବର୍ଷର ଭିନ୍ନ ଭିନ୍ନ ଅଞ୍ଚଳରୁ ଶ୍ରମଣ, ବ୍ରାହ୍ମଣ ଓ ଧର୍ମବିରୋଧୀ ଲୋକଙ୍କୁ ନିମନ୍ତ୍ରଣ କରିବ । ଉକ୍ତ ସମ୍ମିଳନୀରେ ମହାଯାନର ଶ୍ରେଷ୍ଠତ୍ୱ ବିଷୟ ଆଲୋଚିତ ହୋଇ ବିରୁଦ୍ଧ ମତାବଲମ୍ବୀ ଲୋକଙ୍କ ମନରୁ ଭ୍ରାନ୍ତ ଧାରଣା ଦୂରୀଭୂତ ହେବ । ତହିଁରେ ସୁସ୍ପଷ୍ଟ ଭାବରେ ଆପଣଙ୍କ ଗୁଣ ପ୍ରକାଶିତ ହେବ ଓ ସେମାନଙ୍କ ଗର୍ବ ଖର୍ବ ହେବ ।" ସେହି ଦିନ ରାଜା ଭିନ୍ନ ଭିନ୍ନ ଦେଶକୁ ବିଭିନ୍ନ ମତାବଲମ୍ବୀ ଓ ବିଭିନ୍ନ ସମ୍ପ୍ରଦାୟ-ଭୁକ୍ତ ଅଧିବାସୀ ଓ ଶିଷ୍ୟଗଣଙ୍କଠାକୁ କାନ୍ୟକୁବ୍‌ଜର ରାଜଧାନୀକୁ ଆସି ହୁଏନ୍‌ସାଂଙ୍କ ସହିତ ଶାସ୍ତ୍ରାଲୋଚନା କରିବା ସକାଶେ ନିମନ୍ତ୍ରଣ ପ୍ରେରଣ କଲେ । ହୁଏନ୍‌ସାଂ ରାଜାଙ୍କ ସମଭିବ୍ୟାହାରରେ ଶୀତ କାଳର ପ୍ରାରମ୍ଭରେ ଗଙ୍ଗାନଦୀ ପଥରେ ଯାତ୍ରା କରି ବର୍ଷର ଶେଷ ମାସର ପ୍ରାରମ୍ଭରେ ଉକ୍ତ ସମ୍ମିଳନୀରେ ଉପସ୍ଥିତ ହେଲେ ।

ଏହି ସମ୍ମିଳନୀରେ ଭାରତବର୍ଷର ଅଷ୍ଟାଦଶ ଦେଶର ରାଜା, ମହାଯାନ ଓ ହୀନଯାନରେ ପୂର୍ଣ୍ଣଜ୍ଞାନ-ସମ୍ପନ୍ନ ତିନି ସହସ୍ର ଆଚାର୍ଯ୍ୟ, ତିନି ସହସ୍ର ବ୍ରାହ୍ମଣ ଓ ନିର୍ଗ୍ରନ୍ଥ ଓ ନାଳନ୍ଦ ମଠର ଏକ ସହସ୍ର ଆଚାର୍ଯ୍ୟ ସମବେତ ହୋଇଥିଲେ । ଏହି ବିଖ୍ୟାତ ବ୍ୟକ୍ତିଗଣ ସମସ୍ତେ ସାହିତ୍ୟ

ଓ ତର୍କଶାସ୍ତ୍ରରେ ନିପୁଣ ଥିଲେ । ସେମାନଙ୍କ ମଧ୍ୟରୁ କେହି ହସ୍ତିପୃଷ୍ଠରେ, କେହି ରଥରେ, କେହି ଶିବିକାରେ, କେହି ଅବା ଚନ୍ଦ୍ରାତପ ତଳରେ ଅନୁଚର ସହ ଆଗମନ କରିଥିଲେ । ପ୍ରତ୍ୟେକଙ୍କ ଅନୁଚରବର୍ଗଙ୍କଠାରେ ବିଶେଷତ୍ୱ ଲକ୍ଷିତ ହେଉଥିଲା । ଏତେସବୁ ଏ ଲୋକଙ୍କ ଅବସ୍ଥାନରେ ଶୀତକାଳୀନ ମେଘାଚ୍ଛନ୍ନ ଆକାଶ ତୁଲ୍ୟ ବହୁଦୂରବ୍ୟାପୀ ଭୂମି ଏପରି ଭାବରେ ଅଧିକୃତ ହୋଇଥିଲା ଯେ, ସେମାନଙ୍କ ବିଚିତ୍ର ଜାତିଙ୍କ ପତାକା ବା ବର୍ଷାକାଳୀନ ବାରିବିନ୍ଦୁ ସହିତ ତୁଳନା କଲେ ମଧ୍ୟ ଅତ୍ୟୁକ୍ତି ହୋଇ ନ ଥାନ୍ତା ।

---

## ସଭା ସ୍ଥଳରେ ପୂଜାବିଧି

ବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ ଓ ପଣ୍ଡିତମଣ୍ଡଳୀଙ୍କ ଉପବେଶନ ନିମିତ୍ତ ଦୁଇଗୋଟି ତୃଣାଚ୍ଛାଦିତ ଗୃହ ନିର୍ମିତ ହେବା ସକାଶେ ରାଜା ପୂର୍ବରୁ ଆଦେଶ ପ୍ରଦାନ କରିଥିଲେ । ତାହାଙ୍କ ଆଗମନ ଉତ୍ତାରେ ନିର୍ମାଣ କାର୍ଯ୍ୟ ସମାପ୍ତ ହେଲା । ଗୃହଦ୍ୱୟ ଉଚ୍ଚ ଓ ପ୍ରଶସ୍ତ ଏବଂ ପ୍ରତ୍ୟେକରେ ଏକ ସହସ୍ର ବ୍ୟକ୍ତିଙ୍କ ସକାଶେ ଆସନ ପ୍ରସ୍ତୁତ ହୋଇଥିଲା । ରାଜାଙ୍କ ଅବସ୍ଥାନ ସକାଶେ ସମ୍ମିଳନୀ-ଗୃହର ପାଞ୍ଚ ଲି ପଶ୍ଚିମରୁ ଏକ ପ୍ରାସାଦ ନିର୍ମିତ ହୋଇଥିଲା ଓ ତନ୍ମଧ୍ୟରେ ବୁଦ୍ଧଙ୍କ ସ୍ୱର୍ଣ୍ଣମୟୀ ମୂର୍ତ୍ତି ରକ୍ଷିତ ହୋଇଥିଲା । ଉକ୍ତ ମୂର୍ତ୍ତି ହସ୍ତିପୃଷ୍ଠସ୍ଥ ପ୍ରଶସ୍ତ ମଣ୍ଡପରେ ସ୍ଥାପିତ ହେଲା । ମୂର୍ତ୍ତିର ଦକ୍ଷିଣ ପାର୍ଶ୍ୱରେ ଶ୍ୱେତ-ଚାମର-ହସ୍ତରେ ଶକ୍ରବେଶଧାରୀ ରାଜା ଶୀଲାଦିତ୍ୟ ଓ ବାମ ପାର୍ଶ୍ୱରେ ବହୁମୂଲ୍ୟ ଛତ୍ର-ହସ୍ତରେ ବ୍ରହ୍ମରାଜ ବେଶଧାରୀ ରାଜା କୁମାର ଦଣ୍ଡାୟମାନ ହେଲେ । ସେମାନଙ୍କ ଲଲାଟଦେଶ କୁସୁମଦାମ ଓ ରତ୍ନମଣ୍ଡିତ ମୁକୁଟରେ ବିଭୂଷିତ ହୋଇଥିଲା । ଅନ୍ୟ ଦୁଇଗୋଟି ହସ୍ତିପୃଷ୍ଠରେ ରତ୍ନ ଓ ପୁଷ୍ପ ସ୍ଥାପିତ ହେଲା ଓ ବୁଦ୍ଧ ମୂର୍ତ୍ତି ବହନକାରୀ ହସ୍ତୀର ପଦଚାଳନ ସମୟରେ ପ୍ରତି ପଦକ୍ଷେପରେ

ତହିଁରୁ ପୁଷ୍ପବୃଷ୍ଟି ହେଉଥିଲା । ହୁଏନ୍‌ସାଂ ଓ ପ୍ରଧାନ ରାଜଭୃତ୍ୟଗଣ ଏକ ଏକ ହସ୍ତୀ ଆରୋହଣ କରି ରାଜାଙ୍କ ହସ୍ତୀର ଅନୁସରଣ କଲେ । ପ୍ରକାଣ୍ଡ ପଟୁଆରର ଉଭୟ ପାର୍ଶ୍ୱରେ ତିନି ଶତ ହସ୍ତୀ ରାଜା, ଅମାତ୍ୟ ଓ ବିଭିନ୍ନଦେଶାଗତ ଆଚାର୍ଯ୍ୟଗଣଙ୍କୁ ବହନ କରି ଦୁଇ ଶ୍ରେଣୀରେ ଚାଲିବାକୁ ଲାଗିଲେ । ଗମନ ସମୟରେ ସେମାନଙ୍କ ସ୍ତୁତିଗାନରେ ଚତୁର୍ଦ୍ଦିଗ ମୁଖରିତ ହେଉଥିଲା । ପଟୁଆର ଅତି ପ୍ରତ୍ୟୁଷରେ ରାଜ-ପ୍ରାସାଦରୁ ଯାତ୍ରାକଲା । ସମ୍ମିଳନୀ-ଗୃହର ଦ୍ୱାର-ଦେଶରେ ଉପସ୍ଥିତ ହେଲା ଉତ୍ତାରେ ସମସ୍ତେ ହସ୍ତିପୃଷ୍ଠରୁ ଅବତରଣ କଲେ । ସର୍ବପ୍ରଥମେ ବୁଦ୍ଧଙ୍କ ମୂର୍ତ୍ତି ସମ୍ମିଳନୀ-ଗୃହାଭ୍ୟନ୍ତରକୁ ନୀତ ହୋଇ ବହୁମୂଲ୍ୟ ସିଂହାସନୋପରି ସ୍ଥାପିତ ହେଲା । ତତ୍ପରେ ରାଜା ଓ ହୁଏନ୍‌ସାଂ ଯଥାକ୍ରମରେ ତାହାଙ୍କ ସମ୍ମୁଖରେ ପୂଜୋପହାର ପ୍ରଦାନ କଲେ । ଏହା ଉତ୍ତାରେ ରାଜା ଅଷ୍ଟାଦଶ ଦେଶାଗତ ନରପତିଙ୍କୁ ସଭାଗୃହ ମଧ୍ୟରେ ପ୍ରବେଶ କରିବା ସକାଶେ ଆଦେଶ ପ୍ରଦାନ କଲେ । ତତ୍ପରେ ସମାଗତ ଆଚାର୍ଯ୍ୟମଣ୍ଡଳୀ ମଧ୍ୟରୁ ଏକ ସହସ୍ର ନାନା ଶାସ୍ତ୍ରଜ୍ଞ ବିଖ୍ୟାତ ପଣ୍ଡିତ ନିର୍ବାଚନ କରି ତନ୍ମଧ୍ୟକୁ ପ୍ରେରଣ କଲେ । ତତ୍ପରେ ବ୍ରାହ୍ମଣ ଓ ବିରୁଦ୍ଧବାଦୀଙ୍କ ମଧ୍ୟରୁ ପାଞ୍ଚ ଶତ ଓ ବିଭିନ୍ନ ଦେଶାଗତ ଅମାତ୍ୟଙ୍କ ମଧ୍ୟରୁ ଦୁଇ ଶତ ରାଜାଙ୍କ ଆଦେଶରେ ତନ୍ମଧ୍ୟରେ ପ୍ରବିଷ୍ଟ ହେଲେ । ନାସ୍ତିକ ଓ ଗୃହସ୍ଥଗଣ ସଭାଗୃହକୁ ପ୍ରବେଶ ଲାଭ କରି ନ ପାରି ଦ୍ୱାର-ଦେଶରେ ଉପବିଷ୍ଟ ହେଲେ । ଏତଦୁତ୍ତାରେ ରାଜା ସମବେତ ନୃପତି, ଅମାତ୍ୟ, ସନ୍ନ୍ୟାସୀ, ଆଚାର୍ଯ୍ୟ, ନାସ୍ତିକ ଓ ଗୃହସ୍ଥଙ୍କ ମଧ୍ୟରେ ଆହାର ସାମଗ୍ରୀ ବିତରଣ କଲେ । ତତ୍ପରେ ବୁଦ୍ଧଙ୍କ ସମ୍ମୁଖରେ ଏକ ସ୍ୱର୍ଣ୍ଣଥାଳ, ଏକ ସ୍ୱର୍ଣ୍ଣଗିନା, ସପ୍ତସ୍ୱର୍ଣ୍ଣ କୁମ୍ଭ, ଏକ ସ୍ୱର୍ଣ୍ଣଦଣ୍ଡ, ତିନି ସହସ୍ର ସ୍ୱର୍ଣ୍ଣମୁଦ୍ରା ଓ ଉତ୍କୃଷ୍ଟ କାର୍ପାସ-ବସ୍ତ୍ର-ନିର୍ମିତ ତିନି ସହସ୍ର ପରିଚ୍ଛଦ ଉପହାର ପ୍ରଦାନ କଲେ । ହୁଏନ୍‌ସାଂ ଓ ଅନ୍ୟାନ୍ୟ ଆଚାର୍ଯ୍ୟଗଣ ମଧ୍ୟ ଶକ୍ତ୍ୟନୁଯାୟୀ ଉପହାର ସ୍ଥାପନ କଲେ ।

---

## ବୁଦ୍ଧୋପାସନା — ହୁଏନ୍‌ସାଂଙ୍କୁ ଶାସ୍ତ୍ରାଲୋଚନାର୍ଥେ ଅହ୍ୱାନ

ଏହା ଉତ୍ତାରେ ରାଜାଙ୍କ ଆଦେଶରେ ଏକ ବହୁମୂଲ୍ୟ ମଞ୍ଚ ସ୍ଥାପିତ ହେଲା ଓ ତଦୁପରି ପ୍ରଧାନାଚାର୍ଯ୍ୟ ସ୍ୱରୂପ ଆସନ ଗ୍ରହଣ କରିବା ସକାଶେ ରାଜା ହୁଏନ୍‌ସାଂଙ୍କୁ ଆହ୍ୱାନ କଲେ । ହୁଏନ୍‌ସାଂ ମଞ୍ଚୋପରି ଆସନ ଗ୍ରହଣ କରି ମହାଯାନାନ୍ତର୍ଗତ ଉପଦେଶସମୂହର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ତତ୍ପରେ ଏକ ବିଷୟ ଆଲୋଚନା ସକାଶେ ଉପସ୍ଥାପିତ କରି ନାଳନ୍ଦ ମଠର ମିଂ-ହିନ୍ ନାମକ ଆଚାର୍ଯ୍ୟଙ୍କୁ ତାହା ଆରମ୍ଭ କରିବା ସକାଶେ ଅନୁରୋଧ କଲେ ଓ ସମସ୍ତଙ୍କ ଅବଗତି ନିମିତ୍ତ ଉକ୍ତ ବିଷୟରେ ଲିଖିତ ଏକ ବିଜ୍ଞାପନ-ପତ୍ର ସଭାଗୃହର ବହିର୍ଦ୍ଦେଶରେ ସଂଯୁକ୍ତ କରି କହିଲେ, "ସମବେତ ପଣ୍ଡିତମଣ୍ଡଳୀ ମଧ୍ୟରୁ କେହି ଜଣେ ସୁଦ୍ଧା ଯଦି ଏଥିରେ ପ୍ରତିପାଦିତ ମତ ଖଣ୍ଡନ କରିବାକୁ ସମର୍ଥ ହୁଅନ୍ତି, ତାହାହେଲେ ବିଜୟୀ ପଣ୍ଡିତଙ୍କ ଆଦେଶରେ ମୋର ମସ୍ତକ ଦାନ କରିବାକୁ ପ୍ରସ୍ତୁତ ଅଛି ।"

ପ୍ରାତଃକାଳରୁ ରାତି ପର୍ଯ୍ୟନ୍ତ ଉକ୍ତ ବିଷୟରେ ତର୍କବିତର୍କ ହେଲା; କିନ୍ତୁ ଏହା ବିରୁଦ୍ଧରେ କେହି ପଦେ ସୁଦ୍ଧା କହିଲେ ନାହିଁ । ରାଜା ଶୀଲାଦିତ୍ୟ ଏଥିରେ ଅତ୍ୟନ୍ତ ପ୍ରୀତ ହେଲେ ଓ ସଭାର କାର୍ଯ୍ୟ ସ୍ଥଗିତ ରଖି ରାଜ-ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ । ଆଗନ୍ତୁକ ଅନ୍ୟାନ୍ୟ ରାଜା, ରାଜକୁମାର, ହୁଏନ୍‌ସାଂ ଓ ଅନ୍ୟାନ୍ୟ ଆଚାର୍ଯ୍ୟଗଣ ସ୍ୱୀୟ ଆବାସକୁ ପ୍ରତ୍ୟାବୃତ୍ତ ହେଲେ ।

ପର ଦିବସରେ ପୁନର୍ବାର ସଭାଗୃହରେ ବୁଦ୍ଧମୂର୍ତ୍ତି ସ୍ଥାପିତ ହେଲା । ନରପତି ଆଚାର୍ଯ୍ୟବୃନ୍ଦ ଓ ନିମନ୍ତ୍ରିତ ଭଦ୍ରମଣ୍ଡଳୀ ସ୍ୱ ସ୍ୱ ସ୍ଥାନ ଗ୍ରହଣ କଲେ । ପାଞ୍ଚ ଦିନ କାଳ ମହାଯାନର ମହତ୍ତ୍ୱ ବିଷୟ ଆଲୋଚିତ ହେଲା । ହୀନଯାନାବଲମ୍ବିଗଣ ସେମାନଙ୍କ ମତ ସମର୍ଥିତ ନ ହେବା ଦେଖି ଅତ୍ୟନ୍ତ ରାଗାନ୍ୱିତ ହେଲେ ଓ ହୁଏନ୍‌ସାଂଙ୍କୁ ହତ୍ୟା କରିବା

ସକାଶେ ଷଡ଼ଯନ୍ତ୍ର ଆରମ୍ଭ କଲେ । ଶୀଲାଦିତ୍ୟ ଏହା ଅବଗତ ହୋଇ ଏହି ମର୍ମରେ ଘୋଷଣା କଲେ, "ସତ୍ୟ ଯେ ଭ୍ରମାତ୍ମକ ମତଦ୍ୱାରା ଆଚ୍ଛନ୍ନ ହୋଇଥାଏ, ଏହା ଯୁଗ ଯୁଗର ଅନୁଭୂତ । ଭ୍ରମାତ୍ମକ ମତାବଲମ୍ବିଗଣ ସତ୍ୟର ଅପଳାପ କରି ଲୋକଙ୍କୁ ପ୍ରତାରଣା କରନ୍ତି । ସଂସାରରେ ବିଦ୍ୱାନ୍ ଓ ଋଷିମାନେ ଯଦି ଆବିର୍ଭୂତ ନ ହୁଅନ୍ତେ ତାହାହେଲେ ତାହା କିଏ ଦୂର କରନ୍ତେ ? ଏହି ଚୀନ ଦେଶବାସୀ ଆଚାର୍ଯ୍ୟଙ୍କ ଆଧାତ୍ମିକ ଶକ୍ତି ଅତି ପ୍ରବଳ ଓ ତାହାଙ୍କ ଶାସ୍ତ୍ର ବ୍ୟାଖ୍ୟାନ ଅତି ପ୍ରାଞ୍ଜଳ ଓ ପାଣ୍ଡିତ୍ୟପୂର୍ଣ୍ଣ । ସେ ଧର୍ମର ପ୍ରକୃତ ତତ୍ତ୍ୱ ବିଷୟରେ ଉପଦେଶ ପ୍ରଦାନପୂର୍ବକ ଉକ୍ତ ଭ୍ରମ ଅପନୋଦନ ଓ ପ୍ରତାରିତ ବ୍ୟକ୍ତିଙ୍କୁ ତହିଁରୁ ଉଦ୍ଧାର କରିବା ସକାଶେ ଏଠାରେ ଉପସ୍ଥିତ ହୋଇଅଛନ୍ତି । କିନ୍ତୁ ଅଜ୍ଞାନାନ୍ଧ ବ୍ୟକ୍ତିଗଣ ସେମାନଙ୍କ ଭ୍ରମାତ୍ମକ ମତସମୂହ ପରିତ୍ୟାଗପୂର୍ବକ ଅନୁତାପ କରିବା ପରିବର୍ତ୍ତିରେ ତାହାଙ୍କୁ ହତ୍ୟା କରିବା ସକାଶେ ଷଡ଼ଯନ୍ତ୍ର କରୁଅଛନ୍ତି । ଏଥି ଯୋଗୁଁ ସେମାନେ ସମସ୍ତଙ୍କ ଅସନ୍ତୋଷଭାଜନ ହେବେ, ଏଥିରେ ସନ୍ଦେହ ନାହିଁ । ମୁଁ ସମସ୍ତଙ୍କୁ ସତର୍କ କରାଇ ଦେଉଅଛି ଯେ, ଯଦି କେହି ଆଚାର୍ଯ୍ୟଙ୍କୁ ସ୍ପର୍ଶ କରେ, ତାହାହେଲେ ଅବିଲମ୍ବେ ତାହାର ମସ୍ତକ ଛିନ୍ନ ହେବ ଓ ଯଦି କେହି ତାହାଙ୍କ ବିରୁଦ୍ଧରେ ଶବ୍ଦମାତ୍ର ଉଚ୍ଚାରଣ କରେ, ତାହାହେଲେ ତାହାର ଜିହ୍ୱା କର୍ତ୍ତିତ ହେବ । କିନ୍ତୁ ଯେଉଁମାନେ ତାହାଙ୍କ ଉପଦେଶ ପାଳନପୂର୍ବକ ସ୍ୱୀୟ ମଙ୍ଗଳ ସାଧନ କରିବାକୁ ଇଚ୍ଛୁକ, ସେମାନେ ଏହି ଘୋଷଣାରେ ଭୀତ ହେବାର କାରଣ ନାହିଁ ।"

ସେହି ଦିନ ବିରୁଦ୍ଧବାଦିଗଣ ସଭା ତ୍ୟାଗ କଲେ । ତଦୁତ୍ତାରେ ଅଷ୍ଟାଦଶ ଦିବସ କାଳ ଉକ୍ତ ବିଷୟ ଆଲୋଚିତ ହେଲା । କିନ୍ତୁ ଜଣେ ସୁଦ୍ଧା ତାଙ୍କର ବିରୁଦ୍ଧ ମତ ବ୍ୟକ୍ତ କଲେ ନାହିଁ ।

ସଭାଭଙ୍ଗର ପୂର୍ବ ସନ୍ଧ୍ୟାରେ ହୁଏନ୍‌ସାଂ ମହାଯାନର ମହତ୍ତ୍ୱ ବିଷୟରେ ଓ ବୁଦ୍ଧଙ୍କ ପ୍ରବର୍ତ୍ତିତ ଧର୍ମର ଉତ୍କର୍ଷ ସମ୍ବନ୍ଧରେ ଭାଷଣ

ଦେଲେ । ଏହାର ଫଳରେ ବହୁସଂଖ୍ୟକ ଲୋକ ହୀନଯାନର ଭ୍ରମାତ୍ମକ ପଥ ପରିତ୍ୟାଗ କରି ମହାଯାନ ମତର ଆଶ୍ରୟ ଗ୍ରହଣ କଲେ ।

ରାଜା ଶୀଲାଦିତ୍ୟ ଭକ୍ତି-ଗଦ୍‌ଗଦ ହୃଦୟରେ ହୁଏନ୍‌ସାଂଙ୍କୁ ଦଶ ସହସ୍ର ସ୍ୱର୍ଣ୍ଣମୁଦ୍ରା, ତ୍ରିଂଶ ସହସ୍ର ରୌପ୍ୟମୁଦ୍ରା ଓ ଏକ ଶତ ଉତ୍କୃଷ୍ଟ ପରିଚ୍ଛଦ ପ୍ରଦାନ କଲେ । ଉପସ୍ଥିତ ଅଷ୍ଟାଦଶ ନରପତି ମଧ୍ୟ ତାହାଙ୍କୁ ବହୁମୂଲ୍ୟ ରତ୍ନ ଉପହାର ଦେଲେ; କିନ୍ତୁ ହୁଏନ୍‌ସାଂ ସେ ସମସ୍ତ ଗ୍ରହଣ କଲେ ନାହିଁ ।

ରାଜାଙ୍କ ଆଦେଶରେ ଏକ ସୁସଜ୍ଜିତ ହସ୍ତୀ ଆନୀତ ହେଲା । ତଦୁପରି ଆରୋହଣ କରିବା ସକାଶେ ରାଜା ହୁଏନ୍‌ସାଂଙ୍କୁ ଅନୁରୋଧ କଲେ ଓ ତାହାଙ୍କୁ ଅନୁସରଣ କରିବା ସକାଶେ ଅମାତ୍ୟଗଣଙ୍କୁ ଆଦେଶ ଦେଲେ । ଜନତା ମଧ୍ୟରେ ସେମାନେ ଗମନ କରିବା ସମୟରେ ଘୋଷଣା କରାଇଲେ ଯେ, ଆଚାର୍ଯ୍ୟ ପ୍ରକୃତ ଧର୍ମତତ୍ତ୍ୱ ପ୍ରତିଷ୍ଠା କରାଇଅଛନ୍ତି । ଧର୍ମଶାସ୍ତ୍ରାଲୋଚନାରେ କେହି ଜୟ ଲାଭ କଲେ ପାଶ୍ଚାତ୍ୟଦେଶରେ ଏବେ ସୁଦ୍ଧା ଏହି ପ୍ରଥା ଅବଲମ୍ବିତ ହୋଇଆସୁଅଛି ।

ତତ୍ପରେ ରାଜା ହୁଏନ୍‌ସାଂଙ୍କ ପଟୁଆରରେ ଘେନି ଯିବା ସକାଶେ ଇଚ୍ଛା ପ୍ରକାଶ କଲେ; କିନ୍ତୁ ସେ ତହିଁରେ ସମ୍ମତ ହେଲେ ନାହିଁ । ରାଜା କହିଲେ, "ଏହି ପ୍ରଥା ଆବହମାନକାଳରୁ ପାଳିତ ହୋଇ ଆସୁଅଛି; ସୁତରାଂ ତାହା ବର୍ତ୍ତମାନ ପରିତ୍ୟକ୍ତ ହୋଇ ପାରିବ ନାହିଁ ।" ତତ୍ପରେ କଷାୟ-ବସ୍ତ୍ର-ପରିହିତ ଆଚାର୍ଯ୍ୟଙ୍କ ପ୍ରତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ-ପୂର୍ବକ ସର୍ବତ୍ର ଏହି ମର୍ମରେ ଘୋଷଣା କରାଇଲେ, "ଚୀନ ଦେଶାଗତ ଆଚାର୍ଯ୍ୟଙ୍କଦ୍ୱାରା ମହାଯାନତତ୍ତ୍ୱର ମହତ୍ତ୍ୱ ଓ ହୀନଯାନର ହୀନତ୍ୱ ପ୍ରତିପନ୍ନ ହୋଇଅଛି । ଅଷ୍ଟାଦଶ ଦିବସବ୍ୟାପୀ ଆଲୋଚନାରେ କେହି ସୁଦ୍ଧା ଏହି ମତ ଖଣ୍ଡନ କରିବାକୁ ପ୍ରୟାସୀ ହେଲେ ନାହିଁ । ଏହା ସର୍ବତ୍ର ପ୍ରଚାରିତ ହେଉ ।"

---

# ବୁଦ୍ଧଙ୍କ ଦନ୍ତ—ହୃମତଲ ନରପତ

ଦୁଏନସଂଙ୍କ କୃତିତ୍ୱରେ ସମବେତ ସମସ୍ତେ ଅତ୍ୟନ୍ତ ପ୍ରୀତ ହେଲେ ଓ ତାହାଙ୍କ ପ୍ରତିପାଦିତ ମତାନୁରୂପ ତାହାଙ୍କ ନାମକରଣ କରିବା ପ୍ରସ୍ତାବ କଲେ । ସମସ୍ତଙ୍କ ମତାନୁସାରେ ମହାଯାନାବଲମ୍ବିଗଣ ତାହାଙ୍କୁ ମହାଯାନ ଦେବ ଓ ହୀନଯାନାବଲମ୍ବିଗଣ ମୋକ୍ଷ ଦେବ ନାମରେ ଅଭିହିତ କଲେ । ତତ୍ପରେ ସମସ୍ତେ ଭକ୍ତିପୂର୍ବକ ତାହାଙ୍କ ସମ୍ମୁଖରେ ଧୂପ ଓ ପୁଷ୍ପୋପହାର ପ୍ରଦାନ କଲେ । ଏହି ଦିନଠାରୁ ତାହାଙ୍କ କୀର୍ତ୍ତି ଚତୁର୍ଦ୍ଦିଗରେ ବିଘୋଷିତ ହେବାକୁ ଲାଗିଲା ।

ରାଜପ୍ରାସାଦର ପଶ୍ଚିମ ପାର୍ଶ୍ୱରେ ଏକ ସଙ୍ଘାରାମ ଥିଲା । ଶୀଲାଦିତ୍ୟ ତାହାର ପ୍ରଧାନ ପୃଷ୍ଠପୋଷକ ଥିଲେ । ଏଠାରେ ଦେଢ ଇଞ୍ଚ ଦୀର୍ଘ ବୁଦ୍ଧଙ୍କ ଏକ ଦନ୍ତ ରକ୍ଷିତ ହୋଇଥିଲା । ତାହା ଈଷତ୍ ହରିତାଭ ଓ ତହିଁରୁ ସର୍ବଦା ଉଜ୍ଜ୍ୱଳ ଆଲୋକ ନିର୍ଗତ ହେଉଥିଲା ।

ପୂର୍ବକାଳରେ ଯେତେବେଳେ କାଶ୍ମୀର ଦେଶବାସୀ କ୍ରିତ୍ତ ବଂଶ ବୌଦ୍ଧ ଧର୍ମତତ୍ତ୍ୱର ଉଚ୍ଛେଦ ସାଧନ କଲା ଉତ୍ତାରେ ଆଚାର୍ଯ୍ୟ ଓ ସେମାନଙ୍କ ଶିଷ୍ୟଗଣ ଇତସ୍ତତଃ ବିକ୍ଷିପ୍ତ ହେଲେ, ସେତେବେଳେ ଏକ ବିଦେଶୀୟ ଭିକ୍ଷୁ ଭାରତବର୍ଷକୁ ଆସି ବିଭିନ୍ନାଞ୍ଚଳରେ ଭ୍ରମଣ କରିବାକୁ ଲାଗିଲେ । ତାହାଙ୍କ ଶିଷ୍ୟ ହୃମତଲ ନରପତି ଉକ୍ତ ବଂଶ ପ୍ରତି କ୍ରୁଦ୍ଧ ହୋଇ ବଣିକରୂପେ ଛଦ୍ମବେଶ ଧାରଣପୂର୍ବକ ତିନି ସହସ୍ର ପରାକ୍ରାନ୍ତ ଲୋକଙ୍କ ସମଭିବ୍ୟାହାରରେ ବହୁ ଧନରତ୍ନ ସହି ଉକ୍ତ ଦେଶର ନୃପତିଙ୍କ ଦର୍ଶନ ପ୍ରାର୍ଥନା କଲେ । ଲୋଭାସକ୍ତ କ୍ରିତ ନୃପତି ଏହି ସମ୍ବାଦ ଶ୍ରବଣରେ ପ୍ରୀତ ହୋଇ ତାହାଙ୍କୁ ଉପସ୍ଥିତ କରାଇବା ସକାଶେ କତିପୟ ଅନୁଚର ପ୍ରେରଣ କଲେ । ହୃମତଲ ନରପତି ତାହାଙ୍କ ସିଂହାସନ ସମ୍ମୁଖରେ ଉପସ୍ଥିତ ହୋଇ ଭୀଷଣ ରୂପ ଧାରଣ କଲେ ଓ ଶିରସ୍ତ୍ରାଣ ଉନ୍ମୋଚନପୂର୍ବକ ତାହାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ ।

କପିତ ନୃପତି ତାହାଙ୍କର ଏତାଦୃଶ ଭାବ ଦର୍ଶନରେ ଅତିଶୟ ଭୀତ ହୋଇ ସିଂହାସନରୁ ଉତ୍ଥିତ ହୋଇଲେ ଓ ତତ୍‌କ୍ଷଣାତ୍ ଭୂତଳରେ ପତିତ ହେଲେ । ହିମତଳ ନରପତି ତନ୍ମୁହୂର୍ତ୍ତରେ ତାହାଙ୍କ ଶିରଚ୍ଛେଦନ କଲେ ଓ ଉପସ୍ଥିତ ମନ୍ତ୍ରିମଣ୍ଡଳୀ ସମକ୍ଷରେ ତାହା ଧାରଣ କରି କହିଲେ, "ମୁଁ ହିମତଳ ନୃପତି । ତୁମ୍ଭେମାନେ ବୌଦ୍ଧଧର୍ମତତ୍ତ୍ୱର ଉଚ୍ଛେଦ ସାଧନ କରିଅଛ । ତେଣୁ ମୁଁ ତାହାଁର ସମୁଚିତ ଦଣ୍ଡବିଧାନ ମାନସରେ ଏଠାକୁ ଆସିଅଛି; କିନ୍ତୁ ଏଥିରେ ଜଣେ ମାତ୍ର ଅପରାଧୀ । ସୁତରାଂ ତୁମ୍ଭମାନଙ୍କୁ ଏଥିରେ ଲିପ୍ତ କରିବା ମୋ ପକ୍ଷରେ ଅନ୍ୟାୟ ହେବ । ଅତଏବ ତୁମ୍ଭେମାନେ ଏଠାରେ ଶାନ୍ତିରେ ବାସକର । କିନ୍ତୁ ଯେଉଁ ବ୍ୟକ୍ତିର ପ୍ରରୋଚନାରେ ଏହି ଦୁଷ୍କର୍ମ ସଂଘଟିତ ହୋଇଲା, ମୁଁ ତାହାଙ୍କୁ ଦୂରଦେଶକୁ ନିର୍ବାସନ କରିବ । ଅନ୍ୟ ଲୋକଙ୍କ ଉପରେ ମୋର ଆଦୌ ଆକ୍ରୋଶ ନାହିଁ ।" ତତ୍ପରେ କପିତବଂଶ ଧ୍ୱଂସ କରି ସେ ସେହି ସ୍ଥାନରେ ଏକ ସଂଘାରାମ ସ୍ଥାପନ କଲେ ଓ ସନ୍ନ୍ୟାସି-ଗଣଙ୍କୁ ତାହା ପ୍ରଦାନ କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ।

---

## ପୀଡ଼ିତ ହସ୍ତୀ

ପୂର୍ବକଥିତ ଭିକ୍ଷୁ ସ୍ୱଦେଶରେ ଶାନ୍ତି ସ୍ଥାପିତ ହୋଇଥିବା ଅବଗତ ହୋଇ ଦଣ୍ଡହସ୍ତରେ ସେଠାକୁ ପ୍ରତ୍ୟାବୃତ୍ତ ହେଲେ । ତାହାଙ୍କ ଗମନ ମାର୍ଗରେ ଏକ ହସ୍ତିଯୂଥ ବୃଂହିତ ନାଦସହକାରେ ତାଙ୍କ ଆଡ଼କୁ ଧାବିତ ହେଲେ । ହସ୍ତିଯୂଥ ଦର୍ଶନରେ ଭିକ୍ଷୁ ଭୀତ ହୋଇ ଏକ ବୃକ୍ଷରେ ଆରୋହଣ କଲେ । ହସ୍ତିଗଣ ବୃକ୍ଷରେ ସେମାନଙ୍କ ଶୁଣ୍ଡରୁ ଜଳ ନିକ୍ଷେପ କଲେ ଓ ଦନ୍ତରେ ବୃକ୍ଷମୂଳ ଖନନ କରିବାକୁ ଲାଗିଲେ । ଅଳ୍ପକ୍ଷଣ ମଧ୍ୟରେ ବୃକ୍ଷ ଭୂପତିତ ହେଲା । ହସ୍ତିଗଣ ଭିକ୍ଷୁଙ୍କୁ ଉତ୍ତୋଳନପୂର୍ବକ ଗୋଟିଏ ହସ୍ତୀର ପୃଷ୍ଠ ଉପରେ,

ସ୍ଥାପନ କରି ଏକ ନିବିଡ ଅରଣ୍ୟ ମଧ୍ୟକୁ ଘେନିଗଲେ । ସେଠାରେ କ୍ଷତପୀଡିତ ଏକ ହସ୍ତୀ ଭୂତଳରେ ପତିତ ହୋଇଥିଲା । ଉକ୍ତ ହସ୍ତୀ ଭିକ୍ଷୁଙ୍କ ହସ୍ତଧାରଣପୂର୍ବକ ତାହାର କ୍ଷତସ୍ଥାନ ସ୍ପର୍ଶ କରାଇଲା । ସ୍ଥିତାଂଶ ସ୍ପର୍ଶ କରି ଭିକ୍ଷୁ ଦେଖିଲେ ଯେ, କ୍ଷତ ମଧ୍ୟରେ ଏକ ବଂଶ-ଖଣ୍ଡ ପ୍ରବେଶ କରି ରହି ଯାଇଅଛି । ବଂଶ-ଖଣ୍ଡ ତନ୍ମଧ୍ୟରୁ ବାହାର କରି ସେ କ୍ଷତ ଧୌତ କଲେ । ତତ୍ପରେ ନିଜ ପରିଚ୍ଛଦ ଛିନ୍ନ କରି ତହିଁରେ କ୍ଷତସ୍ଥାନ ବନ୍ଧନ କଲେ । ରକ୍ତସ୍ରାବ ସହ ବିଷାକ୍ତ ପଦାର୍ଥ ନିର୍ଗତ ହେଲାରୁ ହସ୍ତୀ କ୍ରମେ କ୍ରମେ ଆରୋଗ୍ୟ ବୋଧ କଲା ।

ପରଦିନ ପ୍ରତ୍ୟୁଷରେ ହସ୍ତିଯୂଥ ଫଳାନ୍ୱେଷଣାର୍ଥେ ଗମନ କରି ସଂଗୃହୀତ ଫଳ ଭିକ୍ଷୁଙ୍କୁ ସମ୍ମାନପୁରଃସର ଅର୍ପଣ କଲେ । ଭିକ୍ଷୁ ଫଳାହାର କଲା ଉତ୍ତାରେ ଏକ ହସ୍ତୀ ଗୋଟିଏ ସ୍ୱର୍ଣ୍ଣାଧାର ପୀଡିତ ହସ୍ତୀକୁ ଅର୍ପଣ କଲା । ହସ୍ତୀ ଉକ୍ତ ସ୍ୱର୍ଣ୍ଣାଧାର ଗ୍ରହଣ କରି ତାହା ଭିକ୍ଷୁଙ୍କୁ ଅର୍ପଣ କଲା । ଭିକ୍ଷୁ ତାହା ଗ୍ରହଣ କଲାରୁ ହସ୍ତିଯୂଥ ତାହାଙ୍କ ଗୋଟିଏ ହସ୍ତୀର ପୃଷ୍ଠ ଉପରେ ସ୍ଥାପନ କରି ଯେଉଁ ସ୍ଥାନରୁ ତାହାଙ୍କୁ ଆଣିଥିଲେ ସେହି ସ୍ଥାନରେ ତାହାଙ୍କୁ ରଖି ଦେଇ ସମ୍ମାନ ପ୍ରଦାନପୂର୍ବକ ବିଦାୟ ଗ୍ରହଣ କଲେ । ଭିକ୍ଷୁ ସ୍ୱର୍ଣ୍ଣାଧାର ଉନ୍ମୋଚନ କରି ଦେଖିଲେ ଯେ, ତନ୍ମଧ୍ୟରେ ବୁଦ୍ଧଙ୍କର ଏକ ଦନ୍ତ ଅଛି । ତାହା ସ୍ୱଦେଶକୁ ଘେନି ଯାଇ ଭକ୍ତିସହକାରେ ତାହାକୁ ପୂଜା କରିବାକୁ ଲାଗିଲେ ।

କାଶ୍ମୀରରେ ବୁଦ୍ଧଙ୍କର ଏକ ଦନ୍ତ ରକ୍ଷିତ ହୋଇଥିବା ଶୁଣି ରାଜା ଶୀଲାଦିତ୍ୟ ସ୍ୱୟଂ ସୀମାନ୍ତକୁ ଗମନ କରି ତାହା ପୂଜା କରିବା ସକାଶେ ସନ୍ନ୍ୟାସିଗଣଙ୍କ ଅନୁମତି ପ୍ରାର୍ଥନା କଲେ । ଲୋଭାସକ୍ତ ସନ୍ନ୍ୟାସିମଣ୍ଡଳୀ ଅନୁମତି ପ୍ରଦାନ କରିବାକୁ ଅନିଚ୍ଛୁକ ହୋଇ ତାହା ଗୋପନ କଲେ । କିନ୍ତୁ ରାଜା ଶୀଲାଦିତ୍ୟଙ୍କ ମହିମାସୂଚକରେ ଭୀତ ହୋଇ ଇତସ୍ତତଃ ଭୂମି ଖନନ କରାଇଲେ ଓ ପରିଶେଷରେ ତାହା ପ୍ରାପ୍ତ ହୋଇ ଶୀଳା-

ଦିତ୍ୟଙ୍କୁ ପ୍ରଦାନ କଲେ । ଶୀଳାଦିତ୍ୟ ଭକ୍ତିଗଦ୍‌ଗଦ-ହୃଦୟରେ ତାହା ପୂଜା କଲେ । ତାହାଙ୍କ ରକ୍ଷିତ ଏହି ଦନ୍ତ ବିଷୟ ଇତିପୂର୍ବେ କଥିତ ହୋଇଅଛି ।

ସଭା ଭଙ୍ଗ ହେବା ଉତ୍ତାରେ ରାଜା ବୁଦ୍ଧଙ୍କ ମୂର୍ତ୍ତି, ଅର୍ଥ ଓ ପରିଚ୍ଛଦାଦି ସମସ୍ତ ବସ୍ତୁ ସଙ୍ଘାରାମକୁ ପ୍ରଦାନ କଲେ ଓ ସେ ସମସ୍ତ ଯତ୍ନସହକାରେ ରକ୍ଷା କରିବା ସକାଶେ ସାବଧାନ କରାଇଦେଲେ ।

---

## ସଭାଭଙ୍ଗ

ଉନବିଂଶ ଦିବସରେ ସଭାର କାର୍ଯ୍ୟ ସମାପ୍ତ ହେଲା । ତଦୁତ୍ତରେ ହୁଏନ୍‌ସାଂ ନାଳନ୍ଦ ମଠାଧିବାସୀ ଆଚାର୍ଯ୍ୟଗଣଙ୍କଠାରୁ ବିଦାୟ ଗ୍ରହଣ କରି ଗୃହାଭିମୁଖେ ଯାତ୍ରା କରିବା ନିମିତ୍ତ ଅନୁମତି ପ୍ରାର୍ଥନା କରିବା ସକାଶେ ରାଜାଙ୍କ ସହିତ ସାକ୍ଷାତ୍ କଲେ । ରାଜା କହିଲେ, "ଆପଣଙ୍କର ଏହି ଶିଷ୍ୟ ଭାରତବର୍ଷର ସିଂହାସନରେ ସମାସୀନ ହୋଇ ତିରିଶ ବର୍ଷ କାଳ ରାଜତ୍ୱ କରିଅଛି । ପୂର୍ବଜନ୍ମର ପୁଣ୍ୟାଭାବ ଯୋଗୁଁ ଇହ ଜୀବନରେ ପୁଣ୍ୟାଭାବ ସକାଶେ ମୋ ମନରେ ଗଭୀର ଦୁଃଖ ଜାତ ହେଉଅଛି । ଏହି କାରଣରୁ ମୁଁ ପ୍ରମ୍ଭାଗର ରାଜକୋଷରେ ବହୁ ପରି-ମାଣରେ ଧନ ସଞ୍ଚୟ କରି ରଖିଅଛି । ଗଙ୍ଗା ଓ ଯମୁନା ନଦୀର ସଙ୍ଗମ ସ୍ଥଳରେ ପ୍ରତି ପାଞ୍ଚ ବର୍ଷରେ ଏକ ଧର୍ମସଭା ଆହୂତ ହୁଏ ଓ ଉକ୍ତ ସଭାକୁ ଭାରତବର୍ଷର ବିଭିନ୍ନାଞ୍ଚଳରୁ ଶ୍ରମଣ, ବ୍ରାହ୍ମଣ, ଦରିଦ୍ର, ଅନାଥ ସମସ୍ତେ ନିମନ୍ତ୍ରିତ ହୁଅନ୍ତି ଓ ଏହି ଉପଲକ୍ଷରେ ସେଠାରେ ୭୫ ଦିନବ୍ୟାପୀ ମୋକ୍ଷନାମକ ଭିକ୍ଷା ପ୍ରଦତ୍ତ ହୁଏ । ଏହି ପ୍ରକାରେ ପାଞ୍ଚ ଥର ଧର୍ମସଭା ଅନୁଷ୍ଠିତ ହୋଇଅଛି । ଅଳ୍ପଦିନ ପରେ ଷଷ୍ଠ ସଭା ଆହୂତ ହେବ । ଉକ୍ତ ସଭା ଅନୁଷ୍ଠିତ ହେବାପର୍ଯ୍ୟନ୍ତ ଆପଣ ଏଠାରେ ଅବସ୍ଥାନ କରି ସଭା ଦର୍ଶନପୂର୍ବକ ଆମ୍ଭମାନଙ୍କ ସହିତ ଆନନ୍ଦ ଉପଭୋଗ କରନ୍ତୁ ।"

ହୁଏନ୍‌ସାଂ କହିଲେ, "ବୋଧିସତ୍ତ୍ୱ ତାହାଙ୍କ ପୁଣ୍ୟମୟ ଚରିତ୍ର ଓ ଜ୍ଞାନବଳରେ ଆଲୋକ ପ୍ରାପ୍ତ ହୋଇଥିଲେ । ଜ୍ଞାନବାନ୍ ବ୍ୟକ୍ତି ତାହାର ସତ୍‌କର୍ମର ଫଳ ପ୍ରାପ୍ତ ହେଲେ ଲବ୍ଧ ସୁଖର କାରଣ ବିସ୍ମୃତ ହୁଏ ନାହିଁ । ଆପଣ ଯଦି ଲୋକସାଧାରଣଙ୍କ ମଙ୍ଗଳାର୍ଥେ ରାଜ-କୋଷରେ ସଞ୍ଚିତ ଧନ ବ୍ୟୟ କରିବା ସକାଶେ କୁଣ୍ଠିତ ନୁହନ୍ତି, ତାହା ହେଲେ ହୁଏନ୍‌ସାଂ ସ୍ୱଗୃହାଭିମୁଖରେ ଯାତ୍ରା କରିବା ସକାଶେ ଅଳ୍ପ ବିଳମ୍ବ କରିବାରେ କୁଣ୍ଠିତ ହେବ ନାହିଁ କି ? ଅତଏବ ଆପଣଙ୍କ ସହିତ ଧର୍ମସଭାକୁ ଯାତ୍ରା କରିବା ସକାଶେ ମୁଁ ଅନୁମତି ଭିକ୍ଷା କରୁ-ଅଛି ।"

ଏହା ଶୁଣି ରାଜା ଅତ୍ୟନ୍ତ ପ୍ରୀତ ହେଲେ ଓ ସେହି ଦିନରୁ ଏକବିଂଶ ଦିବସରେ ହୁଏନ୍‌ସାଂଙ୍କ ସମଭିବ୍ୟାହାରରେ ପ୍ରୟାଗାଭି-ମୁଖେ ଯାତ୍ରା କଲେ । ସେଠାରେ ଉପନୀତ ହୋଇ ଭିକ୍ଷା ବିତରଣ ସ୍ଥଳକୁ ଗମନ କଲେ । ସେଠାରେ ଉତ୍ତରସ୍ଥ ଗଙ୍ଗା ଓ ଦକ୍ଷିଣସ୍ଥ ଯମୁନା ନଦୀର ମଧ୍ୟସ୍ଥଳ ଉକ୍ତ କାର୍ଯ୍ୟ ସକାଶେ ନିର୍ଦ୍ଦିଷ୍ଟ ହୋଇଥିଲା । ଏହି ନଦୀଦ୍ୱୟ ଉତ୍ତର-ପଶ୍ଚିମ ଦିଗରୁ ଆସି ପୂର୍ବ ଦିଗରେ ପ୍ରବାହିତ ହୋଇ ଏହି ସ୍ଥଳରେ ମିଳିତ ହୋଇଅଛନ୍ତି ।

---

## ମହାଦାନ କ୍ଷେତ୍ର

ନଦୀଦ୍ୱୟର ଏହି ସଙ୍ଗମସ୍ଥଳରେ ଚତୁର୍ଦ୍ଦଶ ବା ପଞ୍ଚଦଶ ଲି ଆୟତନବିଶିଷ୍ଟ ଏକ ବୃହତ୍ ଦର୍ପଣ ତୁଲ୍ୟ ଭୂମି ଥିଲା । ପୂର୍ବକାଳରୁ ବିଭିନ୍ନ ଦେଶର ନରପତିବୃନ୍ଦ ଦାନ ବିତରଣ ସକାଶେ ଏହି ସ୍ଥାନକୁ ଆଗମନ କରୁଥିଲେ । ତେଣୁ ଏହା ଦାନଭୂମି ନାମରେ ଅଭିହିତ । କଥିତ ଅଛି ଯେ, ଏଠାରେ ଏକ କପର୍ଦ୍ଦକ ଦାନ କଲେ ସହସ୍ର

ଵପଦକ ଦାନର ଫଳ ଲାଭ ହୁଏ । ତେଣୁ କରି ଏହି ସ୍ଥାନ ପୂର୍ବକାଳରୁ ସର୍ବଜନ ପୂଜିତ ।

ରାଜା ଏହି ସ୍ଥାନରେ ଏକ ସହସ୍ର ପାଦ ଦୀର୍ଘ ଓ ଏକ ସହସ୍ର ପାଦ ପ୍ରସ୍ଥବିଶିଷ୍ଟ ଏକ ବର୍ଗାକାର କ୍ଷେତ୍ର ବେଷ୍ଟିତ କରାଇଲେ ଓ ଉକ୍ତ ସ୍ଥାନରେ ବହୁସଂଖ୍ୟକ ତୃଣାଚ୍ଛାଦିତ ଗୃହ ନିର୍ମିତ କରାଇଲେ । ବିତରଣ ନିମନ୍ତେ ସ୍ୱର୍ଣ୍ଣ, ରୌପ୍ୟ, ସୁନ୍ଦର ମୁକ୍ତା, ରକ୍ତ ବର୍ଣ୍ଣ କାଚ, ଇନ୍ଦ୍ରନୀଳ ମଣି, ମହା ନୀଳମଣି ପ୍ରଭୃତି ରତ୍ନରାଜି ତନ୍ମଧ୍ୟରେ ରକ୍ଷିତ ହେଲା । ପୁଣି ପଟ୍ଟ ଓ କାର୍ପାସ ବସ୍ତ୍ର, ସ୍ୱର୍ଣ୍ଣ ଓ ରୌପ୍ୟ ମୁଦ୍ରାଦି ଦ୍ରବ୍ୟ ରକ୍ଷିତ ହେବା ନିମନ୍ତେ ମଧ୍ୟ ଶତ ଶତ ଗୃହ ନିର୍ମିତ ହେଲା । ବେଷ୍ଟନୀର ବହିର୍ଭାଗରେ ରନ୍ଧନଶାଳା ଓ ବିଭିନ୍ନ ଧନାଗାର ସମ୍ମୁଖସ୍ଥ ଭୂମିରେ ସହସ୍ର ସହସ୍ର ଲୋକଙ୍କ ବିଶ୍ରାମ ନିମନ୍ତେ ଶତାଧିକ ଦୀର୍ଘ ଗୃହମାନ ନିର୍ମିତ ହେଲା ।

ଏହି ସମସ୍ତ ଆୟୋଜନର କେତେକ ଦିନ ପୂର୍ବରୁ ପଞ୍ଚଭାରତର ବିଭିନ୍ନ ଅଞ୍ଚଳରେ ଶ୍ରମଣ, ଧର୍ମବିରୋଧୀ, ନିର୍ଗ୍ରନ୍ଥ, ଦରିଦ୍ର, ଅନାଥ ଓ ଅସଙ୍ଗ ବ୍ୟକ୍ତିଙ୍କୁ ଏହିସ୍ଥାନରେ ସମବେତ ହୋଇ ଭିକ୍ଷା ଗ୍ରହଣ କରିବା ନିମନ୍ତେ ଆଦେଶ ପ୍ରଚାରିତ ହୋଇଥିଲା ।

ହୁଏନ୍‌ସାଂ କାନ୍ୟକୁବ୍ଜ ରାଜାରୁ ପ୍ରତ୍ୟାବର୍ତ୍ତନ କରି ପ୍ରୟାଗସ୍ଥ ଭିକ୍ଷା ବିତରଣ ସ୍ଥାନକୁ ଗମନ କଲେ । ଅଷ୍ଟାଦଶ ରାଜ୍ୟର ନରପତିଗଣ ରାଜାଙ୍କ ସମଭିବ୍ୟାହାରରେ ଉପସ୍ଥିତ ହୋଇ ଦେଖିଲେ ଯେ, ପାଞ୍ଚ ଲକ୍ଷ ଲୋକ ସେଠାରେ ଉପସ୍ଥିତ ହୋଇ ସାରିଅଛନ୍ତି ।

---

## ମହାଯାନ ବିତରଣ

ରାଜା ଶୀଲାଦିତ୍ୟ ଗଙ୍ଗାନଦୀର ଉତ୍ତର କୂଳରେ ତାହାଙ୍କ ଶିବିର ସ୍ଥାପନ କଲେ । ଦାକ୍ଷିଣାତ୍ୟ ନରପତି ଧ୍ରୁବ ଭଟ୍ଟ ନଦୀଦ୍ୱୟର ସଙ୍ଗମ-

ସ୍ଥଳର ପଶ୍ଚିମ ପାର୍ଶ୍ୱରେ ଓ କୁମାରରାଜ ଯମୁନା ନଦୀର ଦକ୍ଷିଣ ପାର୍ଶ୍ୱସ୍ଥ ପୁଷ୍ପବାଟିକା ସନ୍ନିକଟରେ ସ୍ୱ ସ୍ୱ ଆବାସ ସ୍ଥାପନ କଲେ । ଦାନ–ପ୍ରାର୍ଥିଗଣ ଧ୍ରୁବ ଭଟ୍ଟଙ୍କ ଅଧିକୃତ ସ୍ଥାନର ଦକ୍ଷିଣ ପାର୍ଶ୍ୱରେ ସମବେତ ହେଲେ । ପର ଦିନ ପ୍ରାତଃକାଳରେ ଶୀଳାଦିତ୍ୟ ଓ କୁମାରଙ୍କ ସୈନିକ-ଗଣ ନୌକାରୋହଣ ଓ ଧ୍ରୁବ ଭଟ୍ଟଙ୍କ ଅନୁଚରଗଣ ହସ୍ତୀ ଆରୋହଣ-ପୂର୍ବକ ଦାନ ସ୍ଥଳରେ ଉପସ୍ଥିତ ହେଲେ । ଶ୍ରେଣୀବଦ୍ଧ ଭାବରେ ସେମାନଙ୍କର ଗମନକାଳୀନ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଥିଲା । ଅଷ୍ଟାଦଶ ରାଜ୍ୟାଧିପତିବୃନ୍ଦ ପୂର୍ବ ନିର୍ଦ୍ଦେଶାନୁଯାୟୀ ସେମାନଙ୍କ ସହିତ ମିଳିତ ହେଲେ ।

ପ୍ରଥମ ଦିନ ଦାନ ସ୍ଥଳରେ ଏକ ତୃଣାଚ୍ଛାଦିତ ଗୃହ ମଧ୍ୟରେ ବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ କରାଗଲା । ତତ୍ପରେ ଅତ୍ୟୁତ୍କୃଷ୍ଟ ବହୁମୂଲ୍ୟ ଦ୍ରବ୍ୟ ଓ ବସ୍ତ୍ର ବିତରଣ କଲେ । ବିତରଣ ସମୟରେ ଦାନପ୍ରାର୍ଥୀମାନଙ୍କ ମଧ୍ୟରେ ଉପାଦେୟ ଖାଦ୍ୟଦ୍ରବ୍ୟ ମଧ୍ୟ ବିତରଣ କରିଥିଲେ । ତତ୍କାଳରେ ସଙ୍ଗୀତ ସହ ପୁଷ୍ପବୃଷ୍ଟି ହେଉଥିଲା । ଏହି ପ୍ରକାରେ ପ୍ରଥମ ଦିବସର କାର୍ଯ୍ୟ ସମାପ୍ତ କରି ସେମାନେ ସ୍ୱ ସ୍ୱ ଶିବିରକୁ ଗମନ କଲେ ।

ଦ୍ୱିତୀୟ ଦିବସରେ ଆଦିତ୍ୟଦେବଙ୍କ ମୂର୍ତ୍ତି ସ୍ଥାପନ କରି ପ୍ରଥମ ଦିବସର ଅର୍ଦ୍ଧ ପରିମିତ ବହୁମୂଲ୍ୟ ଦ୍ରବ୍ୟ ଓ ବସ୍ତ୍ର ବିତରଣ କଲେ । ତୃତୀୟ ଦିବସରେ ଈଶ୍ୱରଦେବଙ୍କ ମୂର୍ତ୍ତି ସ୍ଥାପନପୂର୍ବକ ପୂର୍ବ ଦିବସ ତୁଲ୍ୟ ଦ୍ରବ୍ୟ ବିତରଣ କଲେ । ଚତୁର୍ଥ ଦିବସରେ ଏକଶତ ଶ୍ରେଣୀ-ଭୁକ୍ତ ଦଶ ସହସ୍ର ସନ୍ନ୍ୟାସୀଙ୍କ ମଧ୍ୟରେ ଦାନ ବିତରଣ ହେଲା । ପ୍ରତ୍ୟେକ ସନ୍ନ୍ୟାସୀ ଏକଶତ ସ୍ୱର୍ଣ୍ଣ ମୁଦ୍ରା, ଏକ ଗୋଟି ମଣି, ଏକ ଗୋଟି କାର୍ପାସ ପରିଚ୍ଛଦ, ଖାଦ୍ୟ ଓ ପେୟ, ପୁଷ୍ପ ଓ ସୁଗନ୍ଧ ଦ୍ରବ୍ୟ ପ୍ରାପ୍ତ ହେଲେ । ତତ୍ପରେ ସମସ୍ତେ ସ୍ୱ ସ୍ୱ ଆବାସକୁ ଗମନ କଲେ ।

• ପଞ୍ଚମ ଦିବସରେ ବ୍ରାହ୍ମଣମାନଙ୍କ ମଧ୍ୟରେ ଦାନ ବିତରଣ ଆରମ୍ଭ ହେଲା । ଷଷ୍ଠ ଦିବସରେ ଧର୍ମବିରୋଧୀମାନଙ୍କ ମଧ୍ୟରେ ଦାନ ବିତରଣ ଆରମ୍ଭ ହୋଇ ଦଶମ ଦିବସ ପର୍ଯ୍ୟନ୍ତ ଚାଲିଲା । ସପ୍ତମ ଦିବସରେ ଦୂରାଗତ ଭିକ୍ଷୁକମାନଙ୍କ ମଧ୍ୟରେ ଆରମ୍ଭ ହୋଇ ତାହା ମଧ୍ୟ ଦଶମ ଦିବସରେ ସମାପ୍ତ ହେଲା । ଅଷ୍ଟମ ଦିବସରେ ଦରିଦ୍ର, ଅନାଥ ଓ ଦୁଃଖୀମାନଙ୍କ ମଧ୍ୟରେ ଆରମ୍ଭ ହୋଇ ଏକ ମାସ ଉତ୍ତାରେ ସମାପ୍ତ ହେଲା ।

ଏହି ସମୟ ମଧ୍ୟରେ ରାଜକୋଷରେ ପାଞ୍ଚ ବର୍ଷର ସଞ୍ଚିତ ଧନ ବ୍ୟୟିତ ହୋଇଗଲା । ଅଶ୍ୱ, ହସ୍ତୀ, ସାମରିକ ଦ୍ରବ୍ୟ ଯେ ସମସ୍ତ ଦେଶରେ ଶାନ୍ତି ରକ୍ଷା ଓ ରାଜ୍ୟ ପାଳନ ସକାଶେ ଆବଶ୍ୟକ, ସେ ସମସ୍ତ ଭିନ୍ନ ଆଉ କିଛି ଅବଶିଷ୍ଟ ରହିଲା ନାହିଁ । ଏହା ବ୍ୟତୀତ ରାଜା ତାହାଙ୍କ ରତ୍ନାଳଙ୍କାର ଓ ଅନାନ୍ୟ ଦ୍ରବ୍ୟ, ବସ୍ତ୍ର, କଣ୍ଠହାର, କର୍ଣ୍ଣ ମୁଦ୍ରିକା, ବଳୟ, ଜପମାଳା, କଣ୍ଠମଣି ଓ ମସ୍ତକ ମଣି ଅକାତରରେ ଦାନ କଲେ । ସମସ୍ତ ଦ୍ରବ୍ୟ ଦାନ କରି ସେ ତାହାଙ୍କ ଭଗିନୀଙ୍କଠାରୁ ଖଣ୍ଡିଏ ପୁରାତନ ବସ୍ତ୍ର ଭିକ୍ଷା କଲେ ଓ ତାହା ପରିଧାନ କରି ବୁଦ୍ଧଙ୍କ ଉପାସନା କଲେ । ତତ୍ ସମୟରେ ଆନନ୍ଦଗଦ୍‌ଗଦ ହୃଦୟରେ ବଦ୍ଧ-କର-ପୁଟରେ କହିଲେ, "ଏହି ସମସ୍ତ ଧନ ସଞ୍ଚୟ କରି ରଖିବା ସମୟରେ ଏହା ନିରାପଦ ସ୍ଥାନରେ ରକ୍ଷିତ ହୋଇ ନ ଥିଲା ବୋଲି ମୋ ମନରେ ଭୟ ଜାତ ହୋଇଥିଲା; କିନ୍ତୁ ବର୍ତ୍ତମାନ ଧର୍ମକ୍ଷେତ୍ରରେ ସେ ସମସ୍ତ ବିତରଣ କରିଥିବାରୁ ମୁଁ ଅକୁଣ୍ଠିତ ସ୍ୱରରେ କହୁଅଛି ଯେ, ଏହା ସତ୍‌କାର୍ଯ୍ୟରେ ବ୍ୟୟିତ ହୋଇଅଛି । ପ୍ରାର୍ଥନା କରୁଅଛି, ମୁଁ ଜନ୍ମ ଜନ୍ମାନ୍ତରରେ ମୋର ସଞ୍ଚିତ ଧନ ମାନବ-ସମାଜର ମଙ୍ଗଳାର୍ଥେ ଧର୍ମ-କାର୍ଯ୍ୟରେ ଦାନ କରିବି ଓ ଏହି ପ୍ରକାରେ ମୋହର ଶରୀରରେ ବୁଦ୍ଧଙ୍କ ଦଶବଳ ସଂଚିହ୍ନ କରିବି ।"

ଏହି ସମ୍ମିଳନୀଦ୍ୱୟର କାର୍ଯ୍ୟ ସମାପ୍ତି ଉତ୍ତାରେ ଆଗନ୍ତୁକ ନରପତି-ଗଣ ଲୋକଙ୍କ ମଧ୍ୟରେ ଅର୍ଥ ବିତରଣ କରି ଶୀଲାଦିତ୍ୟଙ୍କ କଣ୍ଠହାର, ମସ୍ତକମଣି ଓ ରାଜ ପରିଚ୍ଛଦସକଳ ଉଦ୍ଧାର କଲେ ଏବଂ ସେ ସମସ୍ତ ତାହାଙ୍କୁ ଦାନ କଲେ; କିନ୍ତୁ ଅଳ୍ପ ଦିବସ ମଧ୍ୟରେ ରାଜା ସେ ସମସ୍ତ ମଧ୍ୟ ପୂର୍ବପରି ବିତରଣ କରି ଦେଲେ ।

---

## ପ୍ରତ୍ୟାବର୍ତ୍ତନରେ ବିଳମ୍ବ

ଏହା ଉତ୍ତାରେ ହୁଏନ୍‌ସାଂ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ନିମନ୍ତେ ଅନୁମତି ପ୍ରାର୍ଥନା କଲେ । ରାଜା ଉତ୍ତର କଲେ, "ଆପଣଙ୍କ ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ଆପଣଙ୍କର ଏହି ଶିଷ୍ୟ ମଧ୍ୟ ଚତୁର୍ଦ୍ଦିଗରେ ବୁଦ୍ଧଙ୍କ ପ୍ରଦତ୍ତ ଧର୍ମତତ୍ତ୍ୱ ପ୍ରଚାର କରିବାର ଅଭିଳାଷ କରୁ-ଅଛି । ଆପଣ କାହିଁକି ଏତେ ଶୀଘ୍ର ଚାଲିଯିବେ ?" ଏହା ଶୁଣି ହୁଏନ୍‌ସାଂ ଆଉ ଦଶଦିନ ସେଠାରେ ଅବସ୍ଥାନ କଲେ ।

କୁମାର ରାଜ ଭକ୍ତି-ପୁରଃସର ତାହାଙ୍କୁ ସମ୍ବୋଧନ କରି କହିଲେ, "ଆଚାର୍ଯ୍ୟ ଯଦି ମୋର ରାଜ୍ୟରେ କତିପୟ ଦିବସ ଅବସ୍ଥାନ ଓ ପୂଜା ଗ୍ରହଣ କରି ପାରନ୍ତି, ତାହାହେଲେ ମୁଁ ତାହାଙ୍କ ଉଦ୍ଦେଶ୍ୟରେ ଏକ ମଠ ସ୍ଥାପନ କରିବି ।"

ହୁଏନ୍‌ସାଂ ଦେଖିଲେ ଯେ, ତାହାଙ୍କୁ ଛାଡିଦେବା ରାଜାଙ୍କ ଅଭିପ୍ରେତ ନୁହେଁ । ତତ୍ପରେ ଅତ୍ୟନ୍ତ ଦୁଃଖିତ ହୋଇ କହିଲେ, "ଚୀନ ଦେଶ ଏଠାରୁ ବହୁ ଦୂରରେ ଅବସ୍ଥିତ ଏବଂ ବୁଦ୍ଧଙ୍କ ଧର୍ମ-ତତ୍ତ୍ୱ ସେଠାରେ ଅଳ୍ପ ଦିବସ ହେଲା ଶ୍ରୁତିଗୋଚର ହୋଇଅଛି । ସେହି ଦେଶବାସୀଙ୍କ ହୃଦୟରେ ଧର୍ମଜ୍ଞାନ ସାମାନ୍ୟ ଭାବରେ ଉଦିତ ହୋଇଥିଲେ ହେଁ ସେମାନେ ଏହି ଧର୍ମତତ୍ତ୍ୱ ସମ୍ପୂର୍ଣ୍ଣରୂପେ ଗ୍ରହଣ କରି

ନାହାନ୍ତି । ଏହି ହେତୁରୁ ମୁଁ ଧର୍ମମତର ବଭିନ୍ନତା ଲୋପ କରିବା ସକାଶେ ଏହି ଦେଶକୁ ଧର୍ମତତ୍ତ୍ୱ ଶିକ୍ଷା ଉଦ୍ଦେଶ୍ୟରେ ଆସିଅଛି । ମୁଁ ସେ ସମସ୍ତ ତତ୍ତ୍ୱ ବିଷୟରେ ଜ୍ଞାନ ଲାଭ କରିଅଛି । ମୋର ଦେଶ-ବାସିଗଣ ତାହାର ଗଭୀରତା ନିର୍ଣ୍ଣୟ କରିବା ସକାଶେ ଉତ୍କଣ୍ଠିତ ହୋଇ ରହିଅଛନ୍ତି; ଅତଏବ ମୁଁ ଆଉ ମୁହୂର୍ତ୍ତିମାତ୍ର ବିଳମ୍ବ କରି ପାରିବି ନାହିଁ । ସୂତ୍ରର ମର୍ମ ଏହି, "ଯେଉଁ ବ୍ୟକ୍ତି ଅପର ଲୋକଙ୍କ ଧର୍ମଜ୍ଞାନ ଲାଭରେ ବିଘ୍ନ ଉତ୍ପାଦନ କରେ, ସେ ଜନ୍ମଜନ୍ମାନ୍ତରରେ ଅନ୍ଧ ହୁଏ ।" ଆପଣ ଯଦି ମୋର ସ୍ୱଦେଶପ୍ରତ୍ୟାଗମନରେ ବିଘ୍ନ ଉତ୍ପାଦନ କରିବେ, ତାହାହେଲେ ଅସଂଖ୍ୟ ଶିଷ୍ୟଙ୍କୁ ଧର୍ମତତ୍ତ୍ୱ ଜ୍ଞାନୋ-ପାର୍ଜ୍ଜନରୁ ବଞ୍ଚିତ କରିବେ । ତାହାହେଲେ ଆପଣ ଦୃଷ୍ଟିଶକ୍ତି ହରାଇବା ଭୟରୁ ମୁକ୍ତ ହେବେ କିପରି ?"

ରାଜା ଉତ୍ତର କଲେ, "ଆପଣଙ୍କ ବିନୀତ ଶିଷ୍ୟ ଆପଣଙ୍କ ପୁଣ୍ୟର ଅଶେଷ ପ୍ରଶଂସା କରୁଅଛି । ମୁଁ ଭକ୍ତିସହକାରେ ଆପଣଙ୍କ ପରିଚର୍ଯ୍ୟାରେ ଜୀବନୋତ୍ସର୍ଗ କରିବାକୁ ସର୍ବଦା ପ୍ରସ୍ତୁତ ଅଛି । ବାସ୍ତବରେ ଏତେ ଲୋକଙ୍କ ଜ୍ଞାନୋପାର୍ଜ୍ଜନ-ପଥରେ କଣ୍ଟକ ନିକ୍ଷେପ କରିବାରେ ମୋ ହୃଦୟ ଅସ୍ଥିର ହେବ । ବର୍ତ୍ତମାନ ଯିବା ବା ରହିବା ଆପଣଙ୍କ ଇଚ୍ଛାଧୀନ । ଗଲେ କେଉଁ ପଥରେ ଯିବେ, ମୁଁ ଜାଣି ପାରୁ ନାହିଁ । ଆପଣ ଯଦି ଦକ୍ଷିଣ ଦିଗସ୍ଥ ସମୁଦ୍ର ପଥରେ ଯିବାକୁ ଇଚ୍ଛା କରନ୍ତି, ଆପଣଙ୍କ ସମଭିବ୍ୟାହାରରେ ମୁଁ କତିପୟ ଅନୁଚର ପ୍ରେରଣ କରିବି । ହୁଏନସାଂ ଉତ୍ତର କଲେ, "ଚୀନ ପରିତ୍ୟାଗ କରି ମୁଁ ପଶ୍ଚିମ ସୀମାନ୍ତରେ ଉପସ୍ଥିତ ହୋଇ କୌ-ଖ୍ୟାଂ ନାମକ ଦେଶରେ ପ୍ରବିଷ୍ଟ ହୋଇଥିଲି । ଉକ୍ତ ଦେଶର ନରପତି ଅତ୍ୟନ୍ତ ଜ୍ଞାନବାନ୍ ଓ ଧର୍ମ-ପରାୟଣ । ମୋତେ ତତ୍ତ୍ୱାନ୍ୱେଷଣାର୍ଥେ ଗମନ କରୁଥିବା ଦେଖି ସେ ଆନନ୍ଦରେ ଅଭିଭୂତ ହୋଇଥିଲେ ଓ ମୋତେ ଆବଶ୍ୟକ ସମସ୍ତ

ପଦାର୍ଥ ଦାନ କରିଥିଲେ । ସ୍ୱଦେଶ ପ୍ରତ୍ୟାଗମନ-ମାର୍ଗରେ ଆଉ ଥରେ ତାହାଙ୍କ ସାକ୍ଷାତ୍ କରିବା ସକାଶେ ସେ ମୋତେ ଅନୁରୋଧ କରିଅଛନ୍ତି । ମୁଁ ଏହି କର୍ତ୍ତବ୍ୟ ପାଳନରେ କଦାପି ତ୍ରୁଟି କରି ପାରିବି ନାହିଁ; ଅତଏବ ମୁଁ ଉତ୍ତର ଭାରତ ସ୍ଥଳ-ପଥରେ ଗମନ କରିବି ।”

ରାଜା କହିଲେ, “ତାହାହେଲେ କହନ୍ତୁ, ଆପଣଙ୍କର କଣ କଣ ଆବଶ୍ୟକ ?” ହୁଏନ୍‌ସାଂ କହିଲେ, “ମୋର କିଛି ଲୋଡ଼ା ନାହିଁ ।” ରାଜା କହିଲେ, “ଏପରି ଭାବରେ ଆପଣଙ୍କୁ ଛାଡ଼ି ଦେବା ଅସମ୍ଭବ ।” ତତ୍ପରେ ରାଜା ହୁଏନ୍‌ସାଂଙ୍କୁ ସ୍ୱର୍ଣ୍ଣ ମୁଦ୍ରା ଓ ଅନ୍ୟାନ୍ୟ ଦ୍ରବ୍ୟ ଦାନ କରିବା ସକାଶେ ଆଦେଶ ପ୍ରଦାନ କଲେ । କୁମାରରାଜ ମଧ୍ୟ ତାହାଙ୍କୁ ଅନେକ ବହୁମୂଲ୍ୟ ଦ୍ରବ୍ୟ ପ୍ରଦାନ କଲେ; କିନ୍ତୁ ତହିଁରୁ ସେ କିଛି ଗ୍ରହଣ କଲେ ନାହିଁ । କେବଳ କୁମାରରାଜାଙ୍କଠାରୁ ସୁକୋମଳ ଲୋମ-ଗର୍ଭିତ ସ୍ଥୂଳ ଚର୍ମ-ନିର୍ମିତ ଜଳର ଅଭେଦ୍ୟ ଏକ ଅଙ୍ଗାବରଣ ଗ୍ରହଣ କଲେ ।

---

## ବିଦାୟ ଗ୍ରହଣ—ସ୍ୱଦେଶ-ପଥରେ ଯାତ୍ରା

ତତ୍ପରେ ସେହିଠାରୁ ସେ ପ୍ରସ୍ଥାନ କଲେ । ରାଜା ବହୁସଂଖ୍ୟକ ଅନୁଚର ସମଭିବ୍ୟାହାରରେ ବହୁଦୂର ପର୍ଯ୍ୟନ୍ତ ତାହାଙ୍କ ଅନୁଗମନ କରି ପ୍ରତ୍ୟାବୃତ୍ତ ହେଲେ । ଅନ୍ତିମ ବିଦାୟ ସମୟରେ ସମସ୍ତଙ୍କ ଚକ୍ଷୁ ଲୋତକରେ ଭାସମାନ ହେଲା ଓ ସମସ୍ତେ ବ୍ୟାକୁଳ ଭାବରେ କନ୍ଦନ କଲେ ।

ହୁଏନ୍‌ସାଂ ଯେ ସମସ୍ତ ପୁସ୍ତକ ଓ ମୂର୍ତ୍ତି ସଂଗ୍ରହ କରିଥିଲେ, ସେ ସମସ୍ତ ଅଶ୍ୱପୃଷ୍ଠରେ ପ୍ରେରଣ କରିବା ସକାଶେ ଉତ୍ତର-ଭାରତବର୍ଷସ୍ଥ ଉଧିତ ନାମକ ରାଜାଙ୍କ ସୈନିକ-ରକ୍ଷିବର୍ଗଙ୍କ ହସ୍ତରେ ସମର୍ପଣ କଲେ; କିନ୍ତୁ ସେମାନଙ୍କ ମନ୍ଦଗତି ଯୋଗୁଁ ରାଜା ଶୀଲାଦିତ୍ୟ ଏକ ବୃହତ୍

ହସ୍ତୀ ପ୍ରେରଣ କଲେ । ପଥ-ବ୍ୟୟ ସକାଶେ ତିନି ସହସ୍ର ସ୍ୱର୍ଣ୍ଣମୁଦ୍ରା ଓ ଦଶ ସହସ୍ର ରୌପ୍ୟମୁଦ୍ରା ପ୍ରଦାନ କଲେ । ସେ ହୁଏନ୍‌ସାଂଙ୍କ ଗୁଣରେ ଏତେ ମୁଗ୍ଧ ହୋଇଥିଲେ ଓ ତାଙ୍କ ପ୍ରତି ଏତେ ଅନୁରକ୍ତ ହୋଇ ପଡିଥିଲେ ଯେ, ତାହାଙ୍କ ବଦାନ୍ୟ ଗ୍ରହଣର ତିନଦିନ ଉତ୍ତାରେ ଶୀଲାଦିତ୍ୟ କୁମାର ଓ ଧ୍ରୁବ ଭଟ୍ଟଙ୍କ ସମଭିବ୍ୟାହାରରେ ବହୁଶତ ଅଶ୍ୱାରୋହୀ ସହ ଗମନ କରି, ତାହାଙ୍କ ସାହଚର୍ଯ୍ୟରେ ଆଉ କିଛି କାଳ ଯାପନ କରିବା ଅଭିପ୍ରାୟରେ ପୁନର୍ବାର ତାହାଙ୍କୁ ଯାଇ ଦର୍ଶନ କଲେ । ତତ୍ପରେ ମହାତାର ନାମକ ବୃତ୍ତିଜଣ ବଶିଷ୍ଠ କର୍ମଚାରୀଙ୍କୁ ତାହାଙ୍କ ଶରୀରରକ୍ଷୀ ସ୍ୱରୂପ ପ୍ରେରଣ କଲେ । ତତ୍ପରେ ସେ ସୂକ୍ଷ୍ମ କାର୍ପାସ ବସ୍ତ୍ରୋପରି କେତେକ ଖଣ୍ଡ ପତ୍ର ଲେଖିଲେ ଓ ତାହା ରକ୍ତ ଲାକ୍ଷାରେ ମୁଦ୍ରିତ କରି ଋଷିଗଣଙ୍କ ହସ୍ତରେ ପ୍ରଦାନ କଲେ । ତହିଁରେ ହୁଏନ୍‌ସାଂଙ୍କୁ ଯାନ ବାହନ ପ୍ରଦାନ କରି ଆବଶ୍ୟକ ହେଲେ ଚୀନ ଦେଶର ସୀମାନ୍ତରେ ନିରାପଦରେ ପହଞ୍ଚାଇଦେବା ସକାଶେ ତାଙ୍କ ମାର୍ଗରେ ଅବସ୍ଥିତ ଦେଶସମୂହର ନରପତିମାନଙ୍କୁ ଅନୁରୋଧ କଲେ ।

ପ୍ରୟାଗରୁ ଦକ୍ଷିଣ-ପଶ୍ଚିମ ଦିଗରେ ଗମନ କରି ହୁଏନ୍‌ସାଂ ସପ୍ତଦିବସରେ ଏକ ବିସ୍ତୀର୍ଣ୍ଣ ମରୁଭୂମି ଅତିକ୍ରମପୂର୍ବକ କୌଶାମ୍ବି ନାମକ ରାଜ୍ୟରେ ପ୍ରବିଷ୍ଟ ହେଲେ । କୌଶାମ୍ବିର ଦକ୍ଷିଣ ପାର୍ଶ୍ୱସ୍ଥ ଏକ ସ୍ଥାନରେ ରାଜା ଘୋଷିର ବୁଦ୍ଧଙ୍କୁ ଏକ ଉଦ୍ୟାନ ପ୍ରଦାନ କରିଥିଲେ ।

ଏଠାରେ ପୁନର୍ବାର ପବିତ୍ର ସ୍ଥାନସମୂହ ଦର୍ଶନ କରି ଉଦିତରାଜଙ୍କ ସହିତ ସେ ବିଭିନ୍ନ ଦେଶ ମଧ୍ୟରେ ମାସାଧିକ କାଳ ଉତ୍ତର-ପଶ୍ଚିମ ଦିଗରେ ଭ୍ରମଣ କଲେ । ପୁନର୍ବାର ସେ ମାର୍ଗରେ ସ୍ୱର୍ଗୀୟ ସୋପାନଶ୍ରେଣୀ ଦର୍ଶନ କରି ସେଠାରେ ପୂଜା କଲେ । ସେଠାରୁ ଉତ୍ତର-ପଶ୍ଚିମ ଦିଗରେ ତିନି ଯୋଜନ ପଥ ଅତିକ୍ରମ କରି ବୀରସେନଙ୍କ ରାଜଧାନୀରେ ପ୍ରବିଷ୍ଟ ହେଲେ ଓ ଏଠାରେ ଦୁଇ ମାସକାଳ ଅବସ୍ଥାନ

କଲେ । ସିଂହପ୍ରଭ ଓ ସିଂହଚନ୍ଦ୍ର ନାମକ ସହାଧ୍ୟାୟୀଙ୍କ ସହିତ ଏଠାରେ ତାହାଙ୍କର ସାକ୍ଷାତ ହେଲା ଏବଂ ସେମାନେ ତାହାଙ୍କ ସହିତ କୋଷ ସମ୍ପର୍କିତ ଶାସ୍ତ୍ର, ବିଦ୍ୟାମାତ୍ର ସିଦ୍ଧିଶାସ୍ତ୍ର ଓ ଅନ୍ୟାନ୍ୟ ଶାସ୍ତ୍ର ଆଲୋଚନା କଲେ । ଦୁଇମାସ ଅତୀତ ହେଲାରୁ ସେମାନଙ୍କଠାରୁ ବଦାନ୍ୟ ଗ୍ରହଣ କରି ଉତ୍ତର-ପଶ୍ଚିମ ଦିଗରେ ମାସାଧିକ କାଳ ଗମନ କଲେ ଓ ବହୁଭୂ ଦେଶ ଅତିକ୍ରମ କରି, ଉତ୍ତର-ଭାରତ ସ୍ଥିତ ଜାଲନ୍ଧର ରାଜ୍ୟରେ ଉପନୀତ ହେଲେ । ଜାଲନ୍ଧରରେ ସେ ଏକମାସ କାଳ ଅବସ୍ଥାନ କଲେ ।

ଉଧିତରାଜଙ୍କ ପ୍ରେରିତ ପଥପ୍ରଦର୍ଶକଙ୍କ ସମଭିବ୍ୟାହାରରେ ସେ ପଶ୍ଚିମଦିଗରେ ବିଂଶ ଦିବସକାଳ ଶୈଳ ଶୈଳ ସିଂହପୁର ଦେଶରେ ପ୍ରବିଷ୍ଟ ହେଲେ । ଏହି ସମୟରେ ତାହାଙ୍କ ସାହଚର୍ଯ୍ୟରେ ଉତ୍ତରାଞ୍ଚଳସ୍ଥ ଏକଶତ ସନ୍ନ୍ୟାସୀ ଗମନ କରୁଥିଲେ । ସେମାନଙ୍କ ଉପରେ ଧର୍ମପୁସ୍ତକ ଓ ମୂର୍ତ୍ତିଗୁଡିକର ଭାର ନ୍ୟସ୍ତ ହୋଇଥିଲା । ହୁଏନ୍‌ସାଂଙ୍କ ସମଭି-ବ୍ୟାହାରରେ ପଥପ୍ରଦର୍ଶକ ସୈନିକଦଳ ପ୍ରେରିତ ହୋଇଥିବା ଦେଖି ସନ୍ନ୍ୟାସିଗଣ ତାହାଙ୍କ ଅନୁଗମନ କରିବା ସକାଶେ କୁଣ୍ଠିତ ହେଲେ ନାହିଁ ଓ ସେମାନେ ତାହାଙ୍କ ସହିତ ବିଂଶ ଦିବସ କାଳ ଗିରିସଙ୍କଟ ମଧ୍ୟଦେଇ ଗମନ କଲେ । ଏହି ସ୍ଥାନ ଅତ୍ୟନ୍ତ ଦସ୍ୟୁ-ସଙ୍କୁଳ ଥିବାରୁ ସେମାନଙ୍କ ସହିତ ସଂଘର୍ଷଣରେ ପୁସ୍ତକ ଓ ମୂର୍ତ୍ତି-ସମୂହ ଅପହୃତ ହେବା ଭୟରେ ହୁଏନ୍‌ସାଂ ଏକ ସନ୍ନ୍ୟାସୀ କୁ ତାଙ୍କୁ ଅଗ୍ରେ ପ୍ରେରଣ କରୁଥିଲେ ଓ ଦସ୍ୟୁଗଣ ଆକ୍ରମଣ କରିବା ଉପକ୍ରମ କଲେ, ସେମାନଙ୍କୁ ଏହା କହିବାକୁ ଉପଦେଶ ଦେଇଥିଲେ, "ଆମ୍ଭେ-ମାନେ ଧର୍ମତତ୍ତ୍ୱାନ୍ୱେଷଣରେ ବହୁ ଦୂରରୁ ଆସିଅଛୁ ଏବଂ କେବଳ ଧର୍ମପୁସ୍ତକ, ମୂର୍ତ୍ତି ଓ ପବିତ୍ର ସଙ୍କେତସମୂହ ଘେନି ଯାଉଅଛୁଁ । ପ୍ରାର୍ଥନା ଯେ, ଆମ୍ଭମାନଙ୍କ ପ୍ରତି ପ୍ରତିକୂଳ ଭାବ ପୋଷଣ ନ କରି ଆପଣମାନେ ଆମ୍ଭମାନଙ୍କ ଦାନପତି ହୁଅନ୍ତୁ ।" ହୁଏନ୍‌ସାଂ ସହଚର ଓ

ଅନୁଚରବର୍ଗଙ୍କ ସମଭିବ୍ୟାହାରରେ ଗମନ କରୁଥିଲେ ଓ ଏହି ଉପାୟରେ ସେମାନେ ଦସ୍ୟୁମାନଙ୍କ ଅତ୍ୟାଚାରରୁ ମୁକ୍ତିଲାଭ କରୁଥିଲେ ।

---

## ସିନ୍ଧୁନଦୀ ଲଙ୍ଘନ

ଏହି ପ୍ରକାରେ ବଂଶ ଦିବସକାଳ ଚାଲି ଚାଲି ତକ୍ଷଶିଳାରେ ଉପସ୍ଥିତ ହେଲେ । ତକ୍ଷଶିଳାର ଯେଉଁ ସ୍ଥାନରେ ରାଜା ଚନ୍ଦ୍ରପ୍ରଭ ତାହାଙ୍କ ଦାନଶୀଳତାର ନିଦର୍ଶନସ୍ୱରୂପ ଏକ ସହସ୍ର ବାର ସ୍ୱମସ୍ତକ ଦାନ କରିଥିଲେ, ହୁଏନ୍‌ସାଂ ଉକ୍ତ ସ୍ଥାନ ପୂଜା କଲେ ।

ତକ୍ଷଶିଳାର ପଞ୍ଚାଶ ଯୋଜନ ଉତ୍ତର-ପୂର୍ବକୁ କାଶ୍ମୀର ରାଜ୍ୟ ଅବସ୍ଥିତ । କାଶ୍ମୀର ନରପତି ହୁଏନ୍‌ସାଂଙ୍କୁ ତାହାଙ୍କ ରାଜ୍ୟକୁ ନେଇ-ଯିବା ସକାଶେ ଦୂତ ପ୍ରେରଣ କଲେ; କିନ୍ତୁ ହସ୍ତିମୂଷ୍ଟକ ଦୁର୍ବହି ଭାର ଯୋଗୁଁ ସେ ଯାଇ ପାରିଲେ ନାହିଁ ।

ଏହାର ସପ୍ତ ଦିବସ ଉତ୍ତାରେ ସେ ଉତ୍ତର-ପଶ୍ଚିମ ଦିଗରେ ଗମନ କଲେ ଏବଂ ତିନଦିନ ଉତ୍ତାରେ ସିନ୍ଧୁନଦୀ ନିକଟରେ ଉପନୀତ ହେଲେ । ସିନ୍ଧୁନଦୀ ପାଞ୍ଚ ଛଅ ମାଇଲ ପ୍ରଶସ୍ତ । ସହଚର ଯାତ୍ରିଗଣ ପୁସ୍ତକ ତଥା ମୂର୍ତ୍ତିସକଳ ନେଇ ନୌକାରେ ଓ ହୁଏନ୍‌ସାଂ ହସ୍ତିପୃଷ୍ଠରେ ନଦୀ ପାରି ହେଲେ । ନୌକାରେ ଯତ୍ନସହକାରେ ପୁସ୍ତକ ଓ ଭାରତ-ବର୍ଷର ନାନା ଜାତୀୟ ପୁଷ୍ପର ବୀଜ ରକ୍ଷା କରିବା ଭାର ଏକ ସହଚର ଉପରେ ଅର୍ପଣ କଲେ । ନୌକା ନଦୀର ମଧ୍ୟସ୍ଥଳରେ ଉପନୀତ ହେଲାରୁ ପ୍ରବଳ ଝଞ୍ଜିକା ଉତ୍ଥିତ ହେଲା ଓ ଉତ୍ତାଳ ତରଙ୍ଗମାଳ ମଧ୍ୟରେ କ୍ଷିପ୍ତ ହୋଇ ଜଳମଗ୍ନ ହେବାକୁ ଲାଗିଲା । ପୁସ୍ତକରକ୍ଷାରେ ନିଯୁକ୍ତ ବ୍ୟକ୍ତି ବିଚଳିତ ହୋଇ ନଦୀ ସ୍ରୋତରେ ପତିତ ହେଲା ଓ ସହଯାତ୍ରିଗଣ ତତ୍‌କ୍ଷଣାତ୍ ତାହାକୁ ଉଦ୍ଧାର କଲେ; କିନ୍ତୁ ପଞ୍ଚାଶ ଖଣ୍ଡ ସୂତ୍ରଗ୍ରନ୍ଥ ଓ ପୁଷ୍ପ

ବୀଜସକଳ ଜଳରେ ନିମଗ୍ନ ହେଲା । ସେମାନେ ଅବଶିଷ୍ଟ ପୁସ୍ତକ ଓ ମୂର୍ତ୍ତିସକଳ ଉଦ୍ଧାର କଲେ ।

ଏହି ସମୟରେ କପିଶା ନରପତି ଉଦ୍‌ଭଣ୍ଡରେ ଅବସ୍ଥାନ କରୁଥିଲେ । ସେ ହୁଏନ୍‌ସାଂଙ୍କ ଆଗମନବାର୍ତ୍ତା ଶ୍ରବଣ କରି ସ୍ୱୟଂ ଯାଇ ତାହାଙ୍କୁ ପ୍ରଣାମ କଲେ ଓ ତାହାଙ୍କ ରାଜଧାନୀରେ ପଦାର୍ପଣ କରିବା ସକାଶେ ତାହାଙ୍କୁ ଅନୁରୋଧ କଲେ । ତତ୍ପରେ ସେ କହିଲେ, "ମୁଁ ଶୁଣିଅଛି ଯେ, ଆପଣଙ୍କର କେତେଗୁଡ଼ିଏ ଧର୍ମପୁସ୍ତକ ନଦୀଜଳରେ ନିମଗ୍ନ ହୋଇଗଲା। ଆପଣ କି ଭାରତବର୍ଷରୁ ପୁଷ୍ପବୀଜ ଓ ଫଳ ଆଣିଥିଲେ ?" ହୁଏନ୍‌ସାଂ ଉତ୍ତର କଲେ, "ଆଣିଥିଲି, ସେହିକାରେ ଆପଣଙ୍କ ନୌକା ଜଳମଗ୍ନ ହେବାର ଏହା ହିଁ ପ୍ରଧାନ କାରଣ । ଆବହମାନ କାଳରୁ ଏହା ଘଟି ଆସୁଅଛି ଯେ, ଯେଉଁ ବ୍ୟକ୍ତି ପୁଷ୍ପବୀଜ ନେଇ ନଦୀ ପାର ହୁଏ, ତାହାକୁ ଏହିପରି ଦୁର୍ଦ୍ଦଶାଗ୍ରସ୍ତ ହେବାକୁ ହୁଏ ।"

---

## କପିଶା ନରପତିଙ୍କ ସ୍ୱଦେଶ-ଯାତ୍ରା

ହୁଏନ୍‌ସାଂ ରାଜାଙ୍କ ସମଭିବ୍ୟାହାରରେ ରାଜଧାନୀରେ ଉପସ୍ଥିତ ହୋଇ ତତ୍ରତ୍ୟ ଏକ ମନ୍ଦିରସ୍ଥିତ ମଠରେ ପଚାଶ ଦିନ ଯାପନ କଲେ । ପୂର୍ବୋକ୍ତସମ୍ପନ୍ନ ନଦୀ ଜଳରେ ବିନଷ୍ଟ ହୋଇଥିବା ଯୋଗୁଁ ତ୍ରିପିଟକ ଓ କାଶ୍ୟପୀୟ ପୁନର ପ୍ରତିଲିପି ପ୍ରସ୍ତୁତ କରିବା ସକାଶେ ଉଦ୍ୟାନଦେଶକୁ କେତେକ ଲୋକ ପ୍ରେରଣ କଲେ ।

କାଶ୍ମୀର ନରପତି ହୁଏନ୍‌ସାଂଙ୍କୁ ପରେ ଦୂରତ୍ୱ ସତ୍ତ୍ୱେ ରାଜ୍ୟର ସମୀପବର୍ତ୍ତୀ ହେଉଥିବା ଶ୍ରବଣ କରି ନିଜେ ଯାଇ ତାହାଙ୍କ ସଙ୍ଗେ ସାକ୍ଷାତ୍ କରି, ସ୍ୱରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ହୁଏନ୍‌ସାଂ କପିଶା ନରପତିଙ୍କ ସମଭିବ୍ୟାହାରରେ ଉତ୍ତର-ପଶ୍ଚିମ ଦିଗରେ ଏକ ମାସ କାଳ ଚାଲି ଚାଲି ଲଂଘାନ ରାଜ୍ୟର ସୀମାନ୍ତରେ ଉପସ୍ଥିତ ହେଲେ । ରାଜା

ରାଜଧାନୀର ଅଧିବାସୀ ଗୃହସ୍ଥ ଓ ସନ୍ନ୍ୟାସିଗଣଙ୍କୁ ପତାକା ସହ ହୁଏନ୍‌ସାଂଙ୍କୁ ପାଛୋଟି ଆଣିବା ସକାଶେ ପ୍ରସ୍ତୁତ ରଖିବା ପାଇଁ ଯୁବରାଜଙ୍କୁ ପ୍ରେରଣ କଲେ ଓ ନିଜେ ତାହାଙ୍କ ପଶ୍ଚାଦ୍‌ଗମନ କଲେ । ହୁଏନ୍‌ସାଂ ଓ ରାଜା କ୍ରମେ ପରସ୍ପର ସନ୍ନିକଟବର୍ତ୍ତୀ ହେଲେ ଓ ପରସ୍ପର ସମ୍ମୁଖୀନ ହେଲାରୁ ଦେଖିଲେ ଯେ, ଅସଂଖ୍ୟ ଲୋକ ପତାକାହସ୍ତରେ ତାହାଙ୍କ ଦର୍ଶନ ପ୍ରତୀକ୍ଷାରେ ଦଣ୍ଡାୟମାନ ହୋଇଅଛନ୍ତି । ହୁଏନ୍‌ସାଂଙ୍କୁ ଦର୍ଶନ କରି ସେମାନେ ଆନନ୍ଦଗଦ୍‌ଗଦ-ହୃଦୟରେ ସମ୍ମାନିତ କଲେ ଓ ତାହାଙ୍କ ଅଗ୍ର ଓ ପୃଷ୍ଠଦେଶରେ ବେଷ୍ଟନପୂର୍ବକ ତାହାଙ୍କ ସ୍ତୁତିଗାନ କରି ରାଜଧାନୀ ଅଭିମୁଖରେ ଅଗ୍ରସର ହେଲେ । ସେଠାରେ ଉପସ୍ଥିତ ହୋଇ ସେ ମହାଯାନ ମନ୍ଦିରରେ ଅବସ୍ଥାନ କଲେ । ରାଜା ଏକ ସଭା ଆହ୍ୱାନ କରି ତହିଁରେ ପଞ୍ଚସପ୍ତତମ ଦିବସ ପର୍ଯ୍ୟନ୍ତ ମୋକ୍ଷ ମହାଦାନ ନାମକ ଭିକ୍ଷା ଦାନ କଲେ ।

---

## ଗୃହାଭିମୁଖେ

ତତ୍ପରେ ସେ ସେଠାରୁ ପ୍ରସ୍ଥାନ କଲେ ଓ ଦକ୍ଷିଣ ଦିଗରେ ଚାଲି ଚାଲି ପଞ୍ଚଦଶ ଦିବସ ଉତ୍ତାରେ 'ବାରଣ'ରେ ଉପସ୍ଥିତ ହୋଇ ପବିତ୍ର ସ୍ଥାନମାନ ଦର୍ଶନ କଲେ । ପୁଣି ଉତ୍ତର-ପଶ୍ଚିମ ଦିଗରେ ଚାଲି ଅବକାଣ ରାଜ୍ୟରେ ଓ ସେଠାରୁ ଉତ୍ତର-ପଶ୍ଚିମ ଦିଗରେ ଯାଇ ମୌନ୍ଦୁଟ ରାଜ୍ୟରେ ଉପସ୍ଥିତ ହେଲେ । ପୁଣି ସେଠାରୁ ପାଞ୍ଚଶତ ଲି ଉତ୍ତରକୁ ଗମନ କରି ଫୋ-ଲି-ଶି ଓ ବର୍ଦ୍ଧସ୍ଥାନ ରାଜ୍ୟରେ ପ୍ରବିଷ୍ଟ ହେଲେ । ସେହି ସ୍ଥାନରୁ ପୂର୍ବ ଦିଗରେ ଗମନ କରି କପିଶାର ସୀମାନ୍ତରେ ଉପସ୍ଥିତ ହେଲେ । ସେଠାର ରାଜା ସପ୍ତ ଦିବସ କାଳ ଭିକ୍ଷା ଦାନ ସକାଶେ ଏକ ସଭା ଆହ୍ୱାନ କଲେ । ଏହି ସ୍ଥାନରେ ହୁଏନ୍‌ସାଂ ତାହାଙ୍କଠାରୁ ବିଦାୟ ଗ୍ରହଣ କରି ଗୃହାଭିମୁଖରେ ଯାତ୍ରା କରିବା

ସକାଶେ ଅନୁମତି ପ୍ରାର୍ଥନା କଲେ । ପୁଣି ଏହି ସ୍ଥାନରୁ ଏକ ଯୋଜନ ପଥ ଅତିକ୍ରମ କରି କୋଶପମ ରାଜ୍ୟରେ ଉପସ୍ଥିତ ହେଲେ । ଏହି ସ୍ଥାନରେ ହୁଏନ୍‌ସାଂ ରାଜାଙ୍କଠାରୁ ଅନ୍ତିମ ବିଦାୟ ଗ୍ରହଣ କରି ଉତ୍ତର-ଉମୂଖରେ ଯାତ୍ରା କଲେ । ରାଜା ତାହାଙ୍କ ସହିତ ଜନୈକ ପ୍ରଧାନ କର୍ମଚାରୀଙ୍କ ଅଧୀନରେ ଏକଶତ ଲୋକ ତୁଷାରମୟ ପର୍ବତୋପରି ତାହାଙ୍କ ଇନ୍ଧନ, ଖାଦ୍ୟ ଓ ଅନ୍ୟାନ୍ୟ ସାମଗ୍ରୀ ବହନ କରିବା ସକାଶେ ପ୍ରେରଣ କଲେ ।

ସପ୍ତଦିବସ କାଳ ଚାଲି ଚାଲି ସେମାନେ ଏକ ପର୍ବତଶିଖରରେ ଉପନୀତ ହେଲେ । ଏହି ପର୍ବତ ବହୁ ସୂଚ୍ୟଗ୍ର ଶୃଙ୍ଗବିଶିଷ୍ଟ ଏବଂ ଭୀଷଣ ବନ୍ଧୁର ଓ କଙ୍କରମୟ । ଏହାର ବିଭିନ୍ନାଂଶ ଉଚ୍ଚାବଚ ଭାବରେ ଊର୍ଦ୍ଧ୍ୱକୁ ଉତ୍ଥିତ ହୋଇଅଛି । ସ୍ଥାନେ ସ୍ଥାନେ ସମତଳ ଭୂମି ବିଦ୍ୟମାନ; ତତ୍ପରେ ଅଛି ଶୃଙ୍ଗ । କୌଣସି ଅଂଶ ନିରବଚ୍ଛିନ୍ନ ସମତଳ ନୁହେଁ । ଏହି ପର୍ବତ ଅତିକ୍ରମ କରିବାରେ ସେମାନେ ଯେଉଁ କଷ୍ଟ ଓ କ୍ଳାନ୍ତି ଅନୁଭବ କରିଥିଲେ, ତାହା ବର୍ଣ୍ଣନାତୀତ ।

ଏହି ସ୍ଥାନରୁ ଅଶ୍ୱପୃଷ୍ଠରେ ଆରୋହଣ କରିବା ଅସମ୍ଭବ ହେଲା ହୁଏନ୍‌ସାଂ ହସ୍ତସ୍ଥିତ ଦଣ୍ଡ ସାହାଯ୍ୟରେ ପଥ ଅତିକ୍ରମ କରିବାକୁ ଲାଗିଲେ । ସପ୍ତଦିବସ ଉତ୍ତାରେ ସେମାନେ ଏକ ପର୍ବତ ସମୀପରେ ଉପସ୍ଥିତ ହେଲେ । ତାହାର ପାଦଦେଶରେ ଏକଶତ ଗୃହବିଶିଷ୍ଟ ଏକ ଗ୍ରାମ ଅବସ୍ଥିତ ଥିଲା । ଗ୍ରାମବାସୀମାନେ ସମସ୍ତେ ମେଷ ପାଳନ କରୁଥିଲେ । ମେଷଗୁଡ଼ିକ ଗର୍ଦ୍ଦଭ ତୁଲ୍ୟ ବୃହତ୍କାୟ । ଏଠାରେ ଦିନ ଯାପନ କରି ଅର୍ଦ୍ଧରାତ୍ରରେ ପ୍ରସ୍ଥାନ କଲେ । ଜଣେ ଗ୍ରାମବାସୀ ଉଷ୍ଟ୍ର-ପୃଷ୍ଠରେ ତାହାଙ୍କ ପଥପ୍ରଦର୍ଶକ ହେଲା । ଏହି ପାର୍ବତ୍ୟ ପ୍ରଦେଶ ମଧ୍ୟସ୍ଥ ବହୁସ୍ଥାନ ଚିର ତୁଷାରାବୃତ । ଅସାବଧାନ ହେଲେ ପ୍ରତି ପଦ-କ୍ଷେପରେ ପଥିକମାନଙ୍କ ପ୍ରାଣନାଶର ଆଶଙ୍କା ରହିଥିଲା ।

ପ୍ରତ୍ୟୁଷରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଏହି ତୁଷାରାବୃତ ପ୍ରଦେଶ ଲଙ୍ଘନ କରିବାକୁ ଲାଗିଲେ । ଏହି ସମୟରେ ତାହାଙ୍କ ସଙ୍ଗରେ କେବଳ ସାତଜଣ ସନ୍ନ୍ୟାସୀ, କୋଡିଏ ଜଣ ଅନୁଚର, ଗୋଟିଏ ହସ୍ତୀ, ଦଶ ଗୋଟି ଗର୍ଦ୍ଦଭ ଓ ଚାରିଗୋଟି ଅଶ୍ୱ ଥିଲେ ।

ପରଦିନ ପ୍ରାତଃକାଳରେ ସେମାନେ ଏକ ଗିରିସଙ୍କଟର ନିମ୍ନ-ଦେଶରେ ଉପନୀତ ହେଲେ । ସେହି ସ୍ଥାନରୁ ଭୀଷଣ କଷ୍ଟଦାୟକ ମାର୍ଗରେ ଗମନ କରି ଏକ ଅତ୍ୟୁଚ୍ଚ ପର୍ବତ ଆଡ଼କୁ ଅଗ୍ରସର ହେଲେ । ଦୂରରୁ ଉକ୍ତ ପର୍ବତ ତୁଷାରାବୃତ ତୁଲ୍ୟ ପ୍ରତୀୟମାନ ହେଲା ; କିନ୍ତୁ ନିକଟକୁ ଯାଇ ଦେଖିଲେ ଯେ, ତାହା କେବଳ ଶ୍ୱେତ ପ୍ରସ୍ତରରେ ପରିପୂର୍ଣ୍ଣ । ପର୍ବତ ଅତି ଉଚ୍ଚ ଓ ମେଘାଚ୍ଛନ୍ନ; କିନ୍ତୁ ବାୟୁ ତାଡିତ ତୁଷାର ଶୃଙ୍ଗ ସ୍ପର୍ଶ କରୁ ନାହିଁ । ସାୟଂକାଳରେ ସେମାନେ ପର୍ବତ ଶିଖରକୁ ଆରୋହଣ କଲେ । ବାୟୁ ଏଡ଼େ ଶୀତଳ ଥିଲା ଯେ, ସେମାନଙ୍କ ମଧ୍ୟରୁ କେହି ଏଠାରେ ଏକ ମୂହୂର୍ତ୍ତି ସୁଦ୍ଧା ଅବସ୍ଥାନ କରିବାକୁ ସାହସ କଲେ ନାହିଁ ।

ଏହି ପର୍ବତ ଉଦ୍ଭିଦଶୂନ୍ୟ । ସ୍ଥାନେ ସ୍ଥାନେ ବିଶୃଙ୍ଖଳ ଭାବରେ ବନ୍ୟସ୍ତ ପ୍ରସ୍ତରସ୍ତୂପରେ ପରିପୂର୍ଣ୍ଣ । ଉଚ୍ଚ ନୀଚ ଶୃଙ୍ଗସମୂହ ପତ୍ରବିହୀନ ବୃକ୍ଷ ତୁଲ୍ୟ ଦଣ୍ଡାୟମାନ ହୋଇ ରହିଅଛନ୍ତି । ଏହି ସ୍ଥାନର ଅପର ପାର୍ଶ୍ୱରେ ପର୍ବତ ଏତେ ଉଚ୍ଚ ଯେ, ପ୍ରବଳ ବେଗରେ ବାୟୁ ପ୍ରବାହିତ ହେଲେ ଉଡ୍‌ଡୀୟମାନ ପକ୍ଷିସକଳ ଏହା ଲଙ୍ଘନ କରି ପାରନ୍ତି ନାହିଁ । ପର୍ବତର ଦକ୍ଷିଣରୁ ଉତ୍ତରକୁ ଯିବାକୁ ହେଲେ ବହୁଶତ ପଦ ପରିମିତ ଭୂମି ଲଙ୍ଘନ କରିବାକୁ ହୁଏ । ଏହି ସ୍ଥାନ ଅତିକ୍ରମ କଲେ ପଥ ଅଳ୍ପ ବିଶ୍ରମଦାୟକ । ସମଗ୍ର ଜମ୍ବୁଦ୍ୱୀପରେ ଏତେ ଉଚ୍ଚ ପର୍ବତଶୃଙ୍ଗ ଆଉ ନାହିଁ ।

---

## କୁନ୍ଦୁଜରେ ପ୍ରବେଶ

ହୁଏନ୍‌ସାଂ ଏହି ସ୍ଥାନରୁ ପର୍ବତ ଅବତରଣ କରି କେତେକ ଲି ପଥ ଅତିକ୍ରମ କଲାପରୁ ଏକ ସମତଳ ଭୂମି ପାଇଲେ ଓ ସେଠାରେ ଶିବିର ସ୍ଥାପନ କରି ରାତ୍ରି ଯାପନ କଲେ । ପରଦିନ ପ୍ରାତଃକାଳରେ ପୁନର୍ବାର ଗନ୍ତବ୍ୟ ପଥରେ ଅଗ୍ରସର ହେଲେ ଓ ପାଞ୍ଚ ଛଅ ଦିନ କାଳ ପର୍ବତ ଅବତରଣ କରି ଅନ୍ତରବ ନାମକ ଦେଶରେ ଉପନୀତ ହେଲେ । ଅନ୍ତରବ ପୂର୍ବତନ ତୁଖାର୍ର ନାମାନ୍ତର । ଏହି ସ୍ଥାନରେ ତିନି ଗୋଟି ସଂଘାରାମ ଥିଲା ଓ ତହିଁରେ କେତେକ ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ । ସେମାନେ ସମସ୍ତେ ମହାସଂଘିକ ମତାବଲମ୍ବୀ । ଏଠାରେ ଅଶୋକଙ୍କ ନିର୍ମିତ ଏକ ସ୍ତୂପ ଥିଲା ।

ହୁଏନ୍‌ସାଂ ସେଠାରେ ପାଞ୍ଚଦିନ ଅବସ୍ଥାନ କଲେ । ତତ୍ପରେ ଉତ୍ତରପଶ୍ଚିମ ଦିଗରେ ଚାରିଶତ ଲି ପଥ ଲଙ୍ଘନପୂର୍ବକ ପର୍ବତ ଅବତରଣ କରି ଖୋସ୍ତ ଦେଶରେ ଉପନୀତ ହେଲେ । ଏହା ପୂର୍ବ-ତନ ତୁଖାର୍ ଦେଶର ଏକାଂଶ ।

ଏହି ସ୍ଥାନରୁ ଉତ୍ତର-ପଶ୍ଚିମ ଦିଗରେ ଅଗ୍ରସର ହୋଇ ଓ ପାର୍ବତ୍ୟ ପ୍ରଦେଶରେ ତିନିଶତ ଲି ପଥ ଅତିକ୍ରମ କରି କୁନ୍ଦୁଜ ରାଜ୍ୟରେ ପ୍ରବିଷ୍ଟ ହେଲେ । ଏହା ଅକ୍ସସ୍ ନଦୀ ପାର୍ଶ୍ୱରେ ଓ ତୁଖାର୍ର ପୂର୍ବ ସୀମାନ୍ତରେ ଅବସ୍ଥିତ । ରାଜଧାନୀ ନଦୀର ଦକ୍ଷିଣ କୂଳରେ ଅବସ୍ଥିତ ।

ଏହି ରାଜ୍ୟରେ ଶେ-ହୁ-ଖାଁଙ୍କ ଜ୍ୟେଷ୍ଠପୁତ୍ର ତୁଶେହୁ (ଦୁର୍ଗପତି) ନାମ ଧାରଣ କରି ସିଂହାସନାଧିରୂଢ ହୋଇଥିବା ଶ୍ରବଣ କରି ହୁଏନ୍‌ସାଂ ତାହାଙ୍କ ନିକଟକୁ ଗମନ କଲେ ଓ ସେଠାରେ ଏକ ମାସ କାଳ ଅବସ୍ଥାନ କଲେ । ତତ୍ପରେ ଶେ-ହୁ ତାହାଙ୍କ ସମଭିବ୍ୟାହାରରେ ଏକଦଳ ସୈନ୍ୟ ଓ ଏକଦଳ ବଣିକ ପ୍ରେରଣ କଲେ । ସେମାନେ ସମସ୍ତେ ଦୁଇଦିନ ରହି ରହି ମୁଞ୍ଜାନରେ ଉପନୀତ ହେଲେ । ପୂର୍ବତନ

ତୁଖାର ରାଜ୍ୟଭୁକ୍ତ ଅଢ଼ଙ୍ଗ, ରୋହ୍, କୃଶ୍ଣ ଓ ପରକ ଦେଶ ମୁଞ୍ଜନ ଦେଶ ସଂଲଗ୍ନ ହୋଇ ରହିଥିଲା ।

---

## ହିମତଲ ଅଧିବାସୀଙ୍କ ରୀତିନୀତି

ମୁଞ୍ଜନର ପୂର୍ବ ଦିଗରେ ପର୍ବତ ମଧ୍ୟରେ ତିନିଶତ ଲି ପଥ ଅତି-କ୍ରମ କରି ସେମାନେ ହିମତଳ ଦେଶରେ ଉପନୀତ ହେଲେ । ଏହା ମଧ୍ୟ ପୂର୍ବତନ ତୁଖାରର ଏକାଂଶ । ଏହି ଦେଶର ଅଧିବାସୀମାନଙ୍କର ରୀତିନୀତି ତୁର୍କୀମାନଙ୍କ ତୁଲ୍ୟ । କେବଳ ପାର୍ଥକ୍ୟ ଏହି ଯେ, ବିବାହିତା ସ୍ତ୍ରୀମାନେ ଅବଗୁଣ୍ଠନରେ ତୁଇହାତ ଉଚ୍ଚ ଏକ କାଷ୍ଠଶୃଙ୍ଗ ପରିଧାନ କରନ୍ତି । ଉକ୍ତ ଶୃଙ୍ଗ ସମ୍ମୁଖରେ ଊର୍ଦ୍ଧ୍ୱନିମ୍ନ ହୋଇ ଦୁଇ ଭାଗରେ ବିଭକ୍ତ ହୋଇଥାଏ । ଊର୍ଦ୍ଧ୍ୱଭାଗ ସ୍ୱାମୀଙ୍କ ପିତା ଓ ନିମ୍ନଭାଗ ତାହାଙ୍କ ମାତାଙ୍କ ପରିଚାୟକ । ପ୍ରତ୍ୟେକଙ୍କ ମୃତ୍ୟୁ ପରେ ତାହାଙ୍କ ପରିଚାୟକ ଭାଗ ଓ ଉଭୟଙ୍କ ମୃତ୍ୟୁରେ ସମଗ୍ର ଶୃଙ୍ଗଟି ଅପସାରିତ ହୁଏ ।

ଏହି ସ୍ଥାନରୁ ଦୁଇଶତ ଲି ପୂର୍ବ ଦିଗରେ ଯାତ୍ରା କରି ସେମାନେ ବଡ଼ଖଶାନ୍ ଦେଶରେ ଉପନୀତ ହେଲେ । ଏହା ମଧ୍ୟ ପୂର୍ବତନ ତୁଖାର ଦେଶର ଏକାଂଶ । ଏହି ସମୟରେ ଏଠାରେ ଝଡ଼ଝଞ୍ଜା ସହ ଭୀଷଣ ତୁଷାରପାତ ହେଉଥିଲା । ତେଣୁ କରି ସେମାନେ ଏଠାରେ ମାସାଧିକ କାଳ ଅବସ୍ଥାନ କଲେ ।

ପୁଣି ଏଠାରୁ ପର୍ବତ ମଧ୍ୟରେ ଦୁଇଶତ ଲି ଦକ୍ଷିଣ-ପୂର୍ବକୁ ଗମନ କରି ଯମଗାଁ ରାଜ୍ୟରେ ଉପନୀତ ହେଲେ ଏବଂ ସେଠାରୁ ତିନିଶତ ଲି ପଥ ତଦ୍ରୂପ ପାର୍ବତ୍ୟ ପ୍ରଦେଶ ମଧ୍ୟରେ ଯାତ୍ରାକରି କୁରାନ୍ ଦେଶରେ ପ୍ରବେଶ ହେଲେ ।

ଏଠାରୁ ପର୍ବତ ମଧ୍ୟରେ ପାଞ୍ଚଶତ ଲି ଉତ୍ତର-ପୂର୍ବରେ ଯାତ୍ରା କରି ତମସ୍ଥିତ ଦେଶରେ ଉପସ୍ଥିତ ହେଲେ । ଏହି ଦେଶ ଅତ୍ୟୁଚ୍ଚ ନଗାକୁଳସ୍ଥିତ ଦୁଇ ପର୍ବତ ମଧ୍ୟରେ ଅବସ୍ଥିତ । ଏଠାରେ ଅତ୍ୟୁତ୍ତମ ଅଶ୍ୱ ଜାତ ହେଉଥିଲେ । ସେଗୁଡ଼କ ଆକାରରେ କ୍ଷୁଦ୍ର ହେଲେହେଁ ଅତ୍ୟନ୍ତ ବଳଶାଳୀ । ଦେଶବାସିଗଣ ଶିଷ୍ଟ ସ୍ୱରବଶ୍ୟ, କୋପନସ୍ୱଭାବ ଓ କୁତ୍ସିତ । ସେମାନଙ୍କ ଚକ୍ଷୁ ଈଷତ୍ ନୀଳ ଓ ହରିଦ୍‌ବର୍ଣ୍ଣ । ଏଠାରେ ଦଶ ଗୋଟି ସଂଘାରାମ ଥିଲା । ଏହାର ରାଜଧାନୀର ନାମ ହ୍ୱା-ଲୋ-ତୋ । ଏଠାରେ ପୂର୍ବତନ ଏକ ରାଜାଙ୍କ ନିର୍ମିତ ଏକ ସଂଘାରାମ ଓ ତନ୍ମଧ୍ୟରେ ବୁଦ୍ଧଙ୍କ ଏକ ପ୍ରସ୍ତର ମୂର୍ତ୍ତି ଥିଲା । ଉକ୍ତ ମୂର୍ତ୍ତି ଉପରେ ବହୁ ରତ୍ନଜଡ଼ିତ ଓ ସୁବର୍ଣ୍ଣରଞ୍ଜିତ ଏକ ବୃତ୍ତାକାର ତାମ୍ର-ଫଳକ ଥିଲା । ଏହି ମୂର୍ତ୍ତିର ମସ୍ତକ ଶୂନ୍ୟରେ ଝୁଲୁଥିଲା । ଯେତେବେଳେ ଲୋକେ ଆସି ଏହାକୁ ପୂଜା କରୁଥିଲେ, ସେତେବେଳେ ଏହା ଊର୍ଦ୍ଧ୍ୱକୁ ଉଠି ଯାଉଥିଲା ଓ ପୂଜା ଶେଷରେ ସ୍ଥିର ହୋଇ ରହୁଥିଲା । ଏହି ବସ୍ତୁଟିର ବ୍ୟାପାରର ରହସ୍ୟ ଏପର୍ଯ୍ୟନ୍ତ କେହି ଭେଦ କରି ପାରି ନ ଥିଲେ ।

---

## ଶାମ୍ବୀ ଦେଶରେ ପ୍ରବେଶ—ମଧ୍ୟସର

ଏହି ଦେଶର ଉତ୍ତରଦିଗରେ ବୃହତ୍ ପର୍ବତ ମଧ୍ୟରେ ଶିଖନାନ୍ ଦେଶ ଅବସ୍ଥିତ ଓ ଏହା ଅତିକ୍ରମ କଲେ ଶାମ୍ବୀଦେଶ ବିଦ୍ୟମାନ । ଏଠାରୁ ପାର୍ବତ୍ୟ ପ୍ରଦେଶ ମଧ୍ୟରେ ସାତଶତ ଲି ପୂର୍ବକୁ ପାମିର ଉପତ୍ୟକା । ଏହାର ଦୈର୍ଘ୍ୟ ପୂର୍ବରୁ ପଶ୍ଚିମକୁ ଏକ ସହସ୍ର ଲି ଓ ପ୍ରସ୍ଥ ଉତ୍ତରରୁ ଦକ୍ଷିଣକୁ ଏକଶତ ଲି । ଏହା ଦୁଇ ପର୍ବତଶ୍ରେଣୀ ମଧ୍ୟରେ ଅବସ୍ଥିତ । ଏହା ସୁଂ-ଲିଂ ପର୍ବତମାଳା ମଧ୍ୟରେ ଏପରି ସ୍ଥଳରେ ଅବସ୍ଥିତ ହୋଇଅଛି ଯେ, ଏଠାରେ ବସନ୍ତ ଓ ଗ୍ରୀଷ୍ମକାଳରେ ମଧ୍ୟ

ଅନବରତ ତୁଷାରଝଟିକା ପ୍ରବଳ ବେଗରେ ପ୍ରବାହିତ ହେଉଥାଏ । ଭୂମି ସର୍ବଦା ତୁଷାରାଚ୍ଛନ୍ନ ଓ ଉଦ୍ଭିଦବହୀନ । ବୀଜର ଅଙ୍କୁରୋଦ୍‌ଗମ ହୁଏ ନାହିଁ । କେବଳ ମରୁଭୂମି ଓ ଜନହୀନ ଏହି ଉପତ୍ୟକାର ମଧ୍ୟ-ସ୍ଥଳରେ ଏକ ବଡ୍ରୀର୍ଣ୍ଣ ହ୍ରଦ ଥିଲା । ତାହାର ଦୈର୍ଘ୍ୟ ପୂର୍ବରୁ ପଶ୍ଚିମକୁ ଦୁଇଶତ ଲି ଓ ପ୍ରସ୍ଥ ଉତ୍ତରରୁ ଦକ୍ଷିଣକୁ ପଚାଶ ଲି । ପର୍ବତର ଅତ୍ୟୁଚ୍ଚ ସ୍ଥଳରେ ଏହା ଅବସ୍ଥିତ । ଏହା ଜମ୍ବୁଦ୍ୱୀପର କେନ୍ଦ୍ରସ୍ଥଳ । ଏହାର ଜଳରାଶି ଦୃଷ୍ଟିପଥର ଅତୀତ । ଏଥିରେ ନାନା ଜାତୀୟ ଜଳଜୀବ ଥିଲେ। ସେମାନଙ୍କ ଚିତ୍କାର ଏକଶତ କାର୍ଯ୍ୟଶାଳାର ଶବ୍ଦ ପରି । ଏଠାରେ ପକ୍ଷିସକଳ ପ୍ରାୟ ଦଶଫୁଟ ଉଚ୍ଚ । * ସେମାନଙ୍କ ଅଣ୍ଡ ବର୍ତ୍ତୁଳ ଜଳ-କଳସ ତୁଲ୍ୟ ବୃହତ୍ ।

ହ୍ରଦର ପଶ୍ଚିମାଂଶରୁ ଏକ ନଦୀ ନିର୍ଗତ ହୋଇଅଛି ଓ ତାହା ପଶ୍ଚିମ ଦିଗରେ ପ୍ରବାହିତ ହୋଇ ଓ-ମୋ-ସି-ଙ୍ଗର ପୂର୍ବ ସୀମାନ୍ତରେ ଅକ୍ଷୁସ ନଦୀରେ ମିଳିତ ହୋଇଅଛି ଓ ସେଠାରୁ ପଶ୍ଚିମ ଦିଗରେ ପ୍ରବାହିତ ହୋଇ ସମୁଦ୍ରରେ ପତିତ ହୋଇଅଛି । ଦକ୍ଷିଣ ପାର୍ଶ୍ୱସ୍ଥ ସମସ୍ତ ନଦୀ ଏହି ପ୍ରକାରେ ମିଳିତ ହୋଇଅଛନ୍ତି ।

ଉପତ୍ୟକାର ଦକ୍ଷିଣ ପାର୍ଶ୍ୱସ୍ଥ ପର୍ବତମାଳାର ଅପର ପାର୍ଶ୍ୱରେ ବୋଲୋର ନାମକ ଏକ ଦେଶ ଅଛି । ତାହା ସ୍ୱର୍ଣ୍ଣ ଓ ରୌପ୍ୟରେ ପରିପୂର୍ଣ୍ଣ । ସ୍ୱର୍ଣ୍ଣର ବର୍ଣ୍ଣ ଅଗ୍ନି ତୁଲ୍ୟ । ଏହି ହ୍ରଦ ଉତ୍ତର ଓ ଦକ୍ଷିଣ ଦିଗବ୍ୟାପୀ ଅନବତପ୍ତ ନାମକ ହ୍ରଦର ଏକାଂଶ ।

ଏହି ଉପତ୍ୟକାର ପୂର୍ବ ପାର୍ଶ୍ୱରୁ ଯାତ୍ରା କରି ପର୍ବତର ତୁଙ୍ଗ ସ୍ଥାନ ଓ ତୁଷାରାଚ୍ଛନ୍ନ ଗିରିବର୍ତ୍ମରେ ପାଞ୍ଚଶତ ଲି ପଥ ଅତିକ୍ରମ କରି ସେମାନେ କି-ପାନ ତୋ ଦେଶରେ ପ୍ରବିଷ୍ଟ ହେଲେ । ରାଜଧାନୀର ସନ୍ନିକଟରେ ଅତ୍ୟୁଚ୍ଚ ପର୍ବତ ଦଣ୍ଡାୟମାନ ଓ ଉତ୍ତରରେ ସୀତା ନଦୀ ପୂର୍ବ ଦିଗକୁ

* ସମ୍ଭବତଃ ଉଷ୍ଟ୍ରପକ୍ଷୀ ।

ପ୍ରବାହିତ ହୋଇ ସମୁଦ୍ରରେ ପତିତ ହୋଇଅଛି । ପୁଣି ଲବଣ ହ୍ରଦ ( ଲବ୍ ) ମଧ୍ୟରେ ପ୍ରବାହିତ ହୋଇ ପୃଥିବୀଗର୍ଭକୁ ଭେଦ କରିଅଛି ଓ ଶି-ଶି ପର୍ବତ ନିକଟରେ ନିର୍ଗତ ହୋଇ ପୀତ ନଦୀରେ ପରିଣତ ହୋଇଅଛି ।

## କୁମାରଜୀବ

ଏହି ଦେଶର ନରପତି ଅତ୍ୟନ୍ତ ଜ୍ଞାନୀ । ତାହାଙ୍କର ବହୁସଂଖ୍ୟକ ବଂଶଧର ଏହି ରାଜ୍ୟରେ ରାଜତ୍ୱ କରିଥିଲେ । କଥିତ ଅଛି ଯେ, ସେ ଚୀନ ଦେବଗୋଷ୍ଠସମ୍ଭୂତ । ପ୍ରାଚୀନ ରାଜପ୍ରାସାଦରେ ଆଚାର୍ଯ୍ୟ କୁମାରଜୀବଙ୍କ ଏକ ସଂଘାରାମ ଥିଲା । କୁମାରଜୀବ ତକ୍ଷଶିଳା ଅଧିବାସୀ । ଧର୍ମ ବିଷୟରେ ସେ ବିଚକ୍ଷଣ ବାଗ୍ମିତାଶକ୍ତିସମ୍ପନ୍ନ ଥିଲେ ଓ ତାହାଙ୍କ କୀର୍ତ୍ତି ସର୍ବତ୍ର ବ୍ୟାପ୍ତ ହୋଇଥିଲା । ପ୍ରତ୍ୟହ ସେ ବତିଶ ସହସ୍ର ଶବ୍ଦ ଆବୃତ୍ତି କରୁଥିଲେ ଓ ବତିଶ ସହସ୍ର ଶବ୍ଦ ଲେଖୁଥିଲେ । ସେ ସର୍ବଦା ଧର୍ମଗ୍ରନ୍ଥ ଅଧ୍ୟୟନରେ ନିରତ ଥିଲେ ଓ ଅନେକ ଶାସ୍ତ୍ର ପ୍ରଣୟନ କରିଥିଲେ । ତାହାଙ୍କ ରଚନାପ୍ରଣାଳୀ ସୁଶ୍ରୀସମ୍ପନ୍ନ ଓ ତାହାଙ୍କ ପ୍ରଣୀତ ଶାସ୍ତ୍ରସମୂହ ସର୍ବତ୍ର ଖ୍ୟାତି ଲାଭ କରିଥିଲା । ସେ ସୌତ୍ରାନ୍ତିକ ମତାବଲମ୍ବୀମାନଙ୍କ ଆଦର୍ଶଗୁରୁ ଥିଲେ ।

## ଦସ୍ୟୁମାନଙ୍କ ସହିତ ସାକ୍ଷାତ୍

ଏହି ସମୟରେ ପୂର୍ବରେ ଅଶ୍ୱଘୋଷ, ଦକ୍ଷିଣରେ ଦେବ, ପଶ୍ଚିମରେ ନାଗାର୍ଜ୍ଜୁନ ଓ ଉତ୍ତରରେ କୁମାରଜୀବ * ପ୍ରସିଦ୍ଧି ଲାଭ କରିଥିଲେ ଏବଂ ଜୀବଗଣଙ୍କ ମଧ୍ୟରେ ଆଲୋକ୍ ବିତରଣକ୍ଷମ ସୂର୍ଯ୍ୟଚତୁଷ୍ଟୟ ନାମରେ ଅଭିହିତ ହୋଇଥିଲେ । କୁମାରଲବ୍ଧଙ୍କ ଖ୍ୟାତି ଏତେଦୂର

* କୁମାରଲବ୍ଧ

ବ୍ୟାପ୍ତ ହୋଇଥିଲା ଯେ, ଜଣେ ରାଜା କେବଳ ତାହାଙ୍କ ସମ୍ମାନ ଓ ପରିପାଳନା କରିବା ଉଦ୍ଦେଶ୍ୟରେ ତାହାଙ୍କ ବାସଭୂମି ତକ୍ଷଶିଳା ଆକ୍ରମଣ କରିଥିଲେ ।

ରାଜଧାନୀରୁ ତିନିଶତ ଲି ଦକ୍ଷିଣ-ପୂର୍ବକୁ ଏକ ବୃହତ୍ ପ୍ରସ୍ତର ପ୍ରାଚୀର ଓ ତନ୍ମଧ୍ୟରେ ଦୁଇଗୋଟି ପ୍ରସ୍ତର-ନିର୍ମିତ କକ୍ଷ ଥିଲା । ପ୍ରତ୍ୟେକ କକ୍ଷରେ ସମାଧିଯୁକ୍ତ ଏକ ଏକ ଆର୍ହତ ଥିଲେ । ସେମାନେ ସରଳ ଓ ନିଶ୍ଚଳ ଭାବରେ ସମାସୀନ । ସେମାନଙ୍କ ଶରୀର ଅତ୍ୟନ୍ତ କ୍ଷୀଣ ଦେଖାଯାଉଥିଲା; କିନ୍ତୁ ଏହି ଅବସ୍ଥାରେ ବିଗତ ସପ୍ତଶତ ବର୍ଷର ଅତୀତ ହୋଇଥିଲେ ହେଁ ତାହା ଅକ୍ଷୟ ହୋଇ ରହିଅଛି ।

ଏହିଠାରେ ହୁଏନ୍‌ସାଂ କିଂଶଦିନମ କାଳ ଅବସ୍ଥାନ କରି ଉତ୍ତର-ପୂର୍ବ ଦିଗରେ ଯାତ୍ରା କଲେ । ପାଞ୍ଚ ଦିନର ପଥ ଅତିକ୍ରମ କଲା ଉତ୍ତାରେ ଏକଦଳ ଦସ୍ୟୁ ସେମାନଙ୍କୁ ଆକ୍ରମଣ କଲେ । ତାହାଙ୍କ ସହଚର ବଣିକଗଣ ପର୍ବତ ଉପରକୁ ପଳାୟନ କଲେ ଓ ହସ୍ତିଗଣ ସେମାନଙ୍କ ଅନୁସରଣରେ ବିତାଡିତ ହୋଇ ଜଳରେ ନିକ୍ଷିପ୍ତ ହେଲେ ଓ ପ୍ରାଣତ୍ୟାଗ କଲେ । ଦସ୍ୟୁଗଣ ପଳାୟନ କଲା ଉତ୍ତାରୁ ସେମାନେ ପୂର୍ବ ଦିଗରେ ଧୀରେ ଧୀରେ ପର୍ବତ ଓ ଗିରିସଂକଟ ଲଙ୍ଘନ କରିବାକୁ ଲାଗିଲେ ଏହି ପ୍ରକାରେ ଶୀତରେ ପଥକଷ୍ଟ ସହ୍ୟ କରି ପର୍ବତ ଅବତରଣପୂର୍ବକ ଆଠଶତ ଲି ପଥ ଅତିକ୍ରମ କରି, ସୁଂ-ଲିଂ ପର୍ବତଶ୍ରେଣୀରୁ ନିର୍ଗତ ହେଲେ ଓ ଉ-ଶ (ଓଚ) ରାଜ୍ୟରେ ପ୍ରବିଷ୍ଟ ହେଲେ ।

---

## ସମାଧିସ୍ଥ ଆର୍ହତ

ରାଜଧାନୀର ଦୁଇଶତ ଲି ପଶ୍ଚିମକୁ ବହୁଶୃଙ୍ଗ ଓ ଭଗ୍ନବିଶିଷ୍ଟ ଏକ ପର୍ବତ ଥିଲା ଏବଂ ଅତ୍ୟୁଚ୍ଚ ଶୃଙ୍ଗ ଉପରେ ଏକ ସ୍ତୂପ ଥିଲା । ପ୍ରବାଦ ଅଛି ଯେ, ବହୁଶତ ବର୍ଷ ପୂର୍ବେ ବଜ୍ର ଏକ ପର୍ବତକୁ ଚୂର୍ଣ୍ଣବିଚୂର୍ଣ୍ଣ କଲାରୁ

ଭଗ୍ନ ପ୍ରସ୍ତରରାଶି ମଧ୍ୟରେ ଏକ ବୃହତ୍‌କାୟ ଭିକ୍ଷୁଙ୍କ ଶରୀର ଦୃଷ୍ଟିଗୋଚର ହେଲା । ସେ ଚକ୍ଷୁ ମୁଦ୍ରିତ କରି ଉପବେଶନ କରିଥିଲେ ଓ ତାହାଙ୍କ ମୁଖ ଓ ସ୍କନ୍ଧଦେଶରେ ଦୀର୍ଘ ଜଟା ଲମ୍ବମାନ ହୋଇଥିଲା । କେତେକ କାଷ୍ଠଜୀବୀ ତାହାଙ୍କୁ ଦର୍ଶନ କରି ରାଜାଙ୍କ ନିକଟରେ ତାହାଙ୍କ ବିଷୟ ଜ୍ଞାପନ କଲେ । ରାଜା ସ୍ୱୟଂ ଯାଇ ତାହାଙ୍କୁ ଦର୍ଶନ କଲେ । ଏହି ସମ୍ବାଦ କ୍ରମେ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା ଓ ବହୁ ଲୋକ ସମବେତ ହୋଇ, ତାହାଙ୍କ ଚରଣରେ ପୁଷ୍ପୋପହାର ପ୍ରଦାନପୂର୍ବକ ତାହାଙ୍କୁ ପୂଜା କଲେ । ରାଜା ପଚାରିଲେ, "ଏ କିଏ ?" ସେହି ସ୍ଥାନରେ ଉପସ୍ଥିତ ଜଣେ ଭିକ୍ଷୁ ଉତ୍ତର କଲେ, "ଏ ଜଣେ ଅର୍ହତ । ପୂର୍ବରେ ଏ ଗୃହସ୍ଥ ଥିଲେ, ବର୍ତ୍ତମାନ ସଂସାରବିରାଗୀ ହୋଇ ତପସ୍ୟାରେ ସମାଧିସ୍ଥ ହୋଇଅଛନ୍ତି । ଏହି ଅବସ୍ଥାରେ ଅନେକ ବର୍ଷ ଅତୀତ ହୋଇଥିବାରୁ ତାହାଙ୍କ ମସ୍ତକସ୍ଥ କେଶରାଶି ଦୀର୍ଘ ଜଟାରେ ପରିଣତ ହୋଇଅଛି ।" ରାଜା କହିଲେ, "ଆପଣ ଯଦି ଜାଣନ୍ତି, ତାହାହେଲେ ତାହାଙ୍କୁ ଜାଗ୍ରତ କରନ୍ତୁ ।" ଭିକ୍ଷୁ କହିଲେ, "ବହୁ ଦିବସାବଧି ନିରାହାରରେ ଅବସ୍ଥିତ ବ୍ୟକ୍ତି ସମାଧିରୁ ଜାଗ୍ରତ ହେଲେ ତାହାଙ୍କର ଶରୀର କ୍ଷୟପ୍ରାପ୍ତ ହୁଏ ; ତେଣୁ ତାହାଙ୍କ ଶରୀରରେ ଦୁଗ୍ଧସାର ଲେପନ କରି ଚର୍ମ ଓ ମାଂସପେଶୀକୁ ସ୍ନିଗ୍ଧ ଓ କୋମଳ କରିବାକୁ ହେବ । ତତ୍ପରେ ଘଣ୍ଟାବାଦନପୂର୍ବକ ସମାଧି ଭଗ୍ନ କଲେ ସେ ସମ୍ଭବତଃ ସ୍ୱସ୍ଥାନରୁ ଉଠିବେ ।

ରାଜା କହିଲେ, "ଉତ୍ତମ ।" ତତ୍ପରେ ତାହାଙ୍କ ଆଦେଶାନୁସାରେ ଅନୁଚରଗଣ ତାହାଙ୍କ ଶରୀରରେ ଦୁଗ୍ଧସାର ଲେପନ କରି ଘଣ୍ଟାବାଦନ କଲେ । ଅର୍ହତ ଚକ୍ଷୁରୁନ୍ମୀଳନପୂର୍ବକ ଚତୁର୍ଦ୍ଦିଗ ନିରୀକ୍ଷଣ କରି କହିଲେ, "ସନ୍ନ୍ୟାସିବେଶଧାରୀ ଆପଣମାନେ କିଏ ?" ସେମାନେ ଉତ୍ତର କଲେ, "ଆମ୍ଭେମାନେ ଭିକ୍ଷୁ ।" ସେ କହିଲେ, "ମୋର ଗୁରୁ କାଶ୍ୟପ

ତଥାଗତ ବର୍ତ୍ତମାନ କେଉଁଠାରେ ଅଛନ୍ତି ?" ସେମାନେ କହିଲେ, "ସେ ନିର୍ବାଣପ୍ରାପ୍ତ ହୋଇଅଛନ୍ତି ।" ଏହା ଶ୍ରବଣ କରି ସେ ରୋଦନ କରିବାକୁ ଲାଗିଲେ ଓ ତତ୍ପରେ ପଚାରିଲେ, "ଶାକ୍ୟମୁନି କଣ ବୃଦ୍ଧ ହୋଇଅଛନ୍ତି ?" ସେମାନେ ଉତ୍ତର କଲେ, "ହିଁ, ସଂସାରରେ ଧର୍ମ ସ୍ଥାପନ କରି ସେ ମଧ୍ୟ ନିର୍ବାଣ ପ୍ରାପ୍ତ ହୋଇଅଛନ୍ତି ।" ଏହା ଶ୍ରବଣ କରି ସେ ଚକ୍ଷୁ ନିମୀଳନ କଲେ ଓ ଅଳ୍ପ ସମୟ ଉତ୍ତାରେ କଟା ଉତ୍ତୋଳନପୂର୍ବକ ତାହାଙ୍କ ଆସନରୁ ଆକାଶମାର୍ଗରେ ଉତ୍ଥିତ ହେଲେ । ତତ୍ପରେ ଆଧ୍ୟାତ୍ମିକ ଶକ୍ତିପ୍ରଭାବରେ ସେ ସ୍ୱଶରୀରରୁ ଅଗ୍ନି ନିର୍ଗତ କଲେ । ମୁହୂର୍ତ୍ତ ମଧ୍ୟରେ ତାହାଙ୍କ ଶରୀର ଉକ୍ତ ଅଗ୍ନିରେ ଭସ୍ମୀଭୂତ ହେଲା ଓ କେବଳ କେତେକ ଖଣ୍ଡ ଅସ୍ଥି ଭୂତଳରେ ପତିତ ହେଲା । ରାଜା ଓ ଉପସ୍ଥିତ ଜନମଣ୍ଡଳୀ ଉକ୍ତ ଅସ୍ଥି ସଂଗ୍ରହ କରି ତଦୁପରି ଏକ ସ୍ତୂପ ନିର୍ମାଣ କଲେ । ଉକ୍ତ ସ୍ତୂପ ଏହି ।

---

## କୁସ୍ତାନ (ଖୋଟାନ୍) – କାଶଗଡ଼

ଉକ୍ତ ସ୍ଥାନରୁ ପାଞ୍ଚଶତ ଲି ଉତ୍ତରରେ କାଶଗଡ଼ ଦେଶ ଅବସ୍ଥିତ । ସେଠାରୁ ପାଞ୍ଚଶତ ଲି ଦକ୍ଷିଣ-ପୂର୍ବରେ ସୀତା ନଦୀ ପାରିହୋଇ ସେମାନେ ଏକ ବୃହତ୍ ପର୍ବତଶ୍ରେଣୀ ଅତିକ୍ରମ କରି ଯୁକିୟାଂ ଦେଶରେ ଉପସ୍ଥିତ ହେଲେ । ଏହାର ଦକ୍ଷିଣରେ ଏକ ଅଦ୍ଭୁତ ପର୍ବତ ଅଛି । ଉକ୍ତ ପର୍ବତ-ଗାତ୍ରରେ କିଛ ଭୂଳା ଅନେକ ଗୁମ୍ଫାଏ ଗର୍ତ୍ତ ଥିଲା । ଭାରତବର୍ଷର ବୋଧିପ୍ରାପ୍ତ ବହୁସଂଖ୍ୟକ ଲୋକ ସେମାନଙ୍କ ଆଧ୍ୟାତ୍ମିକ ଶକ୍ତିପ୍ରଭାବରେ ଶାନ୍ତିରେ ବିଶ୍ରାମ କରିବା ସକାଶେ ଏହି ସ୍ଥାନରେ ଆଶ୍ରୟ ଗ୍ରହଣ କରୁଥିଲେ । ଯେଉଁମାନେ ଏହିଠାରେ ଇହଲୀଳା ସାଙ୍ଗ କରୁଥିଲେ, ସେମାନେ ନିର୍ବାଣ ପ୍ରାପ୍ତ ହେଉଥିଲେ ।

ଏହିଠାରେ ତିନିଜଣ ଅର୍ହତ ପର୍ବତକନ୍ଦରରେ ସମାଧିସ୍ଥ ହୋଇ ଅବସ୍ଥାନ କରୁଥିଲେ । ସେମାନଙ୍କ କେଶ ଓ ଶ୍ମଶ୍ରୁ ଦୀର୍ଘ ହେଲେ ସନ୍ନ୍ୟାସିଗଣ ସେମାନଙ୍କ ନିକଟକୁ ଯାଇ ତାହା କର୍ତ୍ତନ କରୁଥିଲେ ।

ଏହି ଦେଶରେ ମହାଯାନକ୍ତ ଅନେକ ସୂତ୍ର ଥିଲି ଓ ଏକ ଲକ୍ଷ ଶ୍ଳୋକସମ୍ବଳିତ ଅନେକ ଗ୍ରନ୍ଥ ପ୍ରଣୀତ ହୋଇଥିଲି ।

ଏହିଠାରୁ ଆଠଶତ ଲି ଦକ୍ଷିଣରେ କୁଷ୍ଟାନ୍ (ଖୋଟାନ୍) ଦେଶ । ଏହା ବାଲୁକା ଓ ପ୍ରସ୍ତରମୟ ଏକ ସମତଳ ଦେଶ; କିନ୍ତୁ ଭୂମି ଉର୍ବର ଓ କୃଷି ସକାଶେ ଉପଯୁକ୍ତ । ଏହି ଦେଶ ଅଧିବାସିଗଣ ପଶୁଲୋମରେ ଗାଲିଚା, ଉତ୍କୃଷ୍ଟ ବସ୍ତ୍ର ଓ ରେଶମ ତାଫେତା ପ୍ରସ୍ତୁତ କରନ୍ତି । ଏଠାରେ ବହୁସଂଖ୍ୟକ ଶ୍ୱେତ ଓ କୃଷ୍ଣ ଅଶ୍ୱ ଉତ୍ପନ୍ନ ହୁଅନ୍ତି । ଜଳବାୟୁ ନାତିଶୀତୋଷ୍ଣ, ସାଧାରଣ ଲୋକେ ନମ୍ର ଓ ସୁନୀତିପରାୟଣ। ସେମାନେ ଶିକ୍ଷା ଓ ସଙ୍ଗୀତାନୁରାଗୀ, ସରଳ ଓ ସତ୍ୟବାଦୀ । ଏହି ଗୁଣସମୂହରେ ସେମାନେ ତାତାରବାସୀଙ୍କଠାରୁ ପୃଥକ୍ । ସେମାନଙ୍କ ସାହିତ୍ୟ ଓ ବର୍ଣ୍ଣମାଳା ଭାରତବର୍ଷର ସାହିତ୍ୟ ଓ ବର୍ଣ୍ଣମାଳା ତୁଲ୍ୟ । ସେମାନେ ବୌଦ୍ଧ ଧର୍ମତତ୍ତ୍ୱର ଅତ୍ୟନ୍ତ ସମ୍ମାନ କରୁଥିଲେ ।

ଏଠାରେ ଏକଶତ ମଠ ଥିଲି ଓ ତନ୍ମଧ୍ୟରେ ପାଞ୍ଚ ସହସ୍ର ସନ୍ନ୍ୟାସୀ ଅବସ୍ଥାନ କରୁଥିଲେ ଏବଂ ସେମାନେ ସମସ୍ତେ ମହାଯାନ ଅଧ୍ୟୟନ କରୁଥିଲେ । ରାଜା ଭଦ୍ର, ବଦ୍ଧାନ୍, ଶୌର୍ଯ୍ୟସମ୍ପନ୍ନ, ସୁବିଦ୍ୟା ବିଶାରଦ ଓ ସାଧୁଲୋକଙ୍କ ପାଳନକର୍ତ୍ତା । ସେ ଆପଣାକୁ ବୈଶ୍ରବଣଙ୍କ ବଂଶଧର ବୋଲି କହୁଥିଲେ ।

ରାଜାଙ୍କ ପୂର୍ବପୁରୁଷ ଅଶୋକଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ । ସେ ତକ୍ଷଶିଳାରେ ବାସ କରୁଥିଲେ । ସେ ରାଜ୍ୟରୁ ନିର୍ବାସିତ ହୋଇ ହିମାଳୟ ପର୍ବତର ଉତ୍ତର ଦିଗକୁ ଗମନ କଲେ ଓ ସ୍ୱୀୟ ପାଳିତ

ପଶୁମାନଙ୍କ ସକାଶେ ତୃଣ ଓ ଜଳ ଅନ୍ୱେଷଣ କରୁଁ କରୁଁ ଏହି ସ୍ଥାନରେ ଉପନୀତ ହୋଇ ରାଜଧାନୀ ନିର୍ମାଣ କଲେ।

ରାଜା ଅପୁତ୍ରକ ଥିଲେ । କେତେକ ଦିନ ଉତ୍ତାରେ ସେ ବୈଶ୍ରବଣ ଦେବଙ୍କ ମନ୍ଦିରକୁ ପୂଜା କରିବା ସକାଶେ ଗମନ କଲେ । ପୂଜା ଉତ୍ତାରେ ଦେବତାଙ୍କ ଲଲାଟଦେଶ ବିଦୀର୍ଣ୍ଣ ହୋଇ ତନ୍ମଧ୍ୟରୁ ଏକ ବାଳକ ଶିଶୁ ବହିର୍ଗତ ହେଲା ଓ ମନ୍ଦିର ସମ୍ମୁଖସ୍ଥ ପ୍ରାଙ୍ଗଣରୁ ସ୍ତନ ଦୁଗ୍ଧ ତୁଲ୍ୟ ଅତିଶୟ ସୌରଭମୟ ପଦାର୍ଥ ନିର୍ଗତ ହେଲା । ଏହା ପାନକରି ଶିଶୁ ପୁଷ୍ଟ ହେଲା ।

ରାଜାଙ୍କ ମୃତ୍ୟୁ ଉତ୍ତାରେ ସେ ସିଂହାସନାରୋହଣ କରି ନ୍ୟାୟରେ ପ୍ରଜା ପାଳନ କଲେ ଓ ବହୁଦେଶ ଜୟ କଲେ । ଅଧୁନାତନ ରାଜା ତାହାଙ୍କ ବଂଶଧର । ତାହାଙ୍କ ପୂର୍ବପୁରୁଷ ଭୂ-ସ୍ତନ ପାନ କରି ପୁଷ୍ଟି ଲାଭ କରିଥିବା ଯୋଗୁ, ତାହାଙ୍କ ଅଧୀନ ରାଜ୍ୟ କୁଷ୍ଟାନ୍, ଅର୍ଥାତ୍ ଭୂ-ସ୍ତନ ନାମରେ ଅଭିହିତ ହେଲା ।

ହୁଏନ୍‌ସାଂ ଏହି ରାଜ୍ୟର ସୀମାନ୍ତରେ ପ୍ରବିଷ୍ଟ ହୋଇ ଭଗପା ନାମକ ନଗରରେ ଉପନୀତ ହେଲେ । ଏହି ସ୍ଥାନରେ ବୁଦ୍ଧଙ୍କର ସାତ ଫୁଟ ଉଚ୍ଚତାବିଶିଷ୍ଟ ସମାସୀନାବସ୍ଥାର ଏକ ମୂର୍ତ୍ତି ଥିଲା । ମସ୍ତକୋପରି ବହୁମୂଲ୍ୟ ଉଜ୍ଜ୍ୱଳ ରତ୍ନଖଚିତ ମୁକୁଟ ଶୋଭିତ ହେଉଥିଲା । ଏହି ମୂର୍ତ୍ତି ସମ୍ବନ୍ଧରେ ବୃଦ୍ଧ ଲୋକମାନେ କହିଲେ ଯେ, ଏହା ସର୍ବପ୍ରଥମରେ କାଶ୍ମୀରରେ ଥିଲେ ଓ ନିମନ୍ତ୍ରିତ ହୋଇ ଏହି ସ୍ଥାନକୁ ଆଗମନ କରି-ଅଛନ୍ତି । ପୂର୍ବକାଳରେ ଏହି ସ୍ଥାନରେ ଜଣେ ଆର୍ହତ ଥିଲେ ଓ ତାଙ୍କର କୁଷ୍ଠ ରୋଗଗ୍ରସ୍ତ ଜଣେ ଶିଷ୍ୟ ଥିଲେ । ତାହାଙ୍କର ଅନ୍ତିମ ସମୟରେ ସେ ଅମ୍ଳ ଶସ୍ୟଚୂର୍ଣ୍ଣନିର୍ମିତ ପିଷ୍ଟକ ଭକ୍ଷଣ କରିବାକୁ ଇଚ୍ଛା କଲେ । ଗୁରୁ ଆଧ୍ୟାତ୍ମିକ ଶକ୍ତିପ୍ରଭାବରେ ଅବଗତ ହେଲେ ଯେ, ତଦ୍ରୂପ ଶସ୍ୟଚୂର୍ଣ୍ଣ କେବଳ କୁଷ୍ଟାନରେ ମିଳିବ । ତତ୍ପରେ ସେ ଉକ୍ତ

ଶକ୍ତିପ୍ରଭାବରେ ସେଠାକୁ ଗମନ କଲେ ଓ ତାହା ଆଣି ଶିଷ୍ୟଙ୍କୁ ପ୍ରଦାନ କଲେ । ଶିଷ୍ୟ ତହିଁରେ ନିର୍ମିତ ପିଷ୍ଟକ ଭକ୍ଷଣ କରି ଆନନ୍ଦରେ ଅଭିଭୂତ ହେଲେ ଓ ଉକ୍ତ ଦେଶରେ ଜନ୍ମଗ୍ରହଣ କରିବାକୁ ଇଚ୍ଛା କଲେ । ତାହାଙ୍କ ଇଚ୍ଛା ପୂର୍ଣ୍ଣ ହେଲା ଓ ମୃତ୍ୟୁ ଉତ୍ତାରେ ସେ ରାଜ-ବଂଶରେ ଜନ୍ମଗ୍ରହଣ କଲେ ।

ରାଜସିଂହାସନରେ ଆରୂଢ ହୋଇ ସେ ତାହାଙ୍କ ତୀକ୍ଷ୍ଣ ବୁଦ୍ଧି ଓ ଶୌର୍ଯ୍ୟ ପ୍ରଭାବରେ ସନ୍ନିକଟବର୍ତ୍ତୀ କେତେକ ରାଜ୍ୟ ଆକ୍ରମଣ କରିବାକୁ ଇଚ୍ଛା କଲେ ଏବଂ ପର୍ବତ ଲଙ୍ଘନପୂର୍ବକ ତାହାଙ୍କ ପୂର୍ବ ଜନ୍ମ-ଭୂମି ଆକ୍ରମଣ କଲେ । କାଶ୍ମୀର ନରପତି ତାହାଙ୍କୁ ପ୍ରତିରୋଧ କରିବା ସକାଶେ ସୈନ୍ୟ ପ୍ରେରଣ କଲେ । ଏହା ଦେଖି ଆର୍ହତ କହିଲେ, "ବଳ ପ୍ରୟୋଗ କରିବାକୁ ଚେଷ୍ଟା କରନ୍ତୁ ନାହିଁ । ମୁଁ ନିଜେ ତାହାଙ୍କଠାକୁ ଯିବି ।" ଆର୍ହତ କୁସ୍ତାନ୍ ରାଜାଙ୍କ ନିକଟକୁ ତତ୍‌କ୍ଷଣାତ୍ ଗମନ କଲେ ଓ ମୂର୍ଦ୍ଧଜ ନରପତିଙ୍କ ଧନ ଲୋଭ ଓ ଅତ୍ୟାଚାରଜନିତ ଝିଣ ବିଷୟ ଜ୍ଞାପନ କଲେ । ତତ୍ପରେ ପୂର୍ବଜନ୍ମରେ ପରିହିତ ବସ୍ତ୍ର ତାହାଙ୍କ ସମ୍ମୁଖରେ ସ୍ଥାପନ କଲେ । ତାହା ଦର୍ଶନ କରି ମାତ୍ରକେ ରାଜା ତାହାଙ୍କ ପୂର୍ବଜନ୍ମର ଜୀବାବସ୍ଥା ସ୍ମରଣ କରି ଅତ୍ୟନ୍ତ ଲଜ୍ଜିତ ହେଲେ ଓ ଦେଶଜୟସ୍ପୃହା ପରିତ୍ୟାଗ କରି କାଶ୍ମୀର ନରପତିଙ୍କ ସହିତ ମିତ୍ରତା ସ୍ଥାପନ କଲେ ଏବଂ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ଯେଉଁ ବୁଦ୍ଧମୂର୍ତ୍ତି ତାହାଙ୍କ ପୂର୍ବଜନ୍ମରେ ସେ ପୂଜା କରୁଥିଲେ, ତାହା ତାହାଙ୍କ ସୈନ୍ୟ ସମଭିବ୍ୟାହାରରେ ଆନୀତ ହେଲା । ଯେତେବେଳେ ଏହି ସ୍ଥାନରେ ଉପନୀତ ହେଲେ, ଉକ୍ତ ମୂର୍ତ୍ତି ନିଶ୍ଚଳ ହୋଇ ରହିଲେ ଓ ପାଦ ମାତ୍ର ଅଗ୍ରସର ହେଲେ ନାହିଁ । ରାଜା ଓ ତାହାଙ୍କ ସୈନ୍ୟବର୍ଗ ବଳପୂର୍ବକ ତାହାକୁ ସ୍ଥାନାନ୍ତରିତ କରିବାକୁ ଚେଷ୍ଟା କଲେ; କିନ୍ତୁ ସେମାନଙ୍କ ଚେଷ୍ଟା ବିଫଳ ହେଲା । ନିରୁପାୟ ହୋଇ ରାଜା ମୂର୍ତ୍ତି ଉପରେ ଏକ

ମନ୍ଦିର ନିର୍ମାଣ କରାଇ ଆଚାର୍ଯ୍ୟଗଣ ଓ ସେମାନଙ୍କ ଶିଷ୍ୟବର୍ଗଙ୍କୁ ତାହାଙ୍କ ପୂଜା କରିବା ସକାଶେ ଆହ୍ୱାନ କଲେ । ମୂର୍ତ୍ତିର ମସ୍ତକୋପରି ରାଜା ତାହାଙ୍କ ବହୁ ମୂଲ୍ୟ ରତ୍ନମଣ୍ଡିତ ଶିରସ୍ତ୍ରାଣ ସ୍ଥାପନ କଲେ । ଏହା ଅଦ୍ୟାପି ତାହାଙ୍କ ମସ୍ତକରେ ଶୋଭିତ ହେଉଅଛି ଓ ତାହା ଦେଖି ଦର୍ଶକଗଣ ଆନନ୍ଦରେ ଅଭିଭୂତ ହୁଅନ୍ତି ।

ଏହି ସ୍ଥାନରେ ହୁଏନ୍‌ସାଂ ସାତଦିନ କାଳ ଅବସ୍ଥାନ କଲେ ।

## ବୁଦ୍ଧମୂର୍ତ୍ତି—ଖୋଟାନରେ ପ୍ରବେଶ

ଖୋଟାନ୍ ନରପତି ତାହାଙ୍କ ରାଜ୍ୟରେ ହୁଏନ୍‌ସାଂ ପ୍ରବିଷ୍ଟ ହେଉଥିବା ଶ୍ରବଣ କରି ସ୍ୱୟଂ ଯାଇ ତାହାଙ୍କ ସହିତ ସାକ୍ଷାତ୍ କଲେ ଓ ପର ଦିବସରେ ଯୁବରାଜଙ୍କୁ ତାହାଙ୍କ ନିକଟରେ ରଖିଦେଇ, ରାଜଧାନୀକୁ ପ୍ରତ୍ୟାଗମନ କଲେ । ଦୁଇଦିନ ଉତ୍ତାରେ ଏକ କର୍ମଚାରୀଙ୍କୁ ତାହାଙ୍କ ନିକଟକୁ ପ୍ରେରଣ କଲେ ଓ ପୁନର୍ବାର ଯାତ୍ରା କରି ୪୦ ଲି ଦୂରସ୍ଥ ଏକ ସ୍ଥାନରେ ରାତ୍ରି ଯାପନ କଲେ । ପରଦିବସରେ ବାଦ୍ୟ, ସୁଗନ୍ଧ ଦ୍ରବ୍ୟ ଓ ପୁଷ୍ପୋପହାର ଘେନି କତିପୟ ଆଚାର୍ଯ୍ୟ ଓ ଗୃହସ୍ଥ ପ୍ରଜା ସମଭିବ୍ୟାହାରରେ ମାର୍ଗରେ ତାହାଙ୍କ ସହିତ ସାକ୍ଷାତ୍ କରି, ତାହାଙ୍କୁ ରାଜଧାନୀକୁ ନିମନ୍ତ୍ରଣ କଲେ । ସେଠାରେ ପ୍ରବିଷ୍ଟ ହୋଇ ହୁଏନ୍‌ସାଂ ସର୍ବାସ୍ତିବାଦୀ ସମ୍ପ୍ରଦାୟ ଅଧିକୃତ ହୀନଯାନ ମନ୍ଦିରରେ ଅବସ୍ଥାନ କଲେ ।

## କାଶ୍ମୀରରୁ ଆଗତ ଅର୍ହତ

ରାଜଧାନୀର ଦଶ ଲି ଦକ୍ଷିଣରେ ଏକ ବୃହତ୍ ସଂଘାରାମ ଥିଲା । ତାହା ବୈରୋଚନ ଅର୍ହତଙ୍କ ଉପଲକ୍ଷରେ ଏକ ପୂର୍ବତନ ନରପତି ନିର୍ମାଣ କରାଇଥିଲେ ।

ପୂର୍ବକାଳରେ ଯେତେବେଳେ ବୌଦ୍ଧଧର୍ମତତ୍ତ୍ୱାଲୋକ ଏହି ରାଜ୍ୟରେ ପ୍ରବେଶ ଲାଭ କରି ନ ଥିଲା, ସେହି ସମୟରେ କାଶ୍ମୀରରୁ ଏକ ଆର୍ହତ ଆସି ଏକ ଅରଣ୍ୟ ମଧ୍ୟରେ ଧ୍ୟାନମଗ୍ନ ହୋଇ ଉପବିଷ୍ଟ ହେଲେ । ତାହାଙ୍କ ରୂପ ଓ ପରିଚ୍ଛଦାଦି ଦର୍ଶନରେ ଲୋକେ ଭୀତ ହେଲେ । ତାହାଙ୍କ ବିଷୟରେ ସଂବାଦ ପ୍ରାପ୍ତହୋଇ, ରାଜା ତାହାଙ୍କ ସ୍ୱୟଂ ଦର୍ଶନ କରିବା ସକାଶେ ଗମନ କଲେ । ତତ୍ପରେ ସେ ତାହାଙ୍କୁ ପ୍ରଶ୍ନ କଲେ, "ଆପଣ କେଉଁ କାରଣରୁ ଏହି ନିର୍ଜ୍ଜନ ଅରଣ୍ୟରେ ଅବସ୍ଥାନ କରୁଅଛନ୍ତି ?" ସେ ଉତ୍ତର କଲେ, "ମୁଁ ତଥାଗତଙ୍କ ଶିଷ୍ୟ । ଏହି ନିର୍ଜ୍ଜନ ସ୍ଥାନରେ ବାସ କରିବା ପାଇଁ ମୁଁ ତାଙ୍କ ଧର୍ମତତ୍ତ୍ୱଦ୍ୱାରା ଆଦିଷ୍ଟ ହୋଇଅଛି ।" ରାଜା ପ୍ରଶ୍ନ କଲେ, "ତଥାଗତ କିଏ ?" ସେ ଉତ୍ତର କଲେ, "ତଥାଗତ ବୁଦ୍ଧଙ୍କ ନାମାନ୍ତର । ପୂର୍ବକାଳରେ ସେ ରାଜା ଶୁଦ୍ଧୋଦନଙ୍କ ଜ୍ୟେଷ୍ଠପୁତ୍ର ଥିଲେ । ତାହାଙ୍କ ନାମ ସର୍ବାର୍ଥସିଦ୍ଧ ଥିଲା । ଦୁଃଖ-ସାଗରରେ ନିମଗ୍ନ ପ୍ରାଣୀମାନଙ୍କ ପ୍ରତି ତାହାଙ୍କ କୋମଳ ହୃଦୟ ଦୟାରେ ଦ୍ରବୀଭୂତ ହୋଇଥିଲା ଓ ସେ ଆଶ୍ରମ ଓ ଆଶ୍ରୟ ହୀନାବସ୍ଥାରେ ରାଜଚକ୍ରବର୍ତ୍ତୀଙ୍କ ଅଧିକୃତ ସପ୍ତୈଶ୍ୱର୍ଯ୍ୟ, ସହସ୍ର ପୁତ୍ର ଓ ଚତୁର୍ମଣ୍ଡଳାଧିପତ୍ୟ ପରିତ୍ୟାଗ କରି ତତ୍ତ୍ୱଜ୍ଞାନାନ୍ୱେଷଣାର୍ଥେ ନିର୍ଜ୍ଜନ ଅରଣ୍ୟରେ ଆଶ୍ରୟ ଗ୍ରହଣ କରିଥିଲେ ଓ କୌଣସି ଗୁରୁଙ୍କ ଉପଦେଶ ବିନା ଛଅ ବର୍ଷକାଳ କଠୋର ତପସ୍ୟାଦ୍ୱାରା ତତ୍ତ୍ୱଜ୍ଞାନ ଦର୍ଶନ କରିଥିଲେ । ସେ କୁରଙ୍ଗୋଦ୍ୟାନରେ ମଧୁର ଶିଶିର ସେଚନ କଲେ * ଓ ଗୃଧ୍ରକୂଟଚୂଳରୁ ସମୁଜ୍ଜ୍ୱଳ ମଣିରେ ମଣ୍ଡିତ କଲେ † । ଅଶୀତିବର୍ଷ ପର୍ଯ୍ୟନ୍ତ ସେ ପ୍ରାଣୀମାନଙ୍କ ମଙ୍ଗଳ ଓ ସୁଖ ବିଧାନ ସକାଶେ ସ୍ୱୀୟ ଧର୍ମମତ ପ୍ରଚାର କରି ଜୀବନ ସହ ସମ୍ପର୍କ ବିଚ୍ଛିନ୍ନପୂର୍ବକ ସେ

* ନିର୍ବାଣ ଅର୍ଥାତ୍ ମୁକ୍ତାବସ୍ଥାନାବସ୍ଥାବିଷୟରେ ଶିକ୍ଷା ପ୍ରଚାର କଲେ ।

† ସର୍ବୋଚ୍ଚ ସତ୍ୟ ପ୍ରଚାର କଲେ ।

ତାହାଙ୍କ ମୂର୍ତ୍ତି ଓ ନୀତିସମୂହ ଚିରସ୍ଥାୟୀ ସମସ୍ତ ଭୂମି ଦାନ କରି ଜୀବନର ସନ୍ଧ୍ୟାବସ୍ଥାକୁ ପ୍ରୟାଣ କରିଥିଲେ । ସେ ସମସ୍ତ ଅଧୁନାପି ବିଦ୍ୟମାନ ଅଛି । ଅଧୁନା ରାଜା ତାହାଙ୍କ ପୂର୍ବ-ଜୀବନର ମହତ୍ତ୍ୱ ଚରିତଦ୍ୱାରା ରାଜ୍ୟ ପ୍ରାପ୍ତ ହୋଇଅଛନ୍ତି; ତେଣୁ ସେ ଏହି ଧର୍ମଚକ୍ରର ଭାର ଗ୍ରହଣ କରି ଧର୍ମପରାୟଣ ଓ ମୋକ୍ଷଲିପ୍ସୁ ଲୋକଙ୍କ ମଙ୍ଗଳାର୍ଥେ ଧର୍ମନୀତିସମୂହ ପାଳନ କରିବାକୁ ସେମାନଙ୍କୁ ବାଧ୍ୟ କରିବେ; କିନ୍ତୁ ଆପଣ ମୋ କଥା ନ ଶୁଣିଲା ପରି ଏପରି ମୂକ ହୋଇ ରହିଛନ୍ତି କାହିଁକି ?”

ରାଜା ଉତ୍ତର କଲେ, “ମୋର ବହୁ ସଞ୍ଚିତ ପାପ ଯୋଗୁଁ ବୁଦ୍ଧଙ୍କ ନାମ ହୁଦ୍ଧା ମୋର କର୍ଣ୍ଣଗୋଚର ହୋଇ ନାହିଁ; କିନ୍ତୁ ଧନ୍ୟ ସେହି ପବିତ୍ରାତ୍ମା ପୁରୁଷଙ୍କ ଅଶେଷ ପୁଣ୍ୟ । ମୋର ଯତ୍କିଞ୍ଚିତ ପୁଣ୍ୟ ଅବଶିଷ୍ଟ ଥିଲା । ତଦ୍ୱାରା ମୋର ଅଶେଷ ମଙ୍ଗଳ ସାଧିତ ହୋଇଅଛି । ତାହାଙ୍କ ମହିମୂର୍ତ୍ତିକା ଓ ସଂସାରକୁ ତାହାଙ୍କ ପ୍ରଦତ୍ତ ନୀତି ପାଳନ କରିବା ସକାଶେ ମୁଁ ଅନୁମତି ଦଇ ପାରିବି କି ?”

---

## ପ୍ରଥମ ସଂଘାରାମ

ଆର୍ହତ ଉତ୍ତର କଲେ, “ଆପଣ ପ୍ରତିଜ୍ଞା ପାଳନର ଆନନ୍ଦ ଅନ୍ୱେଷଣ କରନ୍ତୁ । ସର୍ବପ୍ରଥମରେ ଆପଣ ଏକ ସଂଘାରାମ ସ୍ଥାପନ କରନ୍ତୁ । ତାହାହେଲେ ସ୍ୱର୍ଗୀୟ ଦେବତା ସ୍ୱୟଂ ଅବତୀର୍ଣ୍ଣ ହେବେ ।”

ଏହା ଶ୍ରବଣ କରି ରାଜା ପ୍ରତ୍ୟାବର୍ତ୍ତନ କଲେ ଓ ଅମାତ୍ୟ-ବର୍ଗଙ୍କ ସାହାଯ୍ୟରେ ଏକ ଉପଯୁକ୍ତ ସ୍ଥାନ ନିର୍ବାଚନ କରି, ଅଭିଳଷିତ ସଂଘାରାମର ଏକ ନକ୍ସା ପ୍ରସ୍ତୁତ କରିବା ସକାଶେ ଆର୍ହତଙ୍କୁ ଅନୁରୋଧ କଲେ । ତତ୍ପରେ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା ।

ସଂଘାରାମ ନିର୍ମାଣାନ୍ତେ ରାଜା ପୁନର୍ବାର ପ୍ରଶ୍ନ କଲେ, "କାର୍ଯ୍ୟ ଶେଷ ହେଲା ; କିନ୍ତୁ ବୁଦ୍ଧଙ୍କ ବିଗ୍ରହ କାହିଁ ?" ସେ ଉତ୍ତର କଲେ, "ରାଜା, ଅନ୍ତର୍ଦୃଷ୍ଟି ନିକ୍ଷେପ କରନ୍ତୁ । ମୁହୂର୍ତ୍ତ ମଧ୍ୟରେ ମୂର୍ତ୍ତି ଆବିର୍ଭୂତ ହେବେ ।" ଏହା ଶ୍ରବଣ କରି ରାଜା, ଅମାତ୍ୟ ଓ ପ୍ରଜାବୃନ୍ଦ ଧୂପଦାନ ଓ ପୁଷ୍ପବର୍ଷଣପୂର୍ବକ ଗଭୀର ଧ୍ୟାନମଗ୍ନ ହେଲେ । ମୁହୂର୍ତ୍ତ ମଧ୍ୟରେ ବହୁମୂଲ୍ୟ ରତ୍ନସିଂହାସନୋପରି ସମାସୀନ ବୁଦ୍ଧମୂର୍ତ୍ତି ଶୂନ୍ୟରୁ ଅବତୀର୍ଣ୍ଣ ହେଲେ । ଏହା ଦର୍ଶନ କରି ରାଜା ଆନନ୍ଦରେ ଅଭିଭୂତ ହେଲେ ଓ ମୁନିଙ୍କ ମୌଭାଗ୍ୟର ଅଶେଷ ପ୍ରଶଂସା କଲେ । ତତ୍ପରେ ଅର୍ହତଙ୍କୁ ଲୋକଙ୍କ ମଙ୍ଗଳାର୍ଥେ ଧର୍ମୋପଦେଶ ପ୍ରଚାର କରିବାକୁ ଅନୁରୋଧ କଲେ । ଲୋକଙ୍କ ସକାଶେ ସଂଘଟିତ ଏହି ସଂଘାରାମର ଉତ୍ସର୍ଗୋତ୍ସବ ଯୋଗୁଁ ଏହା ଏହି ଦେଶରେ ସର୍ବପ୍ରଥମ ଅନୁଷ୍ଠାନ ବୋଲି ପରିଚିତ ।

---

## ନଷ୍ଟ ଗ୍ରନ୍ଥାଦିର ପ୍ରତିଲିପି ସକାଶେ ପ୍ରାର୍ଥନା, ଖୋଟାନ୍‌କୁ ପ୍ରେରିତ ପତ୍ର

ଇତିପୂର୍ବେ ନଦୀ ପାର ହେବା ସମୟରେ ହୁଏନ୍‌ସାଂଙ୍କର ଅନେକ ଗ୍ରନ୍ଥ ନଦୀସ୍ରୋତରେ ବିନଷ୍ଟ ହୋଇଯାଇଥିବା ଯୋଗୁଁ ଅନ୍ୟ ପୁସ୍ତକ ସଂଗ୍ରହ କରିବା ସକାଶେ ସେ କୁଚ ଓ କାଶଗଡ଼କୁ ଲୋକ ପ୍ରେରଣ କରିଥିଲେ; କିନ୍ତୁ ସେମାନେ ବିଫଳପ୍ରୟାସ ହୋଇ ପ୍ରତ୍ୟାବୃତ୍ତ ହେଲେ । ତତ୍ପରେ ସେ ଖୋଟାନ୍ ନରପତିଙ୍କ ନିକଟକୁ କୋ-ଚ୍ୟାଂର ଏକ ଯୁବକଙ୍କ ହସ୍ତରେ ଏକ ପତ୍ର ପ୍ରଦାନ କରି ବଣିକ-ମାନଙ୍କ ପଥାନୁସରଣପୂର୍ବକ ତାହା ରାଜାଙ୍କ ନିକଟରେ ସମର୍ପଣ କରିବା ପାଇଁ ଓ ଇତିପୂର୍ବେ ଧର୍ମତତ୍ତ୍ୱାନ୍ୱେଷଣାର୍ଥେ ବ୍ରାହ୍ମଣମାନଙ୍କ ଦେଶକୁ ଯାଇଥିବା ବ୍ୟକ୍ତି ପ୍ରତ୍ୟାବର୍ତ୍ତନ କରି ଖୋଟାନ୍‌ରେ ଉପନୀତ ହୋଇ-ଥିବା ସମ୍ବାଦ ପ୍ରଦାନ କରିବା ପାଇଁ ତାହାଙ୍କୁ ଆଦେଶ କଲେ । ସେ

ପତ୍ରରେ ଲେଖିଥିଲେ,"ଶ୍ରମଣ ହୁଏନ୍‌ସାଂଙ୍କ ବାକ୍ୟ; ହୁଏନ୍‌ସାଂ ଶୁଣି-ଅଛି ଯେ, ମା-ମୁଂ, କ-ଚେନ୍ ଓ ଚିଂ-ହୁାନ୍ ଲୋକ-ଗୁରୁ ଶିକ୍ଷକ ଥିଲେ । ସୁଂ-ସିଂ ଅତ୍ୟନ୍ତ ପ୍ରତିଭାଶାଳୀ ଥିଲେ ଓ ସ୍ନେ-ସୋ-ଶି ନଦୀର ଦକ୍ଷିଣ ପାର୍ଶ୍ବସ୍ଥ ଜନପଦରେ ଅନେକ ଧର୍ମାଳୟ ସ୍ଥାପନ କରିଥିଲେ । ଏଠାରେ ଆମ୍ଭେମାନେ ସେହି ବନ୍ଦନୀୟଙ୍କ ମହାନ୍ ଚରିତ୍ର ଉପ-ଲବ୍ଧି କରୁଅଛୁ । ଯଦି ଏହି ଋଷିମାନଙ୍କ ଶିକ୍ଷା ଦ୍ୱାରା ସକାଶେ ଦୂର ଦେଶ ଯାତ୍ରା ପ୍ରଶଂସାର୍ହ, ତାହାହେଲେ ମଙ୍ଗଳକର ନିଗୂଢ ବୌଦ୍ଧଧର୍ମ ତତ୍ତ୍ୱାନୁସନ୍ଧାୟୀ ଓ ଜପିତଙ୍କ ମହାତ୍ମାମାନେ ସଂସାର ବନ୍ଧନ ଛିନ୍ନ କରିବାରେ ଅତ୍ୟନ୍ତ ସମର୍ଥ ହୋଇଅଛନ୍ତି, ଏହା କହିବା ବାହୁଲ୍ୟ ମାତ୍ର । ସେମାନଙ୍କ ପରିଶ୍ରମକୁ ଭୁଲି ଲଙ୍ଘନ କରାଯିବ କିପରି ? ପଶ୍ଚିମ ଭୂଖଣ୍ଡରେ ପୂର୍ଣ୍ଣ ଭାବରେ ଓ ପ୍ରାଚ୍ୟ ଭୂଖଣ୍ଡରେ ଅପୂର୍ଣ୍ଣ ଭାବରେ ପ୍ରଚଳିତ ବୌଦ୍ଧଧର୍ମତତ୍ତ୍ୱସମୂହ ବହୁକାଳ ହେଲା ସମ୍ୟକ୍ ଆବୃତ୍ତି କରି ଓ ବିଘ୍ନ ବିପତ୍ତିାଦ୍ୟ ପ୍ରତି ଭ୍ରୂକ୍ଷେପ ନ କରି ପ୍ରକୃତ ତତ୍ତ୍ୱଜ୍ଞାନ ଲାଭର ଉପାୟ ମୁଁ ସର୍ବଦା ଚିନ୍ତା କରୁଥିଲି । ତଦନୁସାରେ ଚେଂ-କ୍ୱାନ୍ ମୂଗର ତୃତୀୟ ବର୍ଷର ଚତୁର୍ଥ ମାସରେ (୬୩୦ ଖ୍ରୀଷ୍ଟାବ୍ଦ) ସମସ୍ତ ବାଧା-ବିଘ୍ନ ଅତିକ୍ରମ କରି ଗୋପନରେ ଭାରତବର୍ଷ ଅଭିମୁଖରେ ଯବନ ବୃଜାନ୍ ନଗରରୁ ଯାତ୍ରା କଲି ଏବଂ ସୁବିସ୍ତୀର୍ଣ୍ଣ ବାଲୁକାମୟ ମରୁଭୂମି, ଉଚ୍ଚ ତୁଷାରାଚ୍ଛନ୍ନ ପର୍ବତମାଳା, ଲୌହଦ୍ୱାର ଓ ଉତ୍ତାଳ ତରଙ୍ଗବିଶିଷ୍ଟ ସମୁଦ୍ର ଲଙ୍ଘନ କରି ରାଜଗୃହରେ ଉପନୀତ ହେଲି । ଏଥିରେ ମୁଁ ୫୦୦୦୦ଲି ପଥ ବୁଲିଲି । ଭାରତବର୍ଷର ଭିନ୍ନାଞ୍ଚଳରେ ପ୍ରଚଳିତ ସହସ୍ର ସହସ୍ର ବିଭିନ୍ନ ପ୍ରକାର ରୀତିନୀତି ବିଷୟ ପର୍ଯ୍ୟାଲୋଚନା କଲି ଓ ମୋର ଉକ୍ତ ଯାତ୍ରାରେ ସହସ୍ର ସହସ୍ର ବିପଦର ସମ୍ମୁଖୀନ ହେଲି ; ତଥାପି ଭଗବାନଙ୍କ କୃପାରୁ ମୋହର ଉଦ୍ଦେଶ୍ୟ ସାଧନ କରି ସୁସ୍ଥ ଶରୀରରେ ନିରାପଦରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଅଛି । ମୁଁ ବୁଦ୍ଧ-

କୂଟ ପର୍ବତ ଦର୍ଶନ କରିଅଛି, ବୋଧିଦ୍ରୁମ ତଳରେ ପୂଜା କରିଅଛି, ଅଦୃଷ୍ଟପୂର୍ବ ପବିତ୍ର ଚୈତ୍ୟସମୂହ ଦର୍ଶନ କରିଅଛି, ଅଶ୍ରୁତପୂର୍ବ କଥା ଶ୍ରବଣ କରିଅଛି, ଅଦ୍ଭୁତପୂର୍ବ ବସ୍ତୁମାନଙ୍କର ଆଧ୍ୟାତ୍ମିକ ବ୍ୟାପାର ଦର୍ଶନ କରିଅଛି, ଆମ୍ଭ ମହାମାନ୍ୟ ସମ୍ରାଟଙ୍କ ସଦ୍‌ଗୁଣାବଳୀ କୀର୍ତ୍ତନ କରି ତାଙ୍କ ପ୍ରତି ଉକ୍ତ ଦେଶବାସୀଙ୍କ ଗଭୀର ଶ୍ରଦ୍ଧା ଓ ସମ୍ମାନ ଆକର୍ଷଣ କରିଅଛି । ଏହି ପ୍ରକାରେ ଭିନ୍ନ ଭିନ୍ନ ରାଜ୍ୟରେ ଭ୍ରମଣ କରି ଦୀର୍ଘ ସପ୍ତଦଶ ବର୍ଷ କାଳ ଅତିବାହିତ କରିଅଛି । ପ୍ରୟାଗରୁ ଯାତ୍ରାରମ୍ଭ କରି କପିଶା ଦେଇ ସୁଂ-ଲିଂ ପର୍ବତ ଓ ପାମୀର୍ ଉପତ୍ୟକା ଲଙ୍ଘନ କରି ଖୋଟାନ୍‌ରେ ଉପନୀତ ହୋଇଅଛି । ମୋହର ହସ୍ତୀ ଜଳମଗ୍ନ ହୋଇ ପ୍ରାଣ ବିସର୍ଜନ କରିଥିବା ଯୋଗୁଁ ଭାରତବର୍ଷରୁ ଆନୀତ ଅସଂଖ୍ୟ ଗ୍ରନ୍ଥ ବହନ କରିବା ସକାଶେ ବର୍ତ୍ତମାନ ବାହନର ଅଭାବ । ତେଣୁ ମୁଁ ଏଠାରେ ଅଳ୍ପ ସମୟ ଅବସ୍ଥାନ କଲି; ତଥାପି ବାହନ ମିଳିଲା ନାହିଁ । ତେଣୁ ମୁଁ ଆପଣଙ୍କ ଦର୍ଶନ ସକାଶେ ଅବିଳମ୍ବେ ଏଠାରୁ ଯାତ୍ରା କରିବାକୁ ଇଚ୍ଛା କରି ମା-ହ୍ୱାନ୍-ଚି ନାମକ କୋ-ଚୁଂ ନିବାସୀ ଏକ ଯୁବକଙ୍କ କତିପୟ ବଣିକଙ୍କ ସମଭିବ୍ୟାହାରରେ ମୋର ଉଦ୍ଦେଶ୍ୟ-ଜ୍ଞାପକ ପତ୍ର ସମ୍ମାନ ପୁରଃସର ଆପଣଙ୍କ ହସ୍ତରେ ପ୍ରଦାନ କରିବା ସକାଶେ ପ୍ରେରଣ କଲି ।"

ତତ୍ପରେ ସେ ଖୋଟାନ୍ ଅଧିବାସୀ ଅର୍ଥୀଗଣଙ୍କ ସମକ୍ଷରେ ଯୋଗ, ଅଭିଧର୍ମ, କୋଷ ଓ ମହାଯାନ ସମ୍ପରିଗ୍ରହ ଶାସ୍ତ୍ର ଅହୋରାତ୍ର ବ୍ୟାଖ୍ୟାନ କଲେ । ରାଜା, ସନ୍ନ୍ୟାସୀ ଓ ପ୍ରଜାଗଣ ତାହାଙ୍କ ଉପଦେଶ ଶିକ୍ଷାର୍ଥୀ ହୋଇ ସହସ୍ର ସହସ୍ର ଲୋକ ତାହାଙ୍କ ଧର୍ମ ଗ୍ରହଣ କଲେ ।

ସାତ ଆଠମାସ ଅତୀତ ହେଲାରୁ ଦୂତ ରାଜାଙ୍କଠାରୁ ଏହି ମର୍ମରେ ସମ୍ବାଦ ଆଣିଲା, "ଆପଣ ଧର୍ମଗ୍ରନ୍ଥ ଅନ୍ୱେଷଣ କରିବା ସକାଶେ ଦୂରଦେଶକୁ ଯାତ୍ରାକରି ସେଠାରୁ ପ୍ରତ୍ୟାବୃତ୍ତ ହୋଇଥିବା

ସମ୍ବାଦ ଶ୍ରବଣରେ ମୁଁ ଅପରିସୀମ ଆନନ୍ଦରେ ଅଭିଭୂତ ହୋଇଅଛି । ପରସ୍ପର ସାକ୍ଷାତ୍ ଲାଭ ଉଦ୍ଦେଶ୍ୟରେ ଆପଣ ଏଠାକୁ ଶୀଘ୍ର ଆସିବା ସକାଶେ ମୁଁ ଆପଣଙ୍କୁ ଅନୁରୋଧ କରୁଅଛି । ଫାନ୍ * ଭାଷାଭିଜ୍ଞ ଓ ଧର୍ମଶାସ୍ତ୍ରଜ୍ଞ ଆଚାର୍ଯ୍ୟଗଣ ଆସି ଆପଣଙ୍କୁ ଅଭିବାଦନ କରିବେ— ଏଥିପାଇଁ ମୁଁ ସେମାନଙ୍କୁ ନିମନ୍ତ୍ରଣ କରିଅଛି । ଖୋଟାନ୍ ରାଜକାର୍ଯ୍ୟା-ଳୟରୁ ଅନ୍ୟାନ୍ୟ ସ୍ଥାନରୁ ଆପଣଙ୍କ ଆବଶ୍ୟକ ସୁଯୋଗ୍ୟ ପଥପ୍ରଦର୍ଶକ ଓ ବାହନ ଯୋଗାଇବା ସକାଶେ ମୁଁ ଆଦେଶ ପ୍ରଦାନ କରିଅଛି । ଆପଣଙ୍କୁ ବାଲୁକାମୟ ମରୁଭୂମି ମଧ୍ୟରେ ନେଇଯିବା ସକାଶେ ଲୁନ୍-ଓ୍ୱାଂର ଉଚ୍ଚପଦସ୍ଥ ରାଜକର୍ମଚାରୀମାନଙ୍କୁ ଆଦେଶ ଦେଇଅଛି ଓ ସୋ-ମୋଠାରେ ଆପଣଙ୍କ ସାକ୍ଷାତ୍ ଲାଭ ସକାଶେ ସେମାନଙ୍କୁ ପ୍ରେରଣ କରିବା ନିମିତ୍ତ ଶେନ୍-ଶେନ୍-ସରକାରଙ୍କୁ ଅନୁରୋଧ କରିଅଛି ।”

ସମ୍ମାନସହକାରେ ଏହି ପତ୍ର ପାଠକରି ହୁଏନ୍‌ସାଂ ସେହିଠାରୁ ପ୍ରସ୍ଥାନ କଲେ । ଖୋଟାନ୍ ନରପତି ତାହାଙ୍କୁ ବହୁ ଖାଦ୍ୟସାମଗ୍ରୀ ପ୍ରଦାନ କରିଥିଲେ ।

ରାଜଧାନୀରୁ ପୂର୍ବ ଦିଗରେ ତିନିଶତ ଲି ପଥ ଅତିକ୍ରମ କରି ସେ ପି-ମୋ ନଗରରେ ଉପନୀତ ହେଲେ । ଏଠାରେ ଚନ୍ଦନକାଷ୍ଠ-ନିର୍ମିତ ବୁଦ୍ଧଙ୍କ ଏକ ଦଣ୍ଡାୟମାନ ମୂର୍ତ୍ତି ଥିଲା । ଏହା କୋଡ଼ିଏ ଫୁଟ ଉଚ୍ଚ ଓ ଦେଖିବାକୁ ଅତ୍ୟନ୍ତ ରମଣୀୟ, ଗମ୍ଭୀର ଓ ମହିମାନ୍ୱିତ । ଏହି ମୂର୍ତ୍ତି ଦୈବଶକ୍ତିସମ୍ପନ୍ନ । କେହି ଯଦି କୌଣସି ଅଙ୍ଗରେ ଆଘାତପ୍ରାପ୍ତ ହୁଏ, ମୂର୍ତ୍ତିର ସେହି ଅଙ୍ଗରେ ଖଣ୍ଡିଏ ସ୍ୱର୍ଣ୍ଣପତ୍ର ସଂଲଗ୍ନ କଲେ, ତତ୍‌କ୍ଷଣାତ୍ ଆରୋଗ୍ୟ ଲାଭ କରେ । ମୂର୍ତ୍ତି ସମ୍ମୁଖରେ ଭକ୍ତିପୁରଃସର ପ୍ରାର୍ଥିତ

* ଫାନ୍‌ଭାଷା ସଂସ୍କୃତ ଭାଷାଠାରୁ ସ୍ୱତନ୍ତ୍ର,ସମ୍ଭବତଃ ପାଲି ଭାଷା । ବୌଦ୍ଧ ଗ୍ରନ୍ଥସମୂହ ଏହି ଭାଷାରେ ଲିଖିତ ହେଉଥିଲା ।

କାମନା ସର୍ବଦା ସଫଳ ହୁଏ । କଥିତ ଅଛି ଯେ, ବୁଦ୍ଧଙ୍କ ଜୀବନ-କାଳରେ କୌଶାମ୍ବୀ ନରପତି ଉଦୟନ ଏହି ମୂର୍ତ୍ତି ନିର୍ମାଣ କରାଇ-ଥିଲେ । ତାଙ୍କ ନିର୍ବାଣପ୍ରାପ୍ତି ଉତ୍ତାରେ ଉତ୍ତର ମାର୍ଗରେ ଉଡ୍ଡୀନ ହୋଇ ଆସି ତାହା ରୁଘ ( ଉର୍ଘ ) ଦେଶର ରାଜଧାନୀରେ ଅବସ୍ଥିତ ହେଲା ଓ କ୍ରମରେ ଏ ସ୍ଥାନକୁ ଆସିଲା । ଆଉ ମଧ୍ୟ କଥିତ ଅଛି ଯେ, ଯେତେବେଳେ ଶାକ୍ୟଙ୍କ ଧର୍ମ ବିନଷ୍ଟ ହେବ, ସେତେବେଳେ ଡ୍ରାଗନ୍ ପ୍ରାସାଦରେ ପ୍ରବିଷ୍ଟ ହେବ ।

ପି-ମୋ ନଗର ପରିତ୍ୟାଗପୂର୍ବକ ହୁଏନ୍‌ସାଂ ପୂର୍ବ ଦିଗରେ ଯାତ୍ରା କରି ବାଲୁକା ଓ ପ୍ରସ୍ତରମୟ ମରୁଭୂମିରେ ପ୍ରବିଷ୍ଟ ହେଲେ ଏବଂ ସେଠାରୁ ଦୁଇଶତ ଲି ପଥ ଅତିକ୍ରମ କରି ନି-ଜାଂ ନଗରରେ ଉପନୀତ ହେଲେ । ଏହାର ପୂର୍ବ ପାର୍ଶ୍ୱରେ ଜଳ ଓ ଉଦ୍ଭିଦହୀନ ଉତ୍ତପ୍ତ ବାଲୁକାରାଶି ଓ ବିଷାକ୍ତ ଜୀବ ପରିପୂର୍ଣ୍ଣ ଏକ ମରୁଭୂମି ଅଛି । ଏହି ମରୁଭୂମିରେ ପଥର ଚିହ୍ନ ମାତ୍ର ନାହିଁ । ସ୍ଥାନେ ସ୍ଥାନେ ପତିତ ମନୁଷ୍ୟ ଓ ପଶୁକଙ୍କାଳ କେବଳ ପଥିକର ପଥ-ପ୍ରଦର୍ଶକ । ମରୁଭୂମିର ଶ୍ରାନ୍ତିଜନକ ଯାତ୍ରା ଏଥିପୂର୍ବେ ବର୍ଣ୍ଣିତ ହୋଇଅଛି ।

ପୁନର୍ବାର ଏକଶତ ଲି ପଥ ଅତିକ୍ରମ କରି ହୁଏନ୍‌ସାଂ ପ୍ରାଚୀନ ତୁଖାର ରାଜ୍ୟରେ ଉପନୀତ ହେଲେ । ପୁଣି ସେଠାରୁ ଛଅଶହ ଲି ପଥ ଅତିକ୍ରମ କରି ଚେ-ମୋ-ତୋ-ନା ବା ନି-ମୋ ରାଜ୍ୟରେ ଓ ସେଠାରୁ ପୁଣି ଏକ ସହସ୍ର ଲି ଉତ୍ତର-ପୂର୍ବକୁ ଗମନ କରି ନା-ଫୋ-ପୋ ବା ଲୌ-ଲାନ୍ ଦେଶରେ ପ୍ରବିଷ୍ଟ ହେଲେ । ସେଠାରୁ ଅନେକ କୁଟିଳ ଗତିପଥ ଅବଲମ୍ବନ କରି ଚୀନ ଦେଶର ସୀମାନ୍ତରେ ଆସି ଉପନୀତ ହେଲେ । ଏହି ସ୍ଥାନରେ ବାହନ ସଂଗ୍ରହ କରି ଖୋଟାନ୍‌ରୁ ଆନୀତ ଭୃତ୍ୟ, ଅଶ୍ୱ ଓ ଉଷ୍ଟ୍ର ଆଦିଙ୍କୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ସକାଶେ ଆଦେଶ ଦେଲେ । ହୁଏନ୍‌ସାଂ ସେମାନଙ୍କୁ ପାରିଶ୍ରମିକ ପ୍ରଦାନ

କଲେ; କିନ୍ତୁ ସେମାନେ ତାହା ଗ୍ରହଣ ନ କରି ସ୍ୱଦେଶାଭିମୁଖରେ ଯାତ୍ରା କଲେ ।

---

## ଚୀନ ସମ୍ରାଟଙ୍କ ନିକଟକୁ ପତ୍ର ପ୍ରେରଣ

ସାଂ ସ୍ତେରେ ଉପନୀତ ହୋଇ ହୁଏନ୍‌ସାଂ ସମ୍ରାଟଙ୍କ ନିକଟକୁ ପତ୍ର ପ୍ରେରଣ କଲେ । ସେହି ସମୟରେ ସମ୍ରାଟ୍ ଲୋ-ୟାଂ ପ୍ରାସାଦରେ ଅବସ୍ଥାନ କରୁଥିଲେ । ପତ୍ରରୁ ତାହାଙ୍କ ପ୍ରତ୍ୟାଗମନ ବାର୍ତ୍ତା ଅବଗତ ହୋଇ ଖ୍ୟାଂ ପ୍ରଦେଶର ଶାସନକର୍ତ୍ତା ଫୋଂ-ହ୍ୱାନ୍-ଲିଂଙ୍କ ନିକଟକୁ କତିପୟ ରାଜକର୍ମଚାରୀ ପ୍ରେରଣ କରି ହୁଏନ୍‌ସାଂଙ୍କୁ ଆଣିବା ସକାଶେ ଆଦେଶ ପ୍ରେରଣ କଲେ ।

ହୁଏନ୍‌ସାଂ ବୁଝିପାରିଲେ ଯେ, ସମ୍ରାଟଙ୍କ ବିନା ଅନୁମତିରେ ଦେଶତ୍ୟାଗ କରିଥିବା ଯୋଗୁଁ ସେ ତାହାଙ୍କୁ ତିରସ୍କାର କରିବେ; ଅତଏବ ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେବା ସକାଶେ ବିଳମ୍ବ ନ କରିବା ସ୍ଥିର କଲେ । ତେଣୁ ସେହିଠାରୁ ସେ ଜଳ ପଥରେ ଯାତ୍ରା କଲେ ।

ଷିଷ୍ଟାପୁର ଅନଭିଜ୍ଞ ରାଜକର୍ମଚାରିଗଣ ତାହାଙ୍କ ଅଭ୍ୟର୍ଥନା ସକାଶେ କୌଣସି ପ୍ରକାର ଆୟୋଜନ କରି ପାରି ନ ଥିଲେ; ତଥାପି ତାହାଙ୍କ ପ୍ରତ୍ୟାଗମନ ବାର୍ତ୍ତା ଅଳ୍ପ ସମୟ ମଧ୍ୟରେ ପ୍ରଚାରିତ ହେଲା ଓ ଅସଂଖ୍ୟ ଲୋକ ସ୍ୱତଃ ପ୍ରଣୋଦିତ ହୋଇ ତାହାଙ୍କ ଅଭ୍ୟର୍ଥନା ସକାଶେ ସମବେତ ହେଲେ । ରାଜପଥ ଏଡ଼େ ଜନାକୀର୍ଣ୍ଣ ହୋଇଉଠିଲା ଯେ, ସେ ଚାଲି ପାରିଲେ ନାହିଁ । ସେ ନାଳରେ ରାତି ଯାପନ କଲେ ।

---

# ଉପସଂହାର

## ରାଜଧାନୀରେ ପ୍ରବେଶ

ନୌକାରୁ ଅବତରଣ କରି ହୁଏନ୍‌ସାଂ ରାଜକର୍ମଚାରୀଙ୍କ ସମଭି-ବ୍ୟାହାରରେ ପଶ୍ଚିମ ପ୍ରଦେଶର ରାଜଧାନୀକୁ ଗମନ କଲେ ଓ ସେଠାରେ ସେ ୬୪୫ ଖ୍ରୀଷ୍ଟାବ୍ଦର ବସନ୍ତ ଋତୁରେ ପ୍ରବିଷ୍ଟ ହେଲେ । ପର ଦିବସରେ ଭିକ୍ଷୁ ମଠାଧିବାସୀଗଣ ପତାକାହସ୍ତରେ ତାହାଙ୍କୁ ହୋଂ-ଫୁ ମଠକୁ ଘେନିଗଲେ । ଏହି ମଠରେ ସେ ଭାରତବର୍ଷରୁ ଆନୀତ ନିମ୍ନଲିଖିତ ଦ୍ରବ୍ୟ ସମର୍ପଣ କଲେ ।

୧ । ତଥାଗତଙ୍କ ଶରୀରର ଏକଶତ ମାଂସ-ଖଣ୍ଡ ।

୨ । ମଗଧ ରାଜ୍ୟସ୍ଥିତ ପ୍ରାଗ୍‌ବୋଧ ପର୍ବତଗହ୍ୱରାଭ୍ୟନ୍ତରସ୍ଥ ଛାୟାବଲମ୍ବନରେ ନିର୍ମିତ ବୁଦ୍ଧଙ୍କ ଏକ ସ୍ୱର୍ଣ୍ଣ ମୂର୍ତ୍ତି ଓ ତିନିଫୁଟ ତିନି ଇଞ୍ଚ ଉଚ୍ଚ ଏକ ପାରଦର୍ଶୀ ବେଦିକା । ଏହି ମୂର୍ତ୍ତି ବାରାଣସୀର ମୃଗଦାବୋ-ଦ୍ୟାନରେ ଧର୍ମପ୍ରଚାରନିରତ ବୁଦ୍ଧଙ୍କ ପ୍ରତିକୃତି ।

୩ । ତିନିଫୁଟ ପାଞ୍ଚଇଞ୍ଚ ଉଚ୍ଚ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଚନ୍ଦନକାଷ୍ଠ ମୂର୍ତ୍ତି । ତଥାଗତଙ୍କ ପ୍ରତ୍ୟାବର୍ତ୍ତନ ପ୍ରତୀକ୍ଷାରେ ଅବସ୍ଥିତ କୌଶାମ୍ବୀନରପତି ଉଦୟନଙ୍କ ଆଦେଶରେ ନିର୍ମିତ ଚନ୍ଦନକାଷ୍ଠ ମୂର୍ତ୍ତିର ଅନୁକରଣରେ ଏହି ମୂର୍ତ୍ତି ନିର୍ମିତ ହୋଇଥିଲା ।

୪ । ଦୁଇଫୁଟ ନଅଇଞ୍ଚ ଉଚ୍ଚ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ମୂର୍ତ୍ତି । ସ୍ୱର୍ଗଦେଶରୁ କପିତ୍ଥ ଦେଶକୁ ରତ୍ନ ସୋପାନରେ ଅବତୀର୍ଣ୍ଣ ମୂର୍ତ୍ତି ଅନୁକରଣରେ ଏହି ମୂର୍ତ୍ତି ନିର୍ମିତ ହୋଇଥିଲା ।

୫ । ମଗଧ ରାଜ୍ୟସ୍ଥିତ ଗୃଧ୍ରକୂଟ ପର୍ବତରେ ସଦ୍ଧର୍ମ ପୁଣ୍ଡରୀକ ଓ ଅନ୍ୟାନ୍ୟ ଶାସ୍ତ୍ର ବ୍ୟାଖ୍ୟାନରେ ନିରତ ବୁଦ୍ଧଙ୍କ ପ୍ରତିକୃତି ଅନୁକରଣରେ

ନିର୍ମିତ ସ୍ୱର୍ଣ୍ଣପୃଷ୍ଠ ଉଚ୍ଚ ସ୍ୱଚ୍ଛ କାଚ ତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଏକ ରୌପ୍ୟ ମୂର୍ତ୍ତି ।

୬ । ବଣାଲ୍ ଡ୍ରାଗନ୍ ( ସର୍ପ ) ଦଳନକାଳୀନ ନଗରହାର ରାଜ୍ୟରେ ପତିତ ଛାୟାମୂର୍ତ୍ତି ଅବଲମ୍ବନରେ ନିର୍ମିତ ଚନ୍ଦନପୃଷ୍ଠ ପାଞ୍ଚଇଞ୍ଚ ଉଚ୍ଚ ସ୍ୱଚ୍ଛ କାଚ ତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଏକ ମୂର୍ତ୍ତି ।

୭ । ବୈଶାଳୀ ନଗରରେ ଦୀକ୍ଷାଦାନରତ ବୁଦ୍ଧଙ୍କ ପ୍ରତିକୃତି ଅନୁକରଣରେ ନିର୍ମିତ ଏକ ପୃଷ୍ଠ ତିନଇଞ୍ଚ ଉଚ୍ଚ ସ୍ୱଚ୍ଛ କାଚ ତୁଲ୍ୟ ବେଦିକା ଉପରେ ସ୍ଥାପିତ ବୁଦ୍ଧଙ୍କ ଚନ୍ଦନକାଷ୍ଠ ମୂର୍ତ୍ତି ।

ହୁଏନ୍‌ସାଂ ଭାରତବର୍ଷରୁ ମହାଯାନବିଷୟକ ବହୁସଂଖ୍ୟକ ଗ୍ରନ୍ଥ ୨୨୪ ଖଣ୍ଡ ସୂତ୍ର, ୧୯୨ ଖଣ୍ଡ ଶାସ୍ତ୍ର, ସୂତ୍ର, ବିନୟ ଓ ଶାସ୍ତ୍ରସମ୍ବଳିତ ସ୍ଥବିର ମତବିଷୟକ ୧୫ ଖଣ୍ଡ ଗ୍ରନ୍ଥ, ସମ୍ମତୀୟ ବିଷୟକ ୧୫ ଖଣ୍ଡ, ମହୀଶାସକ ବିଷୟକ ୨୨ ଖଣ୍ଡ, ସର୍ବାସ୍ତିବାଦୀ ମତ ବିଷୟକ ୬୭ ଖଣ୍ଡ, କାଶ୍ୟପୀୟ ମତବିଷୟକ ୧୭ ଖଣ୍ଡ, ଧର୍ମଗୁପ୍ତମତ ବିଷୟକ ୪୨ ଖଣ୍ଡ, ହେତୁ ବିଦ୍ୟାଶାସ୍ତ୍ର ୩୬ ଖଣ୍ଡ, ଶବ୍ଦବିଦ୍ୟା ଶାସ୍ତ୍ର ୧୩ ଖଣ୍ଡ — ଏପରି ସର୍ବ-ମୋଟ ୬୫୭ ଖଣ୍ଡ ଗ୍ରନ୍ଥ ୨୦ ଗୋଟି ଅଶ୍ୱପୃଷ୍ଠରେ ଆଣିଥିଲେ

ସମ୍ରାଟ ଲୋ-ୟାଂରେ ଅବସ୍ଥାନ କରୁଥିବା ଯୋଗୁଁ ପଶ୍ଚିମାଞ୍ଚଳର ରାଜଧାନୀରେ ଅବସ୍ଥିତ ପ୍ରଧାନ ରାଜପୁରୁଷଗଣଙ୍କ ସହିତ ସାକ୍ଷାତ୍ କରି ଉତ୍ତାରେ ହୁଏନ୍‌ସାଂ ଲୋ-ୟାଂକୁ ଯାତ୍ରା କରି ସେଠାରେ ସମ୍ରାଟଙ୍କ ସହିତ ସାକ୍ଷାତ୍ କଲେ। ସମ୍ରାଟ୍ ରାଜପ୍ରାସାଦରେ ତାହାଙ୍କର ଯଥାବିଧି ଅଭ୍ୟର୍ଥନା କଲେ । ସମ୍ରାଟଙ୍କ ସମ୍ମୁଖରେ ଉପବିଷ୍ଟ ହେଲାରୁ ସମ୍ରାଟ୍ ତାହାଙ୍କ ବିନାନୁମତିରେ ଗୃହ ତ୍ୟାଗର କାରଣ ପଚାରିଲେ । ସେ ଉତ୍ତର କଲେ ଯେ, ତାହାଙ୍କ ଯାତ୍ରା ପୂର୍ବରୁ ସେ ତିନିବାର ଅନୁମତି ପ୍ରାର୍ଥନା କରିଥିଲେ; କିନ୍ତୁ ଉତ୍ତର ପ୍ରାପ୍ତ ନ ହେବାରୁ ତାହାଙ୍କ

ପ୍ରବଳ ଇଚ୍ଛା ଦମନ କରି ନ ପାରି ତାହାଙ୍କ ଅନୁମତି ଗ୍ରହଣ ନ କରି ଦେଶ ତ୍ୟାଗ କରିଥିଲେ ।

---

## ସଂସ୍କୃତ ଗ୍ରନ୍ଥସମୂହର ଅନୁବାଦ ଆରମ୍ଭ

ଏହା ଉତ୍ତାରେ ସମ୍ରାଟ୍ ଓ ହୁଏନ୍‌ସାଂ ବହୁ ସମୟବ୍ୟାପୀ କଥୋପକଥନରେ ପ୍ରବୃତ୍ତ ହେଲେ । ସମ୍ରାଟ୍ ତାହାଙ୍କୁ ବ୍ରହ୍ମଚର୍ଯ୍ୟାଶ୍ରମ ଗ୍ରହଣ କରିବା ସକାଶେ ଉପଦେଶ ଦେଲେ; କିନ୍ତୁ ତହିଁରେ ସେ ଅସମ୍ମତ ହୋଇ ସି-ଗାନ୍-ଫୁ ପ୍ରଦେଶସ୍ଥ ହଂ-ଫୁ ମଠରେ ଯାଇ ଅବସ୍ଥାନ କଲେ ଓ ଭାରତବର୍ଷରୁ ଆନୀତ ଗ୍ରନ୍ଥସମୂହର ଅନୁବାଦ କାର୍ଯ୍ୟ ଆରମ୍ଭ କଲେ । ୬୪୭ ଖ୍ରୀଷ୍ଟାବ୍ଦର ଶେଷରେ ସେ ବୋଧିସତ୍ତ୍ୱ ପିଟକ ସୂତ୍ର, ବୁଦ୍ଧଭୂମି ସୂତ୍ର, ଷଟ୍‌ମୁଖୀ ଧାରଣୀ ଓ ଅନ୍ୟାନ୍ୟ ଗ୍ରନ୍ଥର ଅନୁବାଦ ସମାପ୍ତ କଲେ । ୬୪୮ ଖ୍ରୀଷ୍ଟାବ୍ଦର ଶେଷରେ ସେ ସର୍ବସୁଦ୍ଧା ୫୮ ଖଣ୍ଡ ଗ୍ରନ୍ଥର ଅନୁବାଦ ସମାପ୍ତ କରିଥିଲେ । ତନ୍ମଧ୍ୟରୁ ସି-ୟୁ-କୀ ଗ୍ରନ୍ଥ ସମ୍ରାଟଙ୍କର ବିଶେଷ ଆଜ୍ଞାନୁଯାୟୀ ଅନୂଦିତ ହୋଇଥିଲା ।

୬୪୯ ଖ୍ରୀଷ୍ଟାବ୍ଦରେ ସମ୍ରାଟ୍ ହୁଏନ୍‌ସାଂଙ୍କୁ ସୀ-ଇନ୍ ମଠରେ ଅବସ୍ଥାନ କରାଇଲେ । ସେ ଏହି ମଠରେ ତାହାଙ୍କ ମୃତ୍ୟୁଦିବସ ପର୍ଯ୍ୟନ୍ତ ଅବସ୍ଥାନ କରି ଗ୍ରନ୍ଥାନୁବାଦ କାର୍ଯ୍ୟରେ ପ୍ରବୃତ୍ତ ହୋଇ ରହିଲେ ।

୬୫୦ ଖ୍ରୀଷ୍ଟାବ୍ଦରେ ସମ୍ରାଟ୍ ତୈ-ସୁଂ ମାନବଲୀଳା ସମ୍ବରଣ କଲେ ଓ କାଓ-ସୁଂ ଚୀନ ସିଂହାସନରେ ଆରୂଢ଼ ହେଲେ । ଏହି ସମୟରୁ ହୁଏନ୍‌ସାଂ ଗ୍ରନ୍ଥସମୂହର ଅନୁବାଦ କାର୍ଯ୍ୟରେ ଅନବରତ ନିୟୋଜିତ ହୋଇ ରହିଲେ । ସେ ଅତି ପ୍ରତ୍ୟୁଷରେ ଗାତ୍ରୋତ୍ଥାନ କରି ଆହାରାଦି ସମାପନାନ୍ତେ ଧର୍ମଶାସ୍ତ୍ର ବ୍ୟାଖ୍ୟାନରେ ପ୍ରତ୍ୟହ

ବୃହଦ୍‌ଘଣ୍ଟାକାଳ ଅତିବାହିତ କରୁଥିଲେ । ପୁଣି ମଠର ଭାର ତାହାଙ୍କ ଉପରେ ନ୍ୟସ୍ତ ଥିବା ଯୋଗୁଁ ସେ ତହିଁରେ ବାସକରୁଥିବା ସନ୍ନ୍ୟାସି-ଗଣଙ୍କ ଆଚରଣ ଓ କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କରୁଥିଲେ ।

ପ୍ରତ୍ୟହ ଶତାଧିକ ସନ୍ନ୍ୟାସୀ ତାହାଙ୍କଠାରୁ ଶାସ୍ତ୍ର ବ୍ୟାଖ୍ୟାନ ଶ୍ରବଣ କରୁଥିଲେ । ନାନାବିଧ କାର୍ଯ୍ୟରେ ଲିପ୍ତ ଥିଲେ ହେଁ ସେ ସର୍ବଦା ଅଭିନବେଶ ଓ ଅଦମ୍ୟ ଶକ୍ତିସହକାରେ ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିଲେ । ସେ ବିଶେଷତଃ ବିଭିନ୍ନ ଧର୍ମମତ ଓ ଭାରତ-ବର୍ଷର ପଣ୍ଡିତମାନଙ୍କ ବିଷୟରେ କଥୋପକଥନ କରୁଥିଲେ । ରାଜ-ପୁରୁଷ ଓ ଅମାତ୍ୟଗଣ ତାହାଙ୍କ ଧର୍ମଶାସ୍ତ୍ରବ୍ୟାଖ୍ୟାନ ଓ କଥୋପ-କଥନରେ ଏତେ ପ୍ରୀତ ହେଉଥିଲେ ଯେ, ସେମାନେ ତାହାଙ୍କ ଧୀଶକ୍ତି ଓ ପାଣ୍ଡିତ୍ୟର ଅତ୍ୟନ୍ତ ସମ୍ମାନ ଓ ପ୍ରଶଂସା କରୁଥିଲେ ।

୬୫୨ ଖ୍ରୀଷ୍ଟାବ୍ଦରେ ହୁଏନ୍‌ସାଂ [illegible]ଂ-ଫୁ ମଠର ଦକ୍ଷିଣ ଦ୍ୱାରରେ ଏକ ମନ୍ଦିର ନିର୍ମାଣ କରାଇ ତହିଁରେ ତାହାଙ୍କ ଗ୍ରନ୍ଥ ଓ ମୂର୍ତ୍ତିସମୂହ ରଖିଦେଲେ । ଏହି ମନ୍ଦିର ୧୮୦ ଫୁଟ ଉଚ୍ଚ । ଏହା ଭାରତବର୍ଷୀୟ ମନ୍ଦିରର ଆଦର୍ଶରେ ନିର୍ମିତ ହୋଇଥିଲା ଓ ତହିଁରେ ଗମ୍ବୁଜାଚ୍ଛବିଶିଷ୍ଟ ପାଞ୍ଚଗୋଟି ମଞ୍ଚ ଥିଲା । ଦକ୍ଷିଣ ପାର୍ଶ୍ୱସ୍ଥ ସର୍ବୋଚ୍ଚ ମଞ୍ଚ ମଧ୍ୟରେ ଏକ କକ୍ଷ ନିର୍ମିତ ହୋଇଥିଲା ଓ ତନ୍ମଧ୍ୟରେ ହୁଏନ୍‌ସାଂଙ୍କ ଅନୂଦିତ ପ୍ରତ୍ୟେକ ଗ୍ରନ୍ଥରେ ସନ୍ନିବିଷ୍ଟ ପୂର୍ବତନ ସମ୍ରାଟ୍ ଏବଂ ଯୁବରାଜଙ୍କ ଲିଖିତ ଭୂମିକାର ପ୍ରତିଲିପି ରକ୍ଷିତ ହୋଇଥିଲା ।

୬୫୦ ଖ୍ରୀଷ୍ଟାବ୍ଦରେ ମଧ୍ୟ-ଭାରତବର୍ଷସ୍ଥ ମହାବୋଧି ମନ୍ଦିରରୁ ପ୍ରତିନିଧି ପ୍ରେରିତ ହୋଇ ହୁଏନ୍‌ସାଂଙ୍କ ସାକ୍ଷାତ୍ କଲେ ଓ ତାହାଙ୍କୁ ଉକ୍ତ ଦେଶ ଅଧିବାସୀଙ୍କ ସମ୍ମାନ ଓ ଭକ୍ତି ଜ୍ଞାପନ କଲେ । ହୁଏନ୍‌ସାଂ ସେମାନଙ୍କ ପ୍ରଦର୍ଶିତ ସମ୍ମାନର ଯଥାବିଧି ଉତ୍ତର ପ୍ରଦାନପୂର୍ବକ ସିନ୍ଧୁନଦୀ ପାରହେବା ସମୟରେ ଜଳରେ ବିନଷ୍ଟ ହୋଇଥିବା ଗ୍ରନ୍ଥ-ସମୂହର ଏକ ଏକ ପ୍ରତିଲିପି ଭାରତବର୍ଷରୁ ପ୍ରେରଣ କରିବା ସକାଶେ ଅନୁରୋଧ କଲେ ।

---

## ସି-ମିଂ ମଠରେ ଅବସ୍ଥାନ

୬୫୦ ଓ ୬୫୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ହୁଏନ୍‌ସାଂ ତାହାଙ୍କ ଗ୍ରନ୍ଥସମୂହର ଅନୁବାଦ କାର୍ଯ୍ୟରେ ନିରତ ହୋଇ ରହିଥିଲେ । ଭାରତବର୍ଷରେ ପର୍ବତସମୂହ ଲଙ୍ଘନ କରିବାରେ ସେ ଏକପ୍ରକାର ରୋଗଗ୍ରସ୍ତ ହୋଇପଡ଼ିଥିଲେ । ସେହି ରୋଗ ବର୍ତ୍ତମାନ ତାହାଙ୍କୁ ବିବ୍ରତ କରୁଥିଲା । କିନ୍ତୁ ରାଜଦରବାରରୁ ପ୍ରେରିତ ଚିକିତ୍ସକଙ୍କ ଚିକିତ୍ସାରେ ସେ କିଞ୍ଚିତ୍ ଆରୋଗ୍ୟ ଲାଭ କଲେ । ୬୫୮ ଖ୍ରୀଷ୍ଟାବ୍ଦରେ ସେ ସମ୍ରାଟଙ୍କ ପାରିଷଦ୍‌ବର୍ଗଙ୍କ ସହିତ ଲୋ-ୟାଂରୁ ପଶ୍ଚିମ ପ୍ରଦେଶର ରାଜଧାନୀକୁ ପ୍ରତ୍ୟାବୃତ୍ତ ହେଲେ ଓ ନବନିର୍ମିତ ସି-ମିଂ ନାମକ ମନ୍ଦିରରେ ଅବସ୍ଥାନ କଲେ । ତାହାଙ୍କ ବୟସ କ୍ରମେ ବୃଦ୍ଧି ହେଉଥିବା ଯୋଗୁଁ କାଳେ ତାହାଙ୍କ ଜୀବଦ୍ଦଶାରେ ପ୍ରଜ୍ଞାପାରମିତ ଶାସ୍ତ୍ରସମୂହର ଅନୁବାଦ ସମାପ୍ତ କରି ପାରିବେ ନାହିଁ, ଏଠାରେ ଅବସ୍ଥାନ କାଳରେ ଏହି ଚିନ୍ତା ତାହାଙ୍କୁ ବିବ୍ରତ କରୁଥିଲା । ଏହି କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ସେ ନିର୍ଜ୍ଜନରେ ଓ ଶାନ୍ତିରେ ଅନୁବାଦ କାର୍ଯ୍ୟ ସମ୍ପାଦନ କରିବା ନିମିତ୍ତ ୟୁ-ଫା ( ରତ୍ନପୁଷ୍ପ ) ପ୍ରାସାଦରେ ଅବସ୍ଥାନ କରିବା ସକାଶେ ସମ୍ରାଟଙ୍କ ଅନୁମତି ପ୍ରାର୍ଥନା କଲେ । ସମ୍ରାଟଙ୍କ ଆଦେଶରେ ସେ ୬୫୯ ଖ୍ରୀଷ୍ଟାବ୍ଦରେ ଏହି ପ୍ରାସାଦକୁ ଗମନ କରି ୬୬୦ ଖ୍ରୀଷ୍ଟାବ୍ଦରେ ନୂତନ ଅନୁବାଦ ଆରମ୍ଭ କଲେ । ମହାପ୍ରଜ୍ଞାପାରମିତ ସୂତ୍ରର ଭାରତୀୟ ପ୍ରତିଲିପିରେ ଦୁଇଲକ୍ଷ ଶ୍ଳୋକ ସନ୍ନିବେଶିତ ହୋଇଥିଲା । ସେ ଏହି ଗ୍ରନ୍ଥର ସଂକ୍ଷିପ୍ତ ଅନୁବାଦ ପ୍ରସ୍ତୁତ କରିବା ପାଇଁ ଇଚ୍ଛା କଲେ; କିନ୍ତୁ ତହିଁରୁ ବିରତ ହେବା ସକାଶେ ସ୍ୱପ୍ନାଦେଶ ପ୍ରାପ୍ତ ହେଲେ । ସେ ଭାରତବର୍ଷରୁ ଏହି ଗ୍ରନ୍ଥର ଦୁଇ ଗୋଟି ପ୍ରତିଲିପି ସଂଗ୍ରହ କରି ଆଣିଥିଲେ ଓ ଉଭୟ ପ୍ରତିଲିପି ପୁଙ୍ଖାନୁପୁଙ୍ଖରୂପେ ତୁଳନାପୂର୍ବକ ଏକ ସଂଶୋଧିତ ପାଣ୍ଡୁଲିପି ପ୍ରସ୍ତୁତ କରି ତାହାର ଅନୁବାଦ କଲେ ।

---

## ସ୍ୱର୍ଗାରୋହଣ, ପଶ୍ଚିମ ରାଜଧାନୀରେ ସମାଧି — ଦେହାବଶେଷର ସ୍ଥାନାନ୍ତର

ଏହି ସମୟରେ ତାହାଙ୍କ ବୟସ ୬୨ ବର୍ଷ ହୋଇଥିଲା । ତାହାଙ୍କ ଅନ୍ତିମ ଦିବସ ନିକଟବର୍ତ୍ତୀ ହୋଇଆସୁଥିବା ମନେ କରି, ସେ ତାହାଙ୍କ ମୃତ୍ୟୁ ପୂର୍ବରୁ ସମସ୍ତ କାର୍ଯ୍ୟ ସମ୍ପନ୍ନ କରିବା ଉଦ୍ଦେଶ୍ୟରେ ଅବିଶ୍ରାନ୍ତ ଭାବରେ ପରିଶ୍ରମ କରିବାକୁ ଲାଗିଲେ । ତାହାଙ୍କ ସମସ୍ତ କାର୍ଯ୍ୟ ଲୁଂ-ସୋ ବର୍ଷର ଦଶମ ମାସରେ ସମାପ୍ତ ହେଲା (୬୬୧ ଖ୍ରୀ:) । ମହାପ୍ରଜ୍ଞା ପାରମିତା ସୂତ୍ର ୧୦୨ ଖଣ୍ଡ ଓ ୬୦୦ ଅଧ୍ୟାୟରେ ବିଭକ୍ତ । ସେ ରତ୍ନକୂଟ ସୂତ୍ର ଅନୁବାଦ କରିବାକୁ ଅସମ୍ମତ ହେଲେ ଓ ତାହାଙ୍କ ଅନ୍ତିମ ଦିବସ ଅପେକ୍ଷାରେ ଅବସ୍ଥାନ କରିବାକୁ ଲାଗିଲେ । ସେ ୭୪ ଖଣ୍ଡ ଗ୍ରନ୍ଥର ଅନୁବାଦ ୧୩୩୫ ଅଧ୍ୟାୟରେ ସମାପ୍ତ କରିଥିଲେ । ସେ ସ୍ୱହସ୍ତରେ ଅସଂଖ୍ୟ ଚିତ୍ର ଅଙ୍କନ କରିଥିଲେ ଓ ବହୁସଂଖ୍ୟକ ସୂତ୍ରର ପ୍ରତିଳିପି ପ୍ରସ୍ତୁତ କରିଥିଲେ । ଏହି ସମସ୍ତ ଗ୍ରନ୍ଥପଠନ ସମାପ୍ତ ହେଲାରୁ ସେ ଚକ୍ଷୁଦ୍ୱୟ ମୁଦ୍ରିତ କରି ନିଶ୍ଚଳ ଭାବରେ ପଡିରହିଲେ । ବର୍ତ୍ତମାନ ମୈତ୍ରେୟଙ୍କ ସ୍ତୁତି ଶ୍ଲୋକ ଆବୃତ୍ତି କରୁ କରୁ * କ୍ରମେ ତାହାଙ୍କ ଶରୀର ଅବସନ୍ନ ହେଲା ଓ ପରିଶେଷରେ ସେ ୬୬୪ ଖ୍ରୀଷ୍ଟାବ୍ଦର ଦଶମ ମାସର ତ୍ରୟୋଦଶ ଦିବସରେ ସ୍ୱର୍ଗାରୋହଣ କଲେ ।

ପଶ୍ଚିମ ପ୍ରଦେଶର ରାଜଧାନୀରେ ହୁଏନ୍‌ସାଂଙ୍କ ନଶ୍ୱର ଦେହ ରକ୍ଷିତ ହେଲା; କିନ୍ତୁ ୬୬୯ ଖ୍ରୀ:ରେ ସମ୍ରାଟଙ୍କ ଆଦେଶରେ ଫାନ୍-ଚୁନ୍ ଉପତ୍ୟକାର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଏକ ସ୍ଥାନକୁ ତାହା ସ୍ଥାନାନ୍ତରିତ ହେଲା ଓ ତଦୁପରି ଏକ ସ୍ମାରକ ସ୍ତମ୍ଭ ନିର୍ମିତ ହେଲା ।

---

* ପ୍ରେମାବତାର ମୈତ୍ରେୟୀଙ୍କୁ ଦର୍ଶନ କରି ତୁଷିତ ସ୍ୱର୍ଗରେ ତାହାଙ୍କ ସହିତ ଅବସ୍ଥାନ କରିବା ହୁଏନ୍‌ସାଂଙ୍କର ପ୍ରବଳ ବାସନା ଥିଲା ।

# ପରିଶିଷ୍ଟ

## ଅଫଗାନସ୍ଥାନଠୁ ଭାରତବର୍ଷ ମଧ୍ୟସ୍ଥ ସ୍ଥାନସମୂହ

ପୃ: ୮୦, ୨୬୫—ଲାନ୍-ପୋ (ଲଘାନ); ଏହାର ସଂସ୍କୃତ ନାମ ଲମ୍ପକ । ଏହା କାବୁଲ ନଦୀର ଉତ୍ତର ତୀରରେ ଅବସ୍ଥିତ ଏକ କ୍ଷୁଦ୍ର ରାଜ୍ୟ । ପୂର୍ବ ଓ ପଶ୍ଚିମ ପାର୍ଶ୍ୱରେ ଦୁଇଗୋଟି ନଦୀ ପ୍ରବାହିତ ଓ ଦକ୍ଷିଣ ପାର୍ଶ୍ୱରେ ତୁଷାରାବୃତ ପର୍ବତ ଦଣ୍ଡାୟମାନ । ଏହାର ଆୟତନ ପ୍ରାୟ ୧୬୦ ବର୍ଗମାଇଲ ଥିଲା । ପୂର୍ବକାଳରେ ଏହା ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । ସପ୍ତମ ଶତାବ୍ଦୀରେ ରାଜବଂଶ ଲୁପ୍ତ ହେଲା ଓ ଏହା କପିଶାର ଅଧୀନ ହେଲା ।

ପୃ: ୮୧—ନ-ଗୀ-ଲୋ-ହୋ (ନଗରହାର); ଆଧୁନିକ ଜଲାଲାବାଦ ନିକଟବର୍ତ୍ତୀ ସ୍ଥାନ । ପୂର୍ବକାଳରେ ଏହାର ଦୈର୍ଘ୍ୟ ୧୦୦ ମାଇଲ ଓ ପ୍ରସ୍ଥ ୪୨ ମାଇଲ ଥିଲା । ଏହାର ଉତ୍ତରରେ କାବୁଲ ନଦୀ, ଦକ୍ଷିଣରେ ସଫେଦ୍ କୋହ ନାମକ ତୁଷାରାବୃତ ପର୍ବତ, ପୂର୍ବରେ ଖାଇବର ଓ ପଶ୍ଚିମରେ ଜଗଦାଲକ ଗିରିସଙ୍କଟ ଅବସ୍ଥିତ । ଜଲାଲାବାଦଠାରୁ ଦୁଇମାଇଲ ଦୂରରେ ଅବସ୍ଥିତ ବର୍ତ୍ତମାନ ବେଗ୍ରାମ-ଠାରେ ଏହାର ରାଜଧାନୀ ଥିଲା । ପ୍ରବାଦ ଅଛି ଯେ, ଏଠାରେ ବୁଦ୍ଧଙ୍କ ମସ୍ତକର ଅସ୍ଥି ରକ୍ଷିତ ହୋଇଥିଲା ଓ ତଦୁପରି ଏକ ସ୍ତୂପ ନିର୍ମିତ ହୋଇଥିଲା ଏବଂ ଚତୁର୍ଦ୍ଦିଗରେ ଗୁମ୍ଫାମାନଙ୍କରେ ବୌଦ୍ଧସନ୍ନ୍ୟାସୀମାନେ ରହୁଥିଲେ । ପୂର୍ବକାଳରେ ଏହା ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା, ପରେ ଏହା ଗଜନୀ ଓ କାବୁଲର ଅନ୍ତର୍ଗତ ହେଲା ।

ପୃ: ୮୮—କ୍ୟେନ୍-ତୋ-ଲୋ (ଗାନ୍ଧାର); ପୋ-ଲୁ-ଶା-ପୋ-ଲୋ (ପୁରୁଷପୁର—ପେଶାୱାର)। ଗାନ୍ଧାର ସିନ୍ଧୁ ନଦର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ଦେଶ । ପୂର୍ବରେ ଏହାର ରାଜଧାନୀ ପୁରୁଷପୁରରେ (ଆଧୁନିକ ପେଶାୱାର) ଥିଲା । ଆବୁଲ ଫଜଲଙ୍କ ପ୍ରଣୀତ ଗ୍ରନ୍ଥରେ ଏହାର ନାମ ପରଶାୱାର । ଏହାର ଉତ୍ତରରେ ସ୍ୱାତ୍ ଓ ବୁନୀର ନାମକ ଭୂଖଣ୍ଡ ପର୍ବତ, ଦକ୍ଷିଣରେ କାଲବାଘ ପର୍ବତ, ପୂର୍ବରେ ସିନ୍ଧୁ ନଦ ଓ ପଶ୍ଚିମରେ ଲଂଘାନ ଓ ଜଲାଲାବାଦ । ଏହି ଚତୁଃସୀମା ମଧ୍ୟରେ ବୌଦ୍ଧମାନଙ୍କ ପବିତ୍ର ସ୍ଥାନ ଥିଲା ।

ପୃ: ୮୮,୨୫୪—ସିଂ-ତୁ (ସିନ୍ଧୁ ନଦ) ।

ପୃ: ୮୯—ପୋ-ଷି-କି-ଲୋ-ଫା-ଟି (ପୁଷ୍କଲାବତୀ) । ରାମଚନ୍ଦ୍ରଙ୍କ କନିଷ୍ଠ ଭ୍ରାତା ଭରତଙ୍କ ପୁତ୍ର ପୁଷ୍କରଙ୍କ ନାମାନୁସାରେ ଏହାର ନାମକରଣ ହୋଇଅଛି । ଏହା ଗାନ୍ଧାରର ପ୍ରାଚୀନ ରାଜଧାନୀ । ଅଲେକଜାଣ୍ଡରଙ୍କ ଅଭିଯାନ ସମୟରେ ସୁଦ୍ଧା ଏହା ଗାନ୍ଧାରର ରାଜଧାନୀ ଥିଲା । ଏହା ପେଶାୱାରର ଉତ୍ତରକୁ ସିନ୍ଧୁନଦର ଅଳ୍ପ ଦୂରରେ ଅବସ୍ଥିତ ଥିଲା ।

ପୃ: ୯୦,୨୫୫—ଉ-ଠ-କ୍ୟା-ହାଂ-ଚୁ—(ଉଠଖଣ୍ଡ ବା ଉଦଖଣ୍ଡ), ଆଧୁନିକ ଓହିନ୍ଦ୍ । ଆଟକଠାରୁ ୧୬ ମାଇଲ୍ ଦୂରରେ ସିନ୍ଧୁ ନଦର ଉତ୍ତର କୂଳରେ ଅବସ୍ଥିତ । ଏହା ଏକ ସମୟରେ ଗାନ୍ଧାରର ରାଜଧାନୀ ଥିଲା । ଏହି ସମୟରେ ଗାନ୍ଧାରର ରାଜାମାନେ ବ୍ରାହ୍ମଣ ଥିଲେ । ବୌଦ୍ଧ ନରପତି କନିଷ୍କଙ୍କ ଏକ ବଂଶଧର ରାଜାଙ୍କୁ ତାଙ୍କ ବ୍ରାହ୍ମଣମନ୍ତ୍ରୀ ସିଂହାସନଚ୍ୟୁତ କରି ରାଜ୍ୟାଧିକାର କଲେ ଓ କାବୁଲର ବ୍ରାହ୍ମଣସାହି ବଂଶ ସଂସ୍ଥାପନ କଲେ । ୧୬୦୭ ଖ୍ରୀଷ୍ଟାବ୍ଦରେ ଗଜନୀର ମହମୁଦ୍ ସେହି ବଂଶର ଉଚ୍ଛେଦ ସାଧନ କଲେ ।

ପୃ: ୯୦—ଉ-ଚ୍ୟଂ-ନ (ଉଦ୍ୟାନ) । କାଶ୍ମୀରର ଉପତ୍ୟକା ମଧ୍ୟବର୍ତ୍ତୀ ଭୂଖଣ୍ଡ । ପୂର୍ବରେ ଏହାର ଆନୁମାନିକ ୫୦୦ ମାଇଲ ପରିଧି-ବିଶିଷ୍ଟ ଥିଲା ।

ପୃ: ୯୦—ସୁ-ପୋ-ଫ-ସୁ-ତୁ ( ସୁବାସ୍ତୁ ବା ଶୁଭବାସ୍ତୁ ନଦୀ ), ଆଧୁନିକ ଆଫଗାନିସ୍ଥାନ ମଧ୍ୟସ୍ଥ ସ୍ୱାତ୍ ନଦୀ । ମୁଙ୍ଗଲୀର ଉତ୍ତର-ପୂର୍ବକୁ ୪୨ ମାଇଲ ଦୂରରେ ଏହାର ଉତ୍ପତ୍ତିସ୍ଥାନ । ଏହାହିଁ ନାଗରାଜା ଅପଲାଲଙ୍କ ପ୍ରସ୍ରବଣ ।

ପୃ: ୯୧—ମୁଂ-କି-ଲି ( ମୁଙ୍ଗଲୀ ବା ମୁଙ୍ଗୋଲୀ )। ଆଧୁନିକ ମଙ୍ଗ୍ଲେସ୍ ବା ମଙ୍ଗୋରା । ଏହା ଉଦ୍ୟାନର ରାଜଧାନୀ ଥିଲା ।

ପୃ: ୯୨—ହି-ଲୋ । ବର୍ତ୍ତମାନ ଜଲାଲାବାଦରୁ ପାଞ୍ଚ ମାଇଲ ଦୂରରେ ଅବସ୍ଥିତ ଏକ କ୍ଷୁଦ୍ର ଗ୍ରାମ । ପୂର୍ବରେ ଏହା ଏକ ବୃହତ୍ ନଗର ଥିଲା । ଏଠାରେ ବର୍ତ୍ତମାନ ସୁଦ୍ଧା ଅନେକ ବୌଦ୍ଧସ୍ତୂପର ଭଗ୍ନାବଶେଷ ଦେଖାଯାଏ ।

ପୃ: ୯୬—ତା-ଲି-ଲୋ ( ଦାରେଲ ) । ସିନ୍ଧୁ ନଦୀର ଉର୍ଦ୍ଧ୍ୱକୁ ୧୨୫ ମାଇଲ ଦୂରରେ ଏକ ପର୍ବତଶ୍ରେଣୀର ଅପର ପାର୍ଶ୍ୱରେ ଦାରେଲ ନଗର । ଏହା ଉଦ୍ୟାନର ପ୍ରାଚୀନ ରାଜଧାନୀ ଥିଲା ।

ପୃ: ୯୩, ୨୫୪—ତ-ଚୁ-ଶି-ଲୋ ( ତକ୍ଷଶିଳା ବା ଟ୍ୟାକ୍ସିଲା ); ବର୍ତ୍ତମାନ ରାୱଲ ପିଣ୍ଡିଠାରୁ ୧୨ ମାଇଲ ଦୂରରେ ।

ପୃ: ୯୪, ୨୫୩—ସା-ହୋ-ପୋ-ଲୋ (ସିଂହପୁର)— କାଶ୍ମୀର ଅନ୍ତର୍ବର୍ତ୍ତୀ ରାଜ୍ୟଖଣ୍ଡ ଆଧୁନିକ କଟାସ—ତକ୍ଷଶିଳାରୁ ୧୧୭ ମାଇଲ ଦୂରରେ ପର୍ବତ ଉପରେ ସ୍ଥାପିତ ।

ପୃ: ୯୫—ଉ-ଲା-ଶି (ଉରସ); ଧନ୍ୱାର୍ଥଅର ଅନ୍ତଃପାତୀ ଆଧୁନିକ ରଶ୍ ଜିଲା । ଏହା ମୁଜାଫରାବାଦର ପଶ୍ଚିମରେ ଏବଂ କାଶ୍ମୀରର ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ରାଜ୍ୟ ଖଣ୍ଡ । ପୂର୍ବକାଳରେ କାଶ୍ମୀରର

ବସ୍ତୃତ ସିନ୍ଧୁ ନଦଠାରୁ ଚେନାବ୍ ନଦୀ ପର୍ଯ୍ୟନ୍ତ ଥିଲା; ଓ ଏହାର ଅଧିକୃତ ରାଜ୍ୟବର୍ତ୍ତକ ରାବୀ ନଦୀ ପର୍ଯ୍ୟନ୍ତ ବସ୍ତୃତ ଥିଲା ।

ପୃ: ୯୫—ହୁ-ସେ-କ୍ୟା-ଲୋ (ହୁଷ୍କର ମନ୍ଦର) ହୁଷ୍କର କାଶ୍ମୀର ଅନ୍ତର୍ଗତ ବେହାତ୍ ନଦୀର ପୂର୍ବକୂଳବର୍ତ୍ତୀ ଆଧୁନିକ ଉଷ୍କର ଗ୍ରାମ । ଏହି ଗ୍ରାମ ବରାମୂଲଠାରୁ ଦୁଇମାଇଲ ଦକ୍ଷିଣ-ପୂର୍ବରେ ଅବସ୍ଥିତ । ଏହାର ପ୍ରାଚୀନ ନାମ ହୁଷ୍କପୁର, କନିଷ୍କଙ୍କ ଭ୍ରାତା ହୁଷ୍କଙ୍କଦ୍ୱାରା ନିର୍ମିତ ହୋଇଥିଲା । ହୁଏନ୍‌ସାଂ ୬୩୧ ଖ୍ରୀ:ରେ କାଶ୍ମୀରରେ ପ୍ରବେଶ ହେଲରୁ ଏହିଠାରେ କାଶ୍ମୀର ରାଜାଙ୍କ ମାମୁ ତାହାଙ୍କ ସହିତ ସାକ୍ଷାତ୍ କରଥିଲେ ଓ ତବର୍ତ୍ତ୍ୟ ମଠରେ ଆଶ୍ରୟ ଗ୍ରହଣ କରଥିଲେ ।

ପୃ: ୯୬—ଚେ-ୟେ-ନ-ଟେ-ଲୋ (ଜୟେନ୍ଦ୍ର ମଠ) । କାଶ୍ମୀର ନରପତି ପ୍ରବର ସେନଙ୍କ ମାମୁ ଜୟେନ୍ଦ୍ରଙ୍କଦ୍ୱାରା ନିର୍ମିତ ହୋଇଥିଲା । ହୁଏନ୍‌ସା ଏଠାରେ ଦୁଇ ବର୍ଷକାଳ ରହିଥିଲେ । ଏହା ଆଧୁନିକ କାଶ୍ମୀରର ରାଜଧାନୀ ଶ୍ରୀନଗରରେ ଅବସ୍ଥିତ ।

ପୃ: ୧୦୧—ପୁନ୍-ନୁ-ସୋ (ପୁନାଚ). କାଶ୍ମୀର ରାଜ୍ୟର ୧୧୭ ମାଇଲ ଦକ୍ଷିଣ-ପଶ୍ଚିମରେ ଅବସ୍ଥିତ ଦେଶ । ଏହାର ଆଧୁନିକ ନାମ ପୁନାଚ୍ ।

ପୃ: ୧୦୧—ହୋ-ଲୋ-ଶି-ପୁ-ଲୋ (ରାଜପୁରୀ) କାଶ୍ମୀର ଅନ୍ତର୍ଗତ ରାଜ୍ୟଖଣ୍ଡ । ଏହା ଆଧୁନିକ ରାଜୌରୀ ।

ପୃ: ୧୦୧—ଟେ-କ୍ୟ (ଟକ୍କ ବା ଟାକୀ) । ସିନ୍ଧୁ ଓ ବ୍ୟାସ୍ ଅନ୍ତର୍ବର୍ତ୍ତୀ ପଞ୍ଜାବର ସମତଳ ରାଜ୍ୟଖଣ୍ଡ ।

ପୃ: ୧୦୧—ଚେ-ୟେ-ପୁ-ଲୋ (ଜୟପୁର) । କାଶ୍ମୀର ନରପତି ଲଳିତାଦିତ୍ୟଙ୍କ ପୌତ୍ର ଜୟାପୀଡ଼ ହ୍ରଦ ମଧ୍ୟରେ ଜୟପୁର ନାମକ ଏକ

ନଗର ଓ ତନ୍ମଧ୍ୟରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ସେ ଏହି ଦୁର୍ଗର ଶ୍ରୀ ଦ୍ୱାରକଣ୍ଡ ନାମ ରଖିଥିଲେ । ଅନ୍ତର୍କୋଟ ନାମରେ ବର୍ତ୍ତମାନ ଏକ ଗ୍ରାମ ଅଛି । ରାଜା ଶଙ୍କର ବର୍ମା ଏହା ଧ୍ୱଂସ କରି ନିଜ ନାମରେ ପ୍ରତିଷ୍ଠିତ ଶଙ୍କରପୁର ନାମକ ନଗର ନିର୍ମାଣ ସକାଶେ ପଥରସବୁ ବୋହି ନେଇ ଯାଇଥିଲେ । ଶଙ୍କର ବର୍ମା ଖ୍ରୀଷ୍ଟାବ୍ଦ ୮୮୩ରୁ ୯୦୧ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ପୃ. ୯୪-୧୦୧, ୨୭୪ କ୍ୟା-ଶି-ମି-ଲୋ (କାଶ୍ମୀର) ।

ପୃ: ୧୦୧—(ଶେ:ଚେ-କା ଲୋ (ସାକଲ) । ଅଧୁନିକ ସିଯ୍ଲାଲ୍‌କୋଟ {ଶଲ୍ୟ-(ମାଦ୍ରୀଙ୍କ ଭ୍ରାତା),କୋଟ-(ଦୁର୍ଗ) } । କନିଂହାମଙ୍କ ମତରେ ଏହା ଆଧୁନିକ ଗୁରୁଦାସପୁର ଅନ୍ତର୍ଗତ ସାଙ୍ଗଲ ।

ପୃ: ୧୦୨ — ନ-ଲୋ-ସା-ହୋ (ନରସିଂହ-ନଗର । ଲାହୋରରୁ ପ୍ରାୟ ୨୫ ମାଇଲ ପଶ୍ଚିମରେ ଏହାର ଭଗ୍ନାବଶେଷ ବିଦ୍ୟମାନ ।

ପୃ: ୧୦୨— ପୋ-ଲୋ-ଚେ (ପଲାଶବନ) । ଏଠାରେ ପଲାଶଗଛ ନ ଥିଲା; ପିଲୁ ନାମକ ଗଛ ଥିଲା । ହୁଏନ୍‌ସାଂ ଏହାକୁ ପଲାଶଗଛ ବୋଲି କହୁଛନ୍ତି ।

ପୃ: ୧୦୩—ଚ-ନା-ପୋ-ତାଇ (ଚିନାପତି) । ବିପାଶା ନଦୀର ପଶ୍ଚିମରୁ ଦଶ ମାଇଲ ଦୂରରେ ପଟ୍ଟୀ ନାମକ ନଗର । ଏଠାରେ ଅନେକ ବୌଦ୍ଧମନ୍ଦିରର ଭଗ୍ନାବଶେଷ ଅଛି ।

ପୃ: ୧୦୩,୨୨୩—(ଚେ)ଶେ-ଲନ୍-ତୋ-ଲୋ (ଜଳନ୍ଧର) ଅଧୁନିକ ପଞ୍ଜାବର କାଙ୍ଗଡ଼ା ଜିଲ୍ଲା—ସଂସ୍କୃତ ସାହିତ୍ୟରେ କୀର୍ତ୍ତିତ ତ୍ରିଗର୍ତ୍ତ ନାମରେ ଖ୍ୟାତ । ଏହା ପଦ୍ମପୁରାଣ-କୀର୍ତ୍ତିତ ଦୈତ୍ୟରାଜ ଜଳନ୍ଧର ନାମରେ ସ୍ଥାପିତ ।

ପୃ: ୧୦୩—କ୍ୟୁ-ଲୁ-ତୋ (କୁଲୁତ) । ଅଧୁନିକ କୁଲୁ ଜିଲ୍ଲା । ଏହା ଜଳନ୍ଧରର ଉତ୍ତର-ପୂର୍ବରେ ।

ପୃ: ୧୦୭ — ଶେ-ତୋ-ତୁ-ଲୁ ( ଶତଦ୍ରୁ )-ସତ୍‌ଲେଜ୍ ନଦୀର ପୂର୍ବବର୍ତ୍ତୀ ଭୂଖଣ୍ଡ । ଆଧୁନିକ ସର୍‌ହିନ୍ଦ୍ ଏହାର ରାଜଧାନୀ ଥିଲା ।

ପୃ: ୧୦୭ — ପୋ-ଲି-ୟେ-ତୋ-ଲୋ (ପାରିଯାତ୍ର ରାଜ୍ୟ)-ଆଧୁନିକ ବୈରାଟ୍ ନଗର ଏହାର ରାଜଧାନୀ ଥିଲା । ଏହି ନଗର ଦିଲ୍ଲୀଠାରୁ ୧୦୫ ମାଇଲ ଦକ୍ଷିଣ-ପଶ୍ଚିମରେ ଓ ଜୟପୁରଠାରୁ ୪୧ ମାଇଲ ଉତ୍ତରରେ ଅବସ୍ଥିତ ।

ପୃ: ୧୦୭ — ମୋ-ତୁ-ଲୋ (ମଥୁରା) ।

ପୃ: ୧୦୯—ସ-ତ-ନି-ଶି-ଫ-ଲୋ { ସ୍ଥା (ଥୋ) ନେଶ୍ୱର } ।

ପୃ: ୧୦୯ —ସୁ-ଲୋ-କିନ୍-ନ (ସ୍ରୁଘ୍ନ) । ଥାନେଶ୍ୱରଠାରୁ ୪୦ ମାଇଲ ଉତ୍ତର-ପୂର୍ବରେ ଅବସ୍ଥିତ ଯମୁନା କୂଳବର୍ତ୍ତୀ ଆଧୁନିକ ସୁଘ ।

ପୃ: ୧୧୦—ମ( ମୋ )—ତି-ପୁ-ଲୋ ( ମତିପୁର )-ଆଧୁନିକ ମଣ୍ଡାୱର । ଏହା ପଶ୍ଚିମ ରୋହିଲ୍‌-ଖଣ୍ଡରେ ବିଜନୋର ନିକଟରେ ଅବସ୍ଥିତ ।

ପୃ: ୧୧୩—ପୋ-ଲ୍ଲେ-ହି-ମୋ-ପୁ-ଲୋ (ବ୍ରହ୍ମପୁର); ହରିଦ୍ୱାରର ଉତ୍ତରପୂର୍ବରେ ଅବସ୍ଥିତ ଆଧୁନିକ ବୈରାଟପତ୍ତନ ।

ପୃ: ୧୧୩—ଅ-ହି-ଚି-ତ-ଲୋ ( ଅହିଚ୍ଛେତ୍ର ), ଆଧୁନିକ ଅହିଛତର୍ । ପୂର୍ବରେ ଏହା ଉତ୍ତର-ପାଞ୍ଚାଳ ( ରୋହିଲ୍‌ଖଣ୍ଡ ) ର ରାଜଧାନୀ ଥିଲା ।

ପୃ: ୧୧୩, ୨୨୨—ପି-ଲୋ-ଶନ୍-ନ (ବୀରସନ); ବର୍ତ୍ତମାନ ଯୁକ୍ତପ୍ରଦେଶାନ୍ତର୍ଗତ ରାଜ୍ୟଖଣ୍ଡ ।

ପୃ: ୧୧୩—କୀ-ପି-ଥ (କପିଥ); ଯୁକ୍ତପ୍ରଦେଶାନ୍ତର୍ଗତ ଇଟାଜିଲ୍ଲା ମଧ୍ୟସ୍ଥିତ । ପୂର୍ବେ ଏହା ରାଜା ଜନକଙ୍କ ଭ୍ରାତା କୁଶଧ୍ୱଜଙ୍କ ରାଜଧାନୀ ଥିଲା ବୋଲି କଥିତ ଅଛି ।

ପୃ: ୧୧୫, ୨୪୭—କୀ-ଜୋ-କିଓ-ଶି-ଫ୍ଲୋ (କାନ୍ୟକୁବ୍ଜ);ଆଧୁନିକ ନାମ କନୌଜ ।

ପୃ: ୧୧୫—କା-ଲେ-ନ-ସୁ-ଫ-ଲ-ନ (କର୍ଣ୍ଣ ସୁବର୍ଣ୍ଣ ବା କରଣ ସୁବର୍ଣ୍ଣ), ଏହା ଆଧୁନିକ ସିଂହଭୂମି ଅଞ୍ଚଳ ।

ପୃ: ୧୧୯—ଅ-ୟୁ-ତୋ (ଅଯୋଧ୍ୟା ରାଜ୍ୟ) ।

ପୃ: ୧୨୭—ଓ-ୟେ-ମୁ-ଖୀ (ହୟମୁଖ); ଦୋଆବ୍ ମଧ୍ୟବର୍ତ୍ତୀ ଆଧୁନିକ ଦୋଉଆ ଖେଡ଼ା । ଏହା ଆଧୁନିକ ପ୍ରତାପଗଡ ଜିଲ୍ଲାର ରାଜଧାନୀଠାରୁ ୩୦ ମାଇଲ ଦୂରରେ ।

ପୃ: ୧୨୭, ୨୪୪—ପୋ-ଲୋ-ୟେ-କ୍ୟ (ପ୍ରୟାଗ); ଆଧୁନିକ ଏଲାହାବାଦ ।

ପୃ: ୧୨୭—କୌ-ଶାଂ-ମି (କୌଶାମ୍ବି);ଯମୁନାକୂଳବର୍ତ୍ତୀ ଆଧୁନିକ କୋସମ ବୋଲି ଅନୁମାନ କରାଯାଏ ।

ପୃ: ୧୨୮—ପି-ସୋ-କଆ (ବିଶାଖା), ଅଯୋଧ୍ୟାର ନାମାନ୍ତର ।

ପୃ: ୧୨୯—ଷି-ଲୋ-ଫ-ଷି-ଡ (ଶ୍ରାବସ୍ତୀ), ଏହା ଆଧୁନିକ ଗୋଣ୍ଡା ଜିଲ୍ଲା ମଧ୍ୟରେ ଅବସ୍ଥିତ ।

ପୃ: ୧୨୯—ଶି-ତୋ-ୟୁ-ଏନ୍ (ଜେତ୍ତବନ); ଶ୍ରାବସ୍ତୀରେ ଥିବା ଜେତବନ ନାମକ ସ୍ଥାନରେ ଏକ ବୌଦ୍ଧମଠ ଥିଲା ।

ପୃ: ୧୩୧ କ୍ୟେ-ପି-ଲୋ-ଫ-ସେ-ଡ (କପିଲବାସ୍ତୁ); ଆଧୁନିକ ଉତ୍ତର ଆଉଦ୍ ଅନ୍ତର୍ଗତ ନଗର ନାମକ ସହର ।

ପୃ: ୧୩୨—ଲାନ୍-ମୋ (ରାମଗ୍ରାମ); ଆଧୁନିକ ଦେଓକାଲ ଗ୍ରାମ ।

ପୃ: ୧୩୪—କ୍ୟୁ-ଶି-ନ-କ୍ୟେ-ଲୋ (କୁଶୀନଗର); ଗୋରଖ୍ପୁରର ୩୫ ମାଇଲ ପୂର୍ବବର୍ତ୍ତୀ କଶିଆ ଗ୍ରାମ ।

ପୃ: ୧୩୭—ପୋ-ଲୋ-ନସ୍ସେ (ବାରାଣସୀ); ଆଧୁନିକ ବେନାରସ ।

ପୃ: ୧୪୮—ଚେଂ-ଚ (ଗର୍ଜପତିପୁର); ଆଧୁନିକ ଗାଜିପୁର । ବେନାରସର ୫୦ ମାଇଲ ପୂର୍ବରେ ଗଙ୍ଗାକୂଳରେ ଅବସ୍ଥିତ ।

ପୃ: ୧୩୮—ଫେ-ଶେ-ଲି (ବୈଶାଳୀ); ମୁଜଫରପୁର ଜିଲ୍ଲାରେ ଥିବା ବେସାର ଗ୍ରାମ ନିକଟରେ ବୌଦ୍ଧଯୁଗର ସଙ୍କେତମାନ ଥିବାରୁ ଏହିଠାରେ ବୈଶାଳୀର ଅବସ୍ଥାନ ବୋଲି ଅନୁମାନ କରାଯାଏ ।

ପୃ: ୧୩୯—ଶି-ଫେ-ତୋ-ପୁ ଲୋ (ଶ୍ୱେତପୁର)

ପୃ: ୧୪୦—ମୋ-କ୍ୟେ-ତୋ ( ମଗଧ ), କୁ-ସୁ-ମୋ-ପୁ-ଲୋ ( କୁସୁମପୁର ), ପୋ-ଚ-ଲି-ସୁ-ଚଙ୍ଗ୍ ( ପାଟଳୀପୁତ୍ରପୁର ) । ଏହି କୁସୁମପୁର ବା ପାଟଳୀପୁତ୍ରପୁର ମଗଧର ପୁରାତନ ରାଜଧାନୀ । ଏହା ଗଙ୍ଗା ଓ ଶୋଣ ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ ଥିଲା । ଏହା ଅଧୁନିକ ପାଟନାର ନିକଟବର୍ତ୍ତୀ ।

ପୃ: ୧୪୧—ତି-ଲୋ-ଶି( ସୀ )-କ୍ୟ ( ତିଲଡ଼କ ); ଆଧୁନିକ ତିଲ୍ଲାରା ।

ପୃ: ୧୪୨—ପୁ ତି-ତ୍ରି-ଚଙ୍ଗ୍ (ବୋଧିମଣ୍ଡ) ବୁଦ୍ଧଗୟାରେ ଅବସ୍ଥିତ ।

ପୃ: ୧୪୬—ନି-ଲେନ୍-ଶନ୍-ନ ( ନିରଞ୍ଜନା ନଦୀ ), ଆଧୁନିକ ଫଲ୍‌ଗୁ ।

ପୃ: ୧୪୪, ୨୦୫—ନ-ଲନ୍-ତୁ ( ନାଳନ୍ଦ ), ରାଜଗୀର୍‌ର ୭ ମାଇଲ ଉତ୍ତରରେ ଅବସ୍ଥିତ ଆଧୁନିକ ବଡ଼ାଗାଓଁ ।

ପୃ: ୧୫୩—ହୋ-ଲୋ-ଶେ-କି-ଲି-ହ ( ରାଜଗୃହ)—ଆଧୁନିକ ରାଜ୍‌ଗୀର୍‌ର ଏହା ବିମ୍ବିସାରଙ୍କଦ୍ୱାରା ନିର୍ମିତ ।

ପୃ: ୧୫୪—କ୍ୟୁ-ଶେ-କ୍ୟେ-ଲୋ-ପୁ-ଲୋ(କୁଶାଗାରପୁର), ଏହା ପୁରାତନ ରାଜଗୃହ । ଆଧୁନିକ ରାଜ୍‌ଗୀର୍‌ର ଅଳ୍ପ ଦକ୍ଷିଣରେ ଏହା ଅବସ୍ଥିତ ଥିଲା ।

ପୃ: ୧୫୫-କ୍ୟ-ଲନ-ତୋ-ଚୁ-ଇଉ-ଏନ୍ (କଳନ୍ଦ ବା କରନ୍ଦ ବେଣୁବନ)।

ପୃ: ୧୭୫—ଷୋ-ଲୋ-ତୁ-ଲୋ ( ସାଲାତୁର ), ଆଧୁନିକ ଲାହୋର । ଏହା ପାଣିନିଙ୍କ ଜନ୍ମସ୍ଥାନ ।

ପୃ: ୧୭୮—ଇ-ଲନ୍-ନ-ପୋ-ଫ-ତୋ ( ହିରଣ୍ୟ ପର୍ବତ ), ଆଧୁନିକ ମୁଙ୍ଗେର ପାହାଡ । ହିରଣ୍ୟ ରାଜ୍ୟର ରାଜଧାନୀ ଏହି ପର୍ବତ ନିକଟରେ ଥିଲା ।

ପୃ: ୧୭୮ ବିହାର—ଆଧୁନିକ ବିହାର ସହରର ଉତ୍ତର-ପଶ୍ଚିମରେ ଥିବା ପର୍ବତ ଉପରେ ଅବଲୋକିତେଶ୍ୱରଙ୍କର ବିହାର ଥିଲା ।

ପୃ: ୧୭୯—ଚେନ୍-ପୋ ( ଚମ୍ପା ରାଜ୍ୟ ), ଆଧୁନିକ ଭାଗଲପୁର ଓ ମୁଙ୍ଗେର ଜିଲ୍ଲା ।

ପୃ: ୧୭୭, ୨୩୦—କୈ-ଚୁ ( ଶୁ )-ହୋ ( ଉ )-କି (ଖି)-ଲୋ ( କଜଙ୍ଗିର ରାଜ୍ୟ )—ଏହା ରାଜମହଲ ଜିଲ୍ଲା ନିକଟବର୍ତ୍ତୀ । ଏହି ରାଜମହଲ୍ ଜିଲ୍ଲାକୁ ପୂର୍ବେ କାଙ୍କ୍‌ଜୋଲ୍ ବୋଲି କୁହାଯାଉଥିଲା । କାଙ୍କିର ଏତଦନ୍ତର୍ଗତ ଗଙ୍ଗାର ଦକ୍ଷିଣକୂଳସ୍ଥ ସହର ।

ପୃ: ୧୭୭—ପୁନ-ନ-ଫ-ତନ୍-ନ ( ପୁଣ୍ଡ୍ର ବର୍ଦ୍ଧନ ); ମାଲଦହ, ପୂର୍ଣ୍ଣିୟା, ଦିନାଜପୁର ଓ ରାଜସାହୀ ଜିଲ୍ଲା ।

ପୃ: ୧୭୮—ସନ୍-ମୋ-ତ-ଚ ( ସମତଟ ), ଗଙ୍ଗା ନଦୀର ଡେଲ୍ଟା ।

ପୃ: ୧୭୯—ଷି-ଲି-ଚ-ତ-ଲୋ ( ଶ୍ରୀକ୍ଷେତ୍ର ), କାହାର କାହାର ମତରେ ଏହା ଆଧୁନିକ ସିଲ୍‌ହଟ୍ । ଆଉର କେତେକେ କହନ୍ତି ଯେ, ଏହା ବ୍ରହ୍ମଦେଶର ପ୍ରୋମ ନିକଟବର୍ତ୍ତୀ ଏକ ପ୍ରାଚୀନ ସହର ।

ପୃ: ୧୭୯—କୟ-ମୋ-ଲଙ୍ଗ-କ୍ୟ ( କମଲାଙ୍ଗ ବା କାମଲଙ୍କା) । କାହାର କାହାର ମତରେ ଆଧୁନିକ କୁମିଲ୍ଲା । ଅନ୍ୟାନ୍ୟଙ୍କ ମତରେ ଏହା ପେଗୁ ଏବଂ ରମଣ୍ୟନାମକ ଇରାବତୀ ନଦୀର ଡେଲ୍ଟା ଅଞ୍ଚଳ ।

ପୃ: ୧୭୯—ତୋ-ଲୋ-ପୋ-ତି ( ଦ୍ୱାରପତି ବା ଦ୍ୱାରାବତୀ ), ପେଗୁ । ଅନ୍ୟ କେତେକଙ୍କ ମତରେ ଏହା ଶ୍ୟାମଦେଶ ।

ପୃ: ୧୭୯— ଇ-ଶଙ୍ଗ୍‌-ନ-ପୁ-ଲୋ ( ଈଶାନପୁର ), ଏହାର ଅବସ୍ଥିତି ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ।

ପୃ: ୧୭୯—ମୋ-ହୋ-ଚେଂ-ପୋ ( ମହାଚମ୍ପା), ଶ୍ୟାମଦେଶ। ଅନ୍ୟ କେତେକେ ଏହାକୁ ପ୍ରାଚୀନ କାମ୍ବୋଡିଆ ରାଜ୍ୟ ବୋଲି କହନ୍ତି।

ପୃ: ୧୭୯—ୟେନ୍-ନଓ-ନ-ଚେଉ (ଯମରାଜ ବା ଯମନ୍‌ରାଜ, ଏହା ଯବ (ମ) ନ ଦେଶ ବା ଯବ (ମ) ନ ଦ୍ୱୀପ। ଏହା ଆଧୁନିକ ଜାଭା ବୋଲି ଅନୁମାନ କରାଯାଏ।

ପୃ: ୧୭୯—ତନ୍-ମୋ-ଲି-ଟି ( ତାମ୍ରଲିପ୍ତି -ତମଲୁକ୍।

ପୃ: ୧୮୦, ୨୨୨—-ଉ-ଚ (ଉଡ୍ର ଦେଶ)—ଓଡ଼ିଶା।

ପୃ: ୧୮୦—ଚେ-ଲି-ତ-ଲୋ (ଚରିତ୍ର), ଆଧୁନିକ ପୁରୀ କିମ୍ବା କୋଣାର୍କ ନିକଟବର୍ତ୍ତୀ ଏକ ଲୁପ୍ତ ବନ୍ଦର।

ପୃ: ୧୮୧—କୋଙ୍ଗ୍-ୟୁ-ତୋ ( କଙ୍ଗୋଧ ବା କଙ୍ଗୋଦ ), ଗଞ୍ଜାମ।

ପୃ: ୧୮୧—କୀ-ଲିଙ୍ଗ୍-କ୍ୟ (କଳିଙ୍ଗ), ଗଞ୍ଜାମର ଦକ୍ଷିଣବର୍ତ୍ତୀ ଦେଶ।

ପୃ: ୧୮୧—କ୍ୟୋ-ସ-ଲୋ (ଦକ୍ଷିଣ କୋଶଳ), ଉତ୍କଳର ପଶ୍ଚିମବର୍ତ୍ତୀ ରାଜ୍ୟ—ଆଧୁନିକ ବେରାର। ଆଧୁନିକ ସମ୍ବଲପୁର ଜିଲ୍ଲା ମଧ୍ୟ ଏହାର ଅନ୍ତର୍ଗତ ଥିଲା।

ପୃ: ୧୮୩—ଅନ-ତ-ଲୋ ( ଅନ୍ଧ୍ର ), ଆଧୁନିକ ତେଲଙ୍ଗାନା।

ପୃ: ୧୮୪—ତୋ-ନ-କୀ-ଷେ-କ୍ୟ (ଧନକଟକ ବା ଧାନ୍ୟକଟକ) ଆଧୁନିକ ବେଜୱାଡ଼ା।

ପୃ: ୧୮୫—ଚ୍-ଲି-ୟେ (ଚୋଳ ବା ଚୂଲ୍ୟ), ବେଜୱାଡ଼ାର ଉତ୍ତର-ପଶ୍ଚିମରେ ଅବସ୍ଥିତ ରାଜ୍ୟଖଣ୍ଡ।

ପୃ: ୧୮୬—ତ-ଲୋ-ପି-ଚ ( ଦ୍ରାବିଡ଼ ରାଜ୍ୟ ); କ୍ୟେନ୍-ଚି-ପୁ-ଲୋ ( କାଞ୍ଚିପୁର ), ଆଧୁନିକ କଞ୍ଜିବରମ୍ ଏହାର ରାଜଧାନୀ ଥିଲା।

ପୃ: ୧୮୮ – ମୋ-ଲେ-କ୍ୟୁ-ଚ ( ମାଳକୂଟ )--ମଦୁରା ଓ ତାଞ୍ଜୋର ଜିଲ୍ଲା ।

ପୃ: ୧୯୬—କୋଙ୍ଗ୍-କନ୍-ନ-ପୁ-ଲୋ ( କଙ୍କଣାପୁର ), ତୁଙ୍ଗଭଦ୍ରା ନଦୀର ଉତ୍ତର କୂଳବର୍ତ୍ତୀ ଅନାଗୁଣ୍ଡି ସହର ।

ପୃ: ୧୯୭—ମୋ-ହୋ-ଲ-ଚ ( ମହାରାଷ୍ଟ୍ର )

ପୃ: ୧୯୯-- ପୋ-ଲୁ-କୀ-ଚେ-ପୋ ( ଭରୁକଚ୍ଛ ), ବ୍ରୋଚ୍ ରାଜ୍ୟ ।

ପୃ: ୧୯୯—ମୋ-ଲ-ପୋ ( ମାଳବ ); ଏହାର ଉତ୍ତରରେ ବଡ଼ର, ପଶ୍ଚିମରେ ବଲ୍ଲଭୀ, ପୂର୍ବରେ ଉଜ୍ଜୟିନୀ ଓ ଦକ୍ଷିଣରେ ମହାରାଷ୍ଟ୍ର ଅବସ୍ଥିତ ଥିଲା ।

ପୃ: ୨୦୦—ଅ-ଚ-ଲି ( ଅଠାଲି ବା ବଡ଼ର ); ସୁରଟର ୨୦୦ ମାଇଲ ଉତ୍ତରପୂର୍ବବର୍ତ୍ତୀ ଆଧୁନିକ ଏଡେର୍ ।

ପୃ: ୨୦୦—କୀ-ଚ୍ଛ ( ଖେଡ଼ ); ଗୁଜରାଟ ଅନ୍ତର୍ଗତ ଅହମଦାବାଦ୍ ଓ କାମ୍ବେ ମଧ୍ୟବର୍ତ୍ତୀ ଆଧୁନିକ କଇର ଅଞ୍ଚଳ ।

ପୃ: ୨୦୧—ଫ-ଲ-ପି (ବଲ୍ଲଭୀ)—ଆଧୁନିକ ଗୁଜରାଟ ଓ ସୁରାଷ୍ଟ୍ର ଅଞ୍ଚଳ ।

ପୃ: ୨୦୧—ଅ-ନନ୍-ତୋ-ପୁ-ଲୋ (ଆନନ୍ଦପୁର);ଆଧୁନିକ ବର ନଗର ।

ପୃ: ୨୦୧—ସୃ-ଲ-ଚ (ସୌରାଷ୍ଟ୍ର ବା ସୁରଥ ରାଜ୍ୟ); ଗୁଜରାଟ ଉପଦ୍ୱୀପ । ଅଧୁନା ସୁଦ୍ଧା ଗୁଜରାଟର ଲୋକେ ତାଙ୍କ ଦେଶର ଅଂଶବିଶେଷକୁ ସୁରଥ ବୋଲି କହନ୍ତି ।

ପୃ: ୨୦୧—କ୍ୟୁ-ଚେ-ଲୋ (ଗୁର୍ଜ୍ଜର), ରାଜପୁତନାର ପଶ୍ଚିମାଂଶ ।

ପୃ: ୨୦୧—ଉ-ଶେ-ୟେନ୍-ନ (ଉଜ୍ଜୟିନୀ), ଆଧୁନିକ ଉଜ୍ଜୟିନୀ ବା ଗୁଓାଲିଅର ରାଜ୍ୟ ।

ପୃ: ୨୦୨—ଚ-କ-ତୋ (ଚକତ); ଆଧୁନିକ ବୁନ୍ଦେଲ୍‌ଖଣ୍ଡ ।

ପୃ: ୨୦୨—ମୋ-ହୁ-ଶି-ଫ-ଲୋ-ପୁ ଲୋ (ମହେଶ୍ୱରପୁର); ନର୍ମଦା ତଟବର୍ତ୍ତୀ ମହେଶ୍ୱରପୁର ବା ମଣ୍ଡଲା ।

ପୃ: ୨୦୨—ଅ-ତେନ-ନ୍-ପୋ-ଚି-ଲୋ (ଅତ୍ୟନବକେଲ ବା ଉଦୁମ୍ବର ରାଜ୍ୟ); ଆଧୁନିକ କଚ୍ଛ ଅଞ୍ଚଳ ।

ପୃ: ୨୦୨—(ଲୋ) ଲଙ୍ଗ୍-କୀ-ଲୋ (ଲାଙ୍ଗଲ; ଆଧୁନିକ କେଲାତ ରାଜ୍ୟ ।

ପୃ: ୨୦୩—ପି–ତୋ-ଶି-ଲୋ (ପିତାଶିଳା); ସିନ୍ଧୁ ପ୍ରଦେଶାନ୍ତର୍ଗତ ନିରନ୍‌କୋଟ ବା ହାଇଦ୍ରାବାଦ୍ ।

ପୃ: ୨୦୩—ଅ-ଫନ୍-ଚ (ଅଭଣ୍ଡଦେଶ) ବାହ୍ମଣାବାଦ୍ ।

ପୃ: ୨୦୪—ସିନ୍-ତୁ (ସିନ୍ଧୁଦେଶ) ।

ପୃ: ୨୦୪—ମୂ-ଲୋ-ସନ୍-ପୁ-ଲୋ (ମୂଲସ୍ଥାନପୁର); ଆଧୁନିକ ମୁଲ୍‌ତାନ ।

ପୃ: ୨୦୪—ପୋ-ଫ-ତୋ (ପର୍ବତ ରାଜ୍ୟ) ଆଧୁନିକ ପଞ୍ଜାବ ଅନ୍ତର୍ଗତ ଶର୍କୋଟ ଜିଲା ।

ପୃ: ୨୦୫—ଯେ-ସେ-ଚ (ଯଷ୍ଟିବନ); ଆଧୁନିକ ଜଷ୍ଠିବନ ।

ପୃ: ୨୨୦—କ-ମୋ-ଲୁ-ପୋ (କାମରୂପ); ଆସାମ ।

---

Printed by B. K. Kar, B. A.
at the Saraswata Press, Cuttack—1940.

# ଶୁଦ୍ଧିପତ୍ର

| ପୃଷ୍ଠା | ପଙ୍କ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୦ | ୨୧ | ଟିନ୍-ହ୍ୱାଂ | ଟିନ୍-ହ୍ୱାଂ |
| ୧୩ | ୯ | ବର୍ଜ୍ଜୀରଣ | ବର୍ଜ୍ଜକରଣ |
| ୧୬ | ୨୩ | ମହାଯାନ, ସମ୍ପ୍ରଦାୟ | ମହାଯାନ ସମ୍ପ୍ରଦାୟ |
| ୧୮ / ୧୯ | ୧୪ / ଶୀର୍ଷ | ଲ୍ୟାଂ-ଷ୍ଟେ କ୍ୟାଷ୍ଟେ | କ୍ୟା-ଷ୍ଟେ |
| ୨୩ | ୪ | ସମର୍ଥ | ଅସମର୍ଥ |
| ୪୨ | ୧୬ | ବୁଦ୍ଧତ୍ତ୍ୱ | ବୁଦ୍ଧତ୍ୱ |
| ୬୫ | ୯ | ଦକ୍ଷିଣ-ପର୍ବ | ଦକ୍ଷିଣ-ପୂର୍ବ |
| ୫[illegible] | ୨୦ | land | Law |
| ୬୭ / ୬୮ | ୨୦ / ୧ | କୁଲୁକ | କୁଣ୍ଡକ |
| ୬୮ | ୧୫ | ଜ୍ୟେଷ୍ଠ ଭଗିନୀପୁତ୍ରଙ୍କ | ଜ୍ୟେଷ୍ଠଭଗିନୀପୁତ୍ରଙ୍କ |
| ୬୮ | ୧୬ | ଜ୍ୟେଷ୍ଠା ଭଗିନୀପୁତ୍ର | ଜ୍ୟେଷ୍ଠଭଗିନୀପୁତ୍ର |
| ୭୧ ଶୀର୍ଷ ଓ | ୧୧ | ପୋଲ୍ | ପୋଲ୍ |
| ୭୩ | ୧୦ | କୁ-ମୋ-ଡୋ | ( କୁ-ମୋ-ଡୋ ) |
| ୭୩ | ୧୧ | କ୍ଷୁ-ଶୀ-ମାନ | ( କ୍ଷୁ-ଶୀ-ମାନ ) |
| ୭୩ | ୧୬ | ଶାନ୍ତ | ସେ |
| ୭୫ | ୧୫ | ଗୋଟିଏ ଗୋଟିଏ | ଗୋଟିଏ |
| ୭୫ | ୧୬ | ଦୁଇ ଇଞ୍ଚ ପ୍ରସ୍ଥ; | ଦୁଇ ଇଞ୍ଚ ପ୍ରସ୍ଥ |
| ୮୫ | ୧୪ | ସନ୍ନ୍ୟାସୀ ପରିଚ୍ଛଦ | ସନ୍ନ୍ୟାସିପରିଚ୍ଛଦ |
| ୮୮ | ୮ | ନ ଥିଲା । | ନ ଥିଲା ।” |
| ୧୦୪ | ୯ | ଅମଡ଼ା | ଅମ୍ର |
| ୧୦୪ | ୧୮ | ଶତ | ଶତ ବର୍ଷ |
| ୧୦୭ | ୩ | ବୁଦ୍ଧ- | ବୁଦ୍ଧ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୧୦ | ୧୧, ୨, ୧୭ | ସ୍ତୂପଦେଶ୍ୱ | ସ୍ତୂପଦେଶ |
| ୧୧୧ | ୭ | ସ୍ତୂଣପ୍ରଭୂଙ୍କ | ଗୁଣପ୍ରଭଙ୍କ |
| ୧୧୨ | ୧୩ | ଅମହ୍ଵା | ଅମ୍ନ |
| ୧୧୪ | ୫ | ଚର୍ମସ୍ବଂଶ | କମ୍ବସ୍ବଂଶ |
| ୧୨୪ | ୨୦ | କରନ୍ତୁ । | କରନ୍ତୁ ।" |
| ୧୨୫ | ୨ | ହେଲା । | ହେଲା |
| ୧୨୬ | ୩ | ମହାଯାନ | ମହାଦାନ |
| ୧୨୭ | ୭ | ଦକ୍ଷିଣ-ପୂର୍ବପାର୍ଶ୍ବରେ ଅବସ୍ଥିତ | ମସ୍ରଣକ ଲ ଦକ୍ଷିଣ-ପୂର୍ବକୁ ପ୍ରସ୍ଥାର ଅବସ୍ଥିତ । ଏଠାରେ |
| ୧୨୭, ୨୪୭; | ଶୀର୍ଷ | ମହାଯାନ | ମହାଦାନ |
| ୧୨୭ | ୨୧ | ଆମହ୍ଵା | ଆମ୍ର |
| ୧୩୫ | ୧୦ | କୁଳିଙ୍ଗାସ୍ଥ ମାସର ପଞ୍ଚଶତ | କୁଳଙ୍ଗାସ୍ଥ ମାସର ପଞ୍ଚଦଶ |
| ୧୩୫ | ୨୦ | ପ୍ରଦାନ | ପ୍ରଦାନ |
| ୧୩୭ | ୧୮ | ବୋଧିସତ୍ତ୍ୱ | ବୋଧିସତ୍ତ୍ୱଙ୍କ |
| ୧୩୮ | ୮ | ଆମହ୍ଵା | ଆମ୍ର |
| ୧୩୯ | ୨ | ବୁଦ୍ଧଦେବ ମାନବ- | ବୁଦ୍ଧ ଦେବମାନବ- |
| ୧୩୯ | ୮ | ବୁଦ୍ଧମାର ସ୍ଵକାଙ୍କ | ବୁଦ୍ଧ ମାରସ୍ଵଙ୍କଙ୍କ |
| ୧୪୨ | ୧୧ | ବେଡାର | ବେଡାର |
| ୧୪୩ | ୧୦ | ବେଡାର | ବେଡାଘ |
| ୧୪୪ | ୭ | ବସ୍ତୁ | ବସ୍ତ୍ର |
| ୧୪୫ | ୧୮ | ଧନଙ୍କର | ଧନ |
| ୧୪୫-୪୭-୪୯; | ଶୀର୍ଷ | ଧନଙ୍କର | ଧନ |
| ୧୫୧ | ୫ | ଅର୍ହ-ତତ୍ତ୍ୱ | ଅର୍ହତତ୍ତ୍ୱ |
| ୧୫୧ | ୭ | ବୁଦ୍ଧ ନରପତ | ବୁଦ୍ଧ ନରପତ |
| ୧୫୩ | ୧୭ | ପିଙ୍ଗଳ, | ପିଙ୍ଗଳ |
| ୧୫୪ | ୧୮ | ଅର୍ହ-ତତ୍ତ୍ୱ | ଅର୍ହତତ୍ତ୍ୱ |
| ୧୫୫ | ୧୪ | ସଧମ୍ପୂ | ସଦ୍ବୁଦ୍ଧି |
| ୧୬୦ | ୮ | ବେକେ ପୁଣି | ଶୁଣି |